# ସୌରୀନ୍ଦ୍ର ସୌରଭ

(କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ବିଶେଷ ବିଚାର)

ଡକ୍‌ଟର ନାରାୟଣ ପଣ୍ଡା



# ସୌରୀନ୍ଦ୍ର ସୌରଭ

ଡକ୍‌ଟର ନାରାୟଣ ପଣ୍ଡା

ପ୍ରକାଶକ :



କଲ୍ୟାଣୀ ନଗର, କଟକ-୧୩

ପ୍ରଥମ ସଂସ୍କରଣ : ୨୦୦୮

ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍,

କଲ୍ୟାଣୀ ନଗର, କଟକ-୧୩

ମୂଲ୍ୟ : ଟ. ୨୦୦/-

## SAURINDRA SAURAV

Prof. Dr. Narayan Panda

Publisher :




Kalyani Nagar, Cuttack-13

First Edition : 2008

Printed at Techno Arts Offset,

Kalyani Nagar, Cuttack-13

Price : Rs. 200/-

**ଉତ୍ସର୍ଗ :**

ମହିମ୍ନ ନିର୍ମଳ ମୃତ୍ୟୁ ଓ ସବୁଜ ସୁନ୍ଦର ଶ୍ମଶାନ
ହାତରେ...

## .......................................ସ୍ୱଭାଷ

ଆଧୁନିକ ଓଡ଼ିଆ କବିତା ପୂର୍ବବର୍ତ୍ତୀ ରୋମାଣ୍ଟିକ ବାସ୍ତବବାଦୀ ଧାରାରେ ଉଭୟ ଆତ୍ମିକ ଓ ଆଙ୍ଗିକ ଦିଗରୁ ବାକ୍‌ରୀତି, ଗଦ୍ୟଛନ୍ଦ, ବିମ୍ବଧର୍ମୀ ଶବ୍ଦ ଓ ଜଟିଳ ଜୀବନ ବୋଧକୁ ଭିତ୍ତିକରି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣି ନୂତନ ରୂପେ ପରିଚିତ ହୋଇଛି । ଏହା ମୁଖ୍ୟତଃ କବିର ଜୀବନ, ଜଗତ, ସମୟ ପ୍ରତି ସୂକ୍ଷ୍ମ ଦୃଷ୍ଟିଭଙ୍ଗୀକୁ ପ୍ରଗାଢ଼ ଅନୁଭୂତିର ରସ ରଙ୍ଗରେ ରୂପାୟିତ କରିଛି ।

କବିତାରେ କବିର ଜୀବନାନୁଭୂତିର ସ୍ୱଚ୍ଛନ୍ଦ ପ୍ରକାଶ ଓ ଯୁଗୀୟ ଉପଲବ୍ଧି ସଂପର୍କିତ ବକ୍ତବ୍ୟ ହିଁ ଭାବଧର୍ମ ଭାବରେ ପରିଗୃହୀତ ହୋଇଥାଏ । ସମୟରୁ ସମୟ ପରିବର୍ତ୍ତନ କ୍ରମେ ଏହି ଭାବଧର୍ମର ମୌଳିକ ସ୍ୱରରେ ପରିବର୍ତ୍ତନ ଘଟିଥାଏ । ଭାବଧର୍ମକୁ ଭିତ୍ତିକରି କବିତାର ଚିତ୍ର ଚରିତ୍ର ସଂପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଥାଏ । ଏହି ଦୃଷ୍ଟିରୁ ଆଧୁନିକ ଓଡ଼ିଆ କବିତାର ତିନୋଟି ପ୍ରମୁଖ ଦିଗ ସବୁଜ କବିତାର ରୋମାଣ୍ଟିକ୍ ସ୍ୱପ୍ନ ପ୍ରବଣତା, ପ୍ରଗତିବାଦୀ କବିତାର ସମଗ୍ର ବାସ୍ତବବାଦୀ ଗଣବୋଧ ଓ ରହସ୍ୟବାଦୀ କବିତା ଦର୍ଶର ଇନ୍ଦ୍ରିୟୋତ୍ତର ଭାବ ବିଳାସକୁ ତ୍ୟାଗକରି, ସ୍ୱାଧୀନତୋତ୍ତର ଓଡ଼ିଆରେ କବିତାବାଦୀ ମଗ୍ନଚୈତନ୍ୟ ବୋଧକୁ ଆଧାର କରି ସ୍ୱତନ୍ତ୍ର ରୂପେଏକ ନୂତନ ସ୍ୱର ଓ ଆତ୍ମସତ୍ତା ଧାରଣ କରି ବିକାଶ ଲାଭ କରିଛି । ଗତାନୁଗତିକ ଆନୁଗତ୍ୟକୁ ବିରୋଧ କରି ଏହି ପର୍ଯ୍ୟାୟର କାବ୍ୟଧାରା, ରହସ୍ୟବାଦୀ ଚିନ୍ତାଧାରା, ପ୍ରଗତିବାଦୀ ବାସ୍ତବତା, ଭାବବିଳାସ ରୋମାଣ୍ଟିକ୍ ଉଚ୍ଛ୍ୱାସ ଓ ଆବେଗ ପ୍ରବଣତା, ସୁଦୂର ମୋହ ସ୍ୱପ୍ନାବିଷ୍ଟ, ପଲ୍ଲୀ ପ୍ରାଣତା, ପ୍ରକୃତିବାଦୀ ସୌନ୍ଦର୍ଯ୍ୟବୋଧର ଭାବପ୍ରବଣତା ଓ ଜାତୀୟବାଦୀ ଐତିହ୍ୟବୋଧ ଆଦିଭାବ ସ୍ୱରଗୁଡ଼ିକୁ ସଂପୂର୍ଣ୍ଣ ହରେଇ ଦେଇଛି । ସ୍ୱାଧୀନତୋତ୍ତର ଆଧୁନିକ ଓଡ଼ିଆ କବିତା ବହୁଳାଂଶରେ ହୋଇ ପଡିଛି ବ୍ୟକ୍ତିକୈନ୍ଦ୍ରିକ ଓ ସର୍ଜନାନୁଭବର ମସ୍ତିଷ୍କଧର୍ମୀ ପରିପ୍ରକାଶ ।

ଅନ୍ତର୍ମୁଖୀ ଜୀବନବୋଧ, ସମୟ ସଚେତନଶୀଳ ଦୂରଦୃଷ୍ଟି, ଆତ୍ମଚେତନତା ଅକପଟ ସତ୍ୟନିଷ୍ଠା ଓ ଆତ୍ମ ବିଶ୍ଳେଷଣ, ବସ୍ତୁତାନ୍ତ୍ରିକ ନଗର ଜୀବନ, ବାସ୍ତବଧର୍ମୀ ମନସ୍ତତ୍ତ୍ୱ ମଗ୍ନ ଚୈତନ୍ୟର ଭାବାନ୍ତର, ବିଶ୍ୱମୁଖୀ ଚିନ୍ତାଧାରା,

ମୋହଭଙ୍ଗ ଜନିତ ହତାଶାବୋଧ, ଅନ୍ତରୀଣ ବିଷାଦବୋଧ, ଆଶାତୀତ ବିଫଳତା, କ୍ଷୟଶୀଳ ମୂଲ୍ୟବୋଧ, ସଂସ୍ଥିତିଶୀଳ ପ୍ରତିକ୍ରିୟା, ଯାନ୍ତ୍ରିକ ସଭ୍ୟତା ଓ ତତ୍‌ଜନିତ ଅଭାବବୋଧ ପ୍ରତି ବିକ୍ଷୁବ୍ଧ ମାନସିକତା ଓ ସମୟ ସମ୍ବେଦନଶୀଳତା ଇତ୍ୟାଦି ଭାବରାଶି ଏହାର ମୂଳ ପ୍ରେରଣା । ଏହି ଭାବରାଶି ପାଶ୍ଚାତ୍ୟ ଜଗତୀୟ ସ୍ଥିତିବାଦୀ ଚେତନା, ମଗ୍ନଚୈତନ୍ୟବୋଧ, ଫ୍ରଏଡୀୟ ମନସ୍ତତ୍ତ୍ୱ ଓ ଇଲିୟଟୀୟ ସମୟନିଷ୍ଠ-ଭାବ ଚେତନା ଇତ୍ୟାଦି ପ୍ରଭାବ ସୂତ୍ରରେ ସ୍ୱତନ୍ତ୍ର ଆବେଦନଶୀଳତା ଓ ବିଚ୍ଛିନ୍ନ ମାନସିକ ଚିନ୍ତାଧାରା ଦ୍ୱାରା କବି ମାନସ ପ୍ରେରଣା ପୁଷ୍ଟ ହୋଇ ଉଠିଛି ।

ସୌରୀନ୍ଦ୍ର ବାରିକଙ୍କ କବିତା ଆଲୋଚନା ପ୍ରସଙ୍ଗରେ ଏ ସବୁ ଉଲ୍ଲେଖର ଆବଶ୍ୟକତା ଏଇଥିପାଇଁ ଯେ ସେ ଏହି ସବୁ ପାଶ୍ଚାତ୍ୟ ଭାବଧାରା ସହ ନିବିଡ଼ଭାବରେ ପରିଚିତ ଓ ଏସବୁ ଦ୍ୱାରା ସଂପ୍ରେରିତ । ଇଲିୟଟ, ଇୟେଟ୍‌ସ ପାଉଣ୍ଡ, ଯେମିତି ତାଙ୍କ କବିତାକୁ ପ୍ରଭାବିତ କରିଛନ୍ତି, ସେମିତି କରିଛନ୍ତି, ସ୍ପେଣ୍ଡର, ଅଡେନ, କରିଛନ୍ତି ମାର୍କିନ କନ ଫେ୍ୟାନସଲ କବି ଗୋଷ୍ଠୀ, ରବର୍ଟ ଲୋୱେଲ, ସିଲ୍‌ଭିୟା ପ୍ଲାଥ ଆଦି । ଏମାନଙ୍କ ସହିତ ଅଛନ୍ତି ସଚ୍ଚିରାଉତରାୟ, ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ କୁମାର ମିଶ୍ର ଆଦି ଆଧୁନିକ ଓଡ଼ିଆ କବି ଗୋଷ୍ଠି ଓ ବଙ୍ଗଳାର ସୁଭାଷ ମୁଖୋପାଧ୍ୟାୟ । ଏମାନଙ୍କୁ ଛାଡ଼ି ପ୍ରତିଭାଶାଳୀ କବିମାନଙ୍କ ଠାରୁ ପ୍ରେରଣା ଲାଭ କରିବା ପରି ସେ ସମସ୍ତଙ୍କୁ ଚାହିଁଛନ୍ତି । ହେଲେ ଆପଣାକୁ ସେ ପରମ୍ପରାର ସ୍ରୋତଟିଏ ନକରି, ନିଜସ୍ୱ ପରମ୍ପରାଟିଏ ତିଆରି କରିଛନ୍ତି । ଆପଣାର ଆବେଗ ଅନୁଭୂତି ଓ ଚିନ୍ତା ସ୍ରୋତକୁ ନିଜସ୍ୱ ଶୈଳୀରେ ସତ୍ୟଶୀଳ ରୂପ ପ୍ରଦାନ କରିଛନ୍ତି । ସତ୍ୟଶୀଳତା କବିଙ୍କ ପାଖରେ ମୁଖ୍ୟ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ କବି ସୌରୀନ୍ଦ୍ର ବାରିକ ଏକ ସ୍ୱାଧୀନ ପରମ୍ପରାର ପ୍ରତିନିଧି ।

ଏକ ବୌଦ୍ଧିକ ଆଭିଜାତ୍ୟରୁ ଆଧୁନିକ ଓଡ଼ିଆ କବିତାକୁ ମୁକ୍ତି ଦେବାକୁ ସେ ସଚେତନ ଅଥଚ ସ୍ୱତଃସ୍ଫୂର୍ତ୍ତ କାବ୍ୟିକ ଉଚ୍ଚାରଣ, ସ୍ନେହସିକ୍ତ ସଂପର୍କର ପୃଷ୍ଠଭୂମିରେ ଏକ ଆବେଗ ପୂର୍ଣ୍ଣ ସମ୍ବେଦନଶୀଳ ଜୀବନ ଦୃଷ୍ଟିର ସ୍ୱକୀୟ ସତ୍ୟଶୀଳ ଆଟୋପହୀନ ସ୍ୱୀକାରୋକ୍ତି ହିଁ କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ନିର୍ଯାସ । ଆଧୁନିକ ଓଡ଼ିଆ କବିତାର ସଂକଟ ଓ ସଂଘର୍ଷ ସମୟରେ କବି ସୌରୀନ୍ଦ୍ର ବାରିକ୍‌ଙ୍କ ପ୍ରବେଶ ଏକ ମୃଦୁ ବିପ୍ଳବାତ୍ମକ ପଦକ୍ଷେପ ।

ସୌରୀନ୍ଦ୍ର ବାରିକ୍‌ଙ୍କ କବିତା ଗୁଡ଼ିକ ସାମାଜିକ ଦୁଃସ୍ଥିତିରେ ଅବସାଦଗ୍ରସ୍ତ ଅଣନିଃଶ୍ୱାସୀ ଆତ୍ମା ଓ ମୁକ୍ତି ପ୍ରୟାସୀ ମାନସିକତାର କ୍ରିୟା ପ୍ରତିକ୍ରିୟାର ପ୍ରତିଲିପି । କିଛିଟା ନୈରାଶ୍ୟ ବ୍ୟଞ୍ଜକ କିନ୍ତୁ ପ୍ରୟାସ ରହିତ ନୁହେଁ । କବିତା

ସଂକଳନର ଅଧିକାଂଶ କବିତାରେ ତୀବ୍ରସମନ୍ୱ ସଚେତନତା, ବ୍ୟକ୍ତି ଅନ୍ତର୍ମୁଖୀ ଦାର୍ଶନିକତା ଓ ଉଦାର ମାନବବାଦୀ ନୈତିକତା ଉପଲବ୍ଧ । ସ୍ୱବିରୋଧ ବା ଆତ୍ମବ୍ୟଙ୍ଗ ଅଧିକାଂଶ କବିତାର ପ୍ରାଣକେନ୍ଦ୍ର । ବ୍ୟକ୍ତି ମାନସିକତାର ଓ ବହିର୍ବିଶ୍ୱର ପ୍ରତିଫଳନ ସ୍ପଷ୍ଟ ।

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ କବି ସୌରୀନ୍ଦ୍ର ବାରିକ୍ ନିଶ୍ଚିତ ଭାବରେ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ । ସମକାଳୀନ ଓଡ଼ିଆ କବିତା କ୍ଷେତ୍ରରେ କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାଗୁଡ଼ିକ କିପରି ନିଜସ୍ୱ ପରମ୍ପରା ସୃଷ୍ଟି କରିଛନ୍ତି ତା'ର ବ୍ୟାପକ ଅଧ୍ୟୟନ ଓ ଅନୁଶୀଳନ ମୋ ଗବେଷଣାର ଲକ୍ଷ୍ୟ । ଏଥିପାଇଁ ଗବେଷଣାର ବିଷୟବସ୍ତୁକୁ ପାଞ୍ଚୋଟି ପରିଚ୍ଛେଦରେ ବିଭକ୍ତ କରାଯାଇ ଆଲୋଚନାକୁ ସରଳ, ସୁଗମ, ଯୁକ୍ତି ନିଷ୍ଠ କରିବା ପାଇଁ ଉଦ୍ୟମ କରାଯାଇଛି ।

ପ୍ରଥମ ପରିଚ୍ଛେଦରେ ଆଧୁନିକ ଓଡ଼ିଆ କବିତା ଉପରେ ଆଲୋଚନା କରିବାକୁ ଯାଇ ଆଧୁନିକ କବିତାର ସୃଷ୍ଟି ସ୍ୱରୂପ, ବିକାଶ, ଓଡ଼ିଆ କବିତାରେ ଆଧୁନିକତା, ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ ଉପରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି ।

ଦ୍ୱିତୀୟ ପରିଚ୍ଛେଦରେ ସ୍ରଷ୍ଟାଙ୍କ ଜୀବନୀ ଓ ସୃଷ୍ଟି ସମ୍ଭାର ଉପରେ ଆଲୋଚନା କରିବାକୁ ଯାଇ ଜନ୍ମ ଓ ଜୀବନୀ, କବିଙ୍କ ସହ ଅନ୍ତରଂଗ ଆଳାପ କବିଙ୍କ ସୃଷ୍ଟିବିଭବ ଉପରେ ଆଲୋକପାତ କରାଯାଇଛି ।

ତୃତୀୟ ପରିଚ୍ଛେଦରେ କବି ସୌରୀନ୍ଦ୍ର ବାରିକଙ୍କ କାବ୍ୟମାନସ ଉପରେ ଆଲୋଚନା କରିବାକୁ ଯାଇ 'ସାମାନ୍ୟ କଥନ', 'ଉପଭାରତ', 'ଆକାଶ ପରି ନିବିଡ଼', 'ଗୁଣୁ ଗୁଣୁ ଚିତ୍ରପଟ', 'ଲୁହ ଠୁ ବି ଅନ୍ତରଂଗ', 'ଅନୁଭାରତ', 'ଆମେ ଦୁହେଁ', 'ଚହଲାଛାଇରେ ଘଡ଼ିଏ', 'ପଢ଼ ବା ନପଢ଼', 'ହଳଦୀବସନ୍ତ', 'ଆମଦୁହିଁଙ୍କ କଥା', 'ଯେତେ ସବୁ ବିଧିଙ୍କୁ ନେଇ' କବିତା ସଂକଳନ ଗୁଡ଼ିକର ଆଲୋଚନା କରିବା ସଙ୍ଗେ ସଙ୍ଗେ କବି ସମାଲୋଚକଙ୍କ ସର୍ଜନଶୀଳ ସମୀକ୍ଷା ଓ ସମାଲୋଚନାର ଦିଗ ଓ ଦିଗନ୍ତ ଉପରେ ଆଲୋଚନା କରାଯାଇଛି । ସ୍ରଷ୍ଟାଙ୍କ ଅନୁବାଦ ସାହିତ୍ୟର ପରିଚୟ ପ୍ରଦାନ କରାଯାଇଛି ।

ଚତୁର୍ଥ ପରିଚ୍ଛେଦରେ କବି ସୌରୀନ୍ଦ୍ର ବାରିକଙ୍କ କବିତାର ଆଙ୍ଗିକ ଓ ଆତ୍ମିକ ବିଶ୍ଳେଷଣ କରାଯାଇଛି । ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଭାଷା, ଶବ୍ଦ, ଛନ୍ଦ, ଶୈଳୀର ସ୍ୱତନ୍ତ୍ରତା ସଂପର୍କରେ ଆଲୋଚନା କରିବା ସଙ୍ଗେ ସଙ୍ଗେ କବିଙ୍କ କବିତାରେ ମିଥ୍, ଚିତ୍ରକଳ୍ପ, ପ୍ରତୀକର ପ୍ରୟୋଗ ସଂପର୍କରେ ଆଲୋଚନା କରାଯାଇଛି ।

ପଞ୍ଚମ ପରିଚ୍ଛେଦରେ କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଶିଳ୍ପ ସୌକର୍ଯ୍ୟ ଉପରେ ଆଲୋଚନା କରିବାକୁ ଯାଇ କବିଙ୍କ କବିତାରେ ଦାର୍ଶନିକ ଦୃଷ୍ଟି, ସମୟଚେତନା, ମୃତ୍ୟୁଚେତନା, ସମାଜଚେତନା, ସୌନ୍ଦର୍ଯ୍ୟଚେତନା, ପ୍ରଣୟଚେତନା, ବିଚ୍ଛିନ୍ନତାବୋଧ କବିଙ୍କ ବୈଶିଷ୍ଟ୍ୟ ଉପରେ ଆଲୋକପାତ କରାଯାଇଛି ।

ଗବେଷଣା ଦିଗରେ ଯେଉଁ ଆନୁଷ୍ଠାନମାନଙ୍କଠୁ ମୁଁ ସାହାଯ୍ୟ ସହଯୋଗ ପାଇଛି ସେମାନଙ୍କ ନିକଟରେ ମୁଁ ଋଣୀ । ହରେକୃଷ୍ଣ ମହତାବ ପାଠାଗାର, ଭୁବନେଶ୍ୱର, କନିକା ଲାଇବ୍ରେରୀ ରେଭେନ୍‌ସା କଲେଜ, କଟକ, ପ୍ରଭୃତି ଅନୁଷ୍ଠାନମାନଙ୍କର କର୍ମକର୍ତ୍ତାମାନଙ୍କର ଅକୁଣ୍ଠ ସହଯୋଗ ମୋ ଗବେଷଣା ପାଇଁ ସହାୟକ ହୋଇଥିବାରୁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି । ଉତ୍କଳ ବିଶ୍ୱବିଦ୍ୟାଳୟର ପରିଜା ପାଠାଗାର ମୋ ଜ୍ଞାନ ବିକାଶ ପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଥିବାରୁ ମୁଁ ତାର ସମସ୍ତ କର୍ମକର୍ତ୍ତାଙ୍କୁ ବଧେଇ ଜଣାଉଅଛି ।

ନିବନ୍ଧ ପ୍ରସ୍ତୁତିକାଳରେ ମୋର ଶ୍ରଦ୍ଧେୟଗୁରୁ ଦିଗ୍‌ଦର୍ଶକ ପ୍ରଫେସର ଡ. ନିତ୍ୟାନନ୍ଦ ନାୟକଙ୍କ ପ୍ରେରଣା, ଦିଗଦର୍ଶନ ବିଶେଷଭାବରେ ସାହାଯ୍ୟ କରିଛି, ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ । ପ୍ରଫେସର ଡ. ବିଜୟ କୁମାର ଶତପଥୀଙ୍କ ଉତ୍ସାହ ପରାମର୍ଶ ଓ ଗବେଷଣା କାର୍ଯ୍ୟଟିକୁ ସଫଳ କରିବାରେ ସାହାଯ୍ୟ କରିଥିବାରୁ ତାଙ୍କ ନିକଟରେ ଚିରଋଣୀ ।

ପିତୃସ୍ନେହରୁ ଉପେକ୍ଷିତ ମୋର କନ୍ୟା ଅନନ୍ୟା ଅନୁନୟା ଓ ପୁଅ ଆୟୁଷ୍ମାନ ଆର୍ଯ୍ୟ ଅଂଶୁମାନର ପିତୃସ୍ନେହ ଗବେଷଣା କାର୍ଯ୍ୟଟିକୁ ତ୍ୱରାନ୍ୱିତ କରିଛି, ସେମାନଙ୍କ ଚଲାପଥରେ ଫୁଲଚନ୍ଦନ ବୃଷ୍ଟି ହେଉ, ଈଶ୍ୱର ତାଙ୍କୁ ଅମୃତ ଦୃଷ୍ଟିରେ ଚାହିଁଥାନ୍ତୁ ।

କିଛିକାଳ ଅଧ୍ୟାପନାରେ ମନୋନିବେଶ କରିଥିବା, ଐହିକ ଜୀବନର ଜୀବନସାଥୀ ସାଜିଥିବା ସହଧର୍ମିଣୀ ନଳିନୀର ବାରମ୍ବାର ଗବେଷଣା ନିବନ୍ଧ ସାରିବା ପାଇଁ ଉତ୍ସାହ, ପ୍ରତ୍ୟୟର ପ୍ରେରଣା ମୋ' ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିଛି ତେଣୁ ତା ଜୀବନର ମଙ୍ଗଳ କାମନା କରୁଛି ।

ମୋ ସାହିତ୍ୟିକ ଜୀବନକୁ ବିଭିନ୍ନ ଦିଗରୁ ଋଦ୍ଧିମନ୍ତ କରିଥିବା ଗାଁ ଶେଷ ବରଗଛ, ପ୍ରିୟପଲ୍ଲୀ ଜନ୍ମମାଟି ବଉଳପଦାର ଛବିଳ ପରିବେଶ, ନିକଟରେ ଚିର କୃତଜ୍ଞ । ଦୂର ଅଦୂରର ପ୍ରିୟ ପରିଜନଙ୍କ ସବୁଜ ସଂପର୍କ ମୋ କଳାର କମନୀୟ କୋଣାର୍କ ।

••••••••••••••••••••••••••••••••••••••••••••••••••••

# ସୂଚୀପତ୍ର

# କବିତାର କାରୁକାର୍ଯ୍ୟ

କବିତା କବି ଜୀବନର ଅନ୍ତର୍ବାଣୀ, ତା'ର ଆତ୍ମଲିପି । ଏହା କବି ପ୍ରାଣର ଏକ ନିର୍ଦ୍ଦିଷ୍ଟ ସମୟର ସ୍ୱାକ୍ଷର ବହନ କରେ । କବି ଅନ୍ତରର ପ୍ରେରଣାରେ, ଭାବନାର ଉଚ୍ଛ୍ୱାସରେ କବିତା ଲେଖେ ଓ ଏହା ମାଧ୍ୟମରେ ସେ ଆନନ୍ଦ ପାଏ । ଆପଣାର କବିତା ମଧ୍ୟରେ କବି ନିଜକୁ ବାରମ୍ବାର ଆବିଷ୍କାର କରେ । ସଂସାରର ମାୟା ବନ୍ଧନ ଠାରୁ କବିତାର ମୋହ ତାକୁ ବେଶି ଆକର୍ଷଣ କରେ । ଏହି ଆକର୍ଷଣ ହିଁ କବିକୁ ସବୁ ଦୁଃଖ ଓ ଜଞ୍ଜାଳ ମଧ୍ୟରେ ଆନନ୍ଦର ସୂଚନା ଦିଏ, ସେହି ବେଦନାମୟ ପରିସର ମଧ୍ୟରେ ଏକ ନୂତନ ଜଗତର ସଂଧାନ ଦିଏ ।୧।

କବିତା ଏକ କଅଁଳ ସ୍ପର୍ଶ । ଭିତରର ସବୁ କଠିନତାକୁ ତରଳାଇ ପୁଣି ବାଟ ଖୋଜିନିଏ, ନିଜ ଛନ୍ଦରେ ବୋହି ଯିବାକୁ କବିକୁ ନମ୍ରକରେ । କବିତାକୁ ବାନ୍ଧିପାରେନି ଅହମିକା । କବିତା ବନ୍ଧାପଡ଼ିଯାଏ ସ୍ୱାଭିମାନର ସୂକ୍ଷ୍ମ ଆଲିଙ୍ଗନରେ । ଏ ଆଲିଙ୍ଗନର ନିବିଡ଼ତା କବିକୁ ଏକ ସବୁଜ ବନାନୀକୁ ନେଇଯାଏ । କବି ଆତ୍ମ ବିସ୍ମୃତ ହୁଏ । କବି ଚାଲିଥାଏ କବିତାର ପଛେ ପଛେ,ଏକ ସୃଜନଶୀଳ ଆତ୍ମାନେଇ । ସୃଜନଶୀଳତା ହିଁ କବିର ପୁଞ୍ଜି । କବି ଯେତେବଡ଼େ ସେତେ କଅଁଳ ହୁଏ । କଅଁଳ ପଣରଭାବ ହୃଦୟରେ ସଞ୍ଚରିଯାଏ । ଶିରା ପ୍ରଶିରାରେ ପ୍ରବାହିତ ହୁଏ ଜୀବନୀ ଶକ୍ତି । ପବନରେ ଖେଳିଯାଏ ସୁରଭି । ସାରସ୍ୱତ ଜଗତରେ ଚହଳ ପଡିଯାଏ ।

କବିତା ଜୀବନ ପୁଷ୍ପର ସୌରଭ । ସାଧାରଣ ମଣିଷର ନିତିଦିନିଆ ଜୀବନର ହସକାନ୍ଦ, ଲୁହଲହୁରେ ଏ ପୁଷ୍ପ ଚିତ୍ରିତ, ପରିଶୋଭିତ, ମର୍ମିଳ । ସମୟ ପବନରେ ଭାସି ବୁଲୁଥିବା ସୁବାସର ଭୁରୁଭୁରୁ ଗନ୍ଧରେ ଜୀବନର ସ୍ୱାଦ ଅନୁଭୂତ ହୁଏ । କଳ୍ପନା ବୃକ୍ଷରେ ପ୍ରସ୍ଫୁଟିତ ଅପରୂପ ପୁଷ୍ପର ସୌରଭ ପବନରେ ନାଚି ନାଚି ଜୀବନର ସୁମଧୁର ସଂଗୀତ ଗାନକରେ ।୨।

କବିତା କବି ହୃଦୟର ସ୍ୱଚ୍ଛଳ ଅଭିବ୍ୟକ୍ତି । ଅନୁଭବର ବସ୍ତୁ । ମାନବ ସଂସ୍କୃତିର ଇତିହାସରେ ଯେତେ ପ୍ରକାର ମାନସ ସମ୍ଭୂତ ଶିଳ୍ପ ରହିଛି, କବିତା ସେମାନଙ୍କ ମଧ୍ୟରେ ବୌଦ୍ଧିକତା ଓ ଅନ୍ତରଙ୍ଗତା ଦୃଷ୍ଟିରୁ ସୂକ୍ଷ୍ମତମ ଶ୍ରେଷ୍ଠଶିଳ୍ପ । ଭାଷା, ଭାବ, କଳ୍ପନା ଆବେଗ, ଆନନ୍ଦ ଯନ୍ତ୍ରଣା, ସଂଯମ ଓ ଛନ୍ଦବିନ୍ୟାସ ଉପାଦାନ ଗୁଡ଼ିକୁ ନେଇ କବିତାରସୃଷ୍ଟି ଓ ବିକାଶ ।୩।

କବିତା କବି ହୃଦୟର ଉଚ୍ଛ୍ୱାସ, ଗୋଟିଏ ଆବେଗମୟ ମୁହୂର୍ତ୍ତର ସୁବର୍ଣ୍ଣ ସଂଳାପ ଓ ନିଭୃତ ଆତ୍ମାର ଜୀବନ୍ତ ଅଭିନୟ । କବିତା ସ୍ମୃତି ଓ ସ୍ୱପ୍ନର ପ୍ରତୀକ, ଆଶା ଓ ଆକାଂକ୍ଷାର ସଂକେତ ବାହୀ, ଜୟ ଓ ପରାଜୟର ପ୍ରାଣସତ୍ତା । କବିତା ଛନ୍ଦହରା ଜୀବନକୁ ଛନ୍ଦମୟ

କରେ - ସୁରଭିହୀନ ଜୀବନରେ ସୁଗନ୍ଧ ଭରିଦିଏ - ବଂଧୁହରା ଜୀବନରେ ମମତାର ସ୍ପର୍ଶ ଦିଏ । ଏହାକୁ ଅନୁଭବ କରିହୁଏ ମାତ୍ର ଛୁଇଁ ହୁଏନା ।୪।

କବି ନିଜସ୍ୱ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ କବିତା ରଚନା କରେ । ପ୍ରାଣର ଆହ୍ୱାନରେ କବିତା ସୃଷ୍ଟି ହୁଏ । ସେଠି କାହାର ନିର୍ଦ୍ଦେଶକୁ କବି ଅପେକ୍ଷା କରେ ନାହିଁ, କି କୌଣସି ପୁରସ୍କାର ପ୍ରତି ତା'ର ମୋହ ନଥାଏ । ସେ ଲେଖେ ଲେଖିବା ତା'ର ଧର୍ମ । ମାତ୍ର ଏହି କବିତା ରଚନା କବିର ପେଷା ନୁହେଁ, ତାହା ନିଶା, ଏହା ଜୀବିକା ନୁହେଁ, ଏହା ଜୀବନ ।୫।

ସମାଜ କବିକୁ କବିତା ସୃଷ୍ଟି ପାଇଁ ନିର୍ଦ୍ଦେଶ ଦିଏ ନାହିଁ । କବି ସ୍ୱତଃ ଉଦ୍‌ବୁଦ୍ଧ ହୁଏ । ପ୍ରାଣର ଜୀବନ୍ତ ଭାଷା ପ୍ରକାଶ ପାଇଁ ପଥ ଖୋଜେ । କବିତା ତା'ର ମାଧ୍ୟମ ହୁଏ । ସାମାଜିକ ପରିବେଶ କବିକୁ କବିତା ସୃଷ୍ଟି ପାଇଁ ଉଦ୍‌ବୁଦ୍ଧ କରେ । କବିର ହୃଦୟ ଯଦି ବିପ୍ଳବ ପାଇଁ ଆହ୍ୱାନ ନ ଦେଲା, ଅନ୍ତଶ୍ଚେତନା ଯଦି କବିକୁ ନୂତନ ସୃଷ୍ଟି ପାଇଁ ନିର୍ଦ୍ଦେଶ ନଦେଲା, କବି କ'ଣ କବିତା ସୃଷ୍ଟି ପାଇଁ ସମର୍ଥ ହୋଇ ପାରିବ ?

ସମସ୍ତେ ଭାବି ପାରନ୍ତି । କିନ୍ତୁ କବିର ଭାବନା ଓ ସାଧାରଣ ମଣିଷର ଭାବନା ଭିତରେ ଅନେକ ତଫାତ୍ ଦେଖାଯାଏ । ସାଧାରଣ ମଣିଷ ଯାହା ଭାବେ ସେହି ଭାବନା କେବଳ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ଆବଦ୍ଧ ରହେ ଏବଂ ସେହି ଭାବନା ସହିତ ବିଶ୍ୱର ଆତ୍ମୀୟତା ଜନ୍ମିପାରେ ନାହିଁ । କବିର ଭାବନା ତା'ର ସାଧନା ପ୍ରତିଭାରୁ ଜାତ । ଜଣେ ସାଧକର ସ୍ୱର ଓ ସାଧାରଣ ମଣିଷର ସ୍ୱର ଭିତରେ ତଫାତ୍ ଦୃଷ୍ଟିଗୋଚର ହେବା ସ୍ୱାଭାବିକ୍ । ଐଶ୍ୱରିକ ପ୍ରତିଭାବଳରେ ସାଧନାକୁ ନେଇ ସେ ନିଜର କବି ସତ୍ତା ଗଢ଼େ । କବିକୁ ତା'ର ଆପଣା ଜୀବନ ଭୂଇଁ ଉପରେ ପ୍ରତିଷ୍ଠିତ କରିବା ପାଇଁ ତାକୁ ପ୍ରତିଭା ଯେ ସହାୟତା କରିଥାଏ ତାହା ଭାବି ଅନ୍ୟଟିର କଥା ଭୁଲିଗଲେ ଠିକ୍ ହେବ ନାହିଁ । ଅନ୍ୟଟି ହେଉଛି କବିର ସାଧନା । ସେହି ସାଧନା ବଳରେ ପ୍ରତିଭାକୁ ଉପଯୋଗ କରିବା ପାଇଁ କବି ସୁଯୋଗ ପାଏ । କୌଣସି କବି କେବଳ ମାତ୍ର ପ୍ରତିଭା ବଳରେ ବଡ଼ ହୋଇପାରି ନାହିଁ । ସାଧନା ଓ ଅଧ୍ୟବସାୟର ସୁଯୋଗ ଅଭାବରେ ଅନେକ ପ୍ରତିଭାବାନ କବିଙ୍କର ବିପୁଳ ପ୍ରତିଭା ପ୍ରକାଶର ସୂର୍ଯ୍ୟସ୍ନାନରୁ ବଞ୍ଚିତ ହୋଇଥାଏ । କବି ପ୍ରତିଭା ବଳରେ ଯାହା ଚିନ୍ତାକରେ, ତା'ର ସେହି ଚିନ୍ତାକୁ ସାଧନା ଦ୍ୱାରା ପ୍ରକାଶ କରେ ଏବଂ ଏହି ପ୍ରକାଶିତ ଭାବଧାରାକୁ ସେଗଭୀର ଅଧ୍ୟବସାୟ ଫଳରେ ଜନମାନସରେ ପ୍ରତିଫଳିତ କରାଏ ।୬।

କବିର ଜୀବନାଦର୍ଶ ଗୋଟିଏ ସଂପୂର୍ଣ୍ଣ କାବ୍ୟରୁ ଯେପରି ଭାବରେ ମିଳିପାରେ, ଗୋଟିଏ କବିତାରୁ ସେପରି ମିଳିବା ସେତେ ସହଜ ନୁହେଁ, ଅବଶ୍ୟ ସେହି ଜୀବନାଦର୍ଶର ମୁଖ୍ୟବାଣୀ, ସେହି ଆଦର୍ଶର ନିର୍ଯାସ ପାଠକ କବିତା ଭିତରୁ ପାଇଥାଏ । କବିର ବ୍ୟକ୍ତିଗତ ଜୀବନ ଓ କବି ମାନସ ଭିତରେ ଥିବା ପାର୍ଥକ୍ୟ ପ୍ରତ୍ୟେକ କବିକୁ ଏକ ସ୍ୱୟଂ ସଂପୂର୍ଣ୍ଣ ଭାବରେ ପରିଚିତ କରାଏ । ଆପଣା ଜୀବନର ଯେଉଁ ଅନାକର୍ଷଣୀୟ ଦିଗଟି ରହିଛି, ତାହା ଉଚ୍ଚକୋଟୀର କବି ଚେତନା ଦ୍ୱାରା ମାର୍ଜିତ ହୋଇ ପ୍ରକାଶ ପାଏ ।୭।

କବିତା ଗୋଟିଏ ମୁହୂର୍ତ୍ତର ସ୍ୱାକ୍ଷର । ସେହି ସ୍ୱାକ୍ଷରିତ ସମୟସୀମାରେ କବି ଯେଉଁ କବିତା ଲେଖେ, ତାହା ଏକ ସମୟରେ ଶେଷ ହୋଇପାରେ କିମ୍ବା ଶେଷ ନ ହୋଇ ଆଉ ଏକ ସମୟକୁ ଅପେକ୍ଷା ରଖିପାରେ । ତେବେ ସାଧାରଣତଃ ଏପରି ଘଟେ ନାହିଁ । ତେବେ କେଉଁଠି କେମିତି ଚେତନା ବ୍ୟାହତହେଲେ, ଚିନ୍ତା ଆଘାତ ପ୍ରାପ୍ତହେଲେ କିମ୍ବା

ଭାବନାର ସ୍ରୋତରେ କୌଣସି ପ୍ରତିବନ୍ଧକ ଆସିଲେ କବିତା ଗୋଟିଏ ମୁହୂର୍ତ୍ତରେ ଶେଷହୋଇ ପାରେ ନାହିଁ ।୮।

ଏପରି କବିତା ଦ୍ୱନ୍ଦ୍ୱାତ୍ମକ ହେବାର ଯଥେଷ୍ଟ ସମ୍ଭାବନା ଥାଏ । କାରଣ ଯେଉଁ ଚେତନା ସ୍ତରରୁ କବିତାର ଭାବ ଗୋଟିଏ ମୁହୂର୍ତ୍ତରେ ଜାତ ହୋଇଥାଏ, ସେହି ସ୍ତରକୁ ପୁଣି ଆଉଥରେ କବି ସ୍ପର୍ଶ କରିବା ସହଜ ହୁଏ ନାହିଁ – ଅସମ୍ଭବ ମଧ୍ୟ ହୋଇପଡ଼େ । ତେଣୁ ଏପରି କ୍ଷେତ୍ରରେ ଚିନ୍ତାଧାରା ମଧ୍ୟ ଆଉ ଗୋଟିଏ ପଥ ଦେଇ ଆସିପାରେ । ଯଦି ଦୁଇଟି ମୁହୂର୍ତ୍ତର ସମନ୍ୱୟ ଦେଖାନଯାଏ, ତେବେ କବିତାଟି ପାଠକ ଚିତ୍ତରେ ଉଦ୍‌ଭଟ ପ୍ରାଣ ପ୍ରବାହ ସୃଷ୍ଟିକରେ । କବିତାର ଆଙ୍ଗିକ ଓ ଆତ୍ମିକ ସ୍ୱରୂପ ସ୍ପଷ୍ଟ ଭାବରେପାଠକ ପାଖରେ ପହଁଞ୍ଚିପାରେ ନାହିଁ ।୯।

କବି କବିତା ପାଇଁ ଆନନ୍ଦ ପାଏ । ସେ ଆପଣାକୁ ଏହି କବିତା ପାଇଁ ଭୁଲି ପାରେ । ସଂସାରର ମାୟାବନ୍ଧନଠାରୁ କବିତାର ମୋହ ତାକୁ ବେଶୀ ଆକର୍ଷଣ କରେ । ଏହି ଆକର୍ଷଣ ହିଁ କବିକୁ ସବୁ ଦୁଃଖ, ଜଞ୍ଜାଳ ଭିତରେ ସାନ୍ତ୍ୱନା ଦିଏ । ସେହି ବେଦନାମୟ ପରିସର ଭିତରେ ସେ ଏକ ନୂତନ ଜଗତର ସନ୍ଧାନ ଦିଏ ।୧୦।

କବି ଦୃଷ୍ଟିରେ ଦୁଃଖ ଏକ ଫୁଟନ୍ତା କ୍ଷୀରର ବାସ୍ନା । କସ୍ତୁରୀ ମୃଗର ଚପଳ ଛନ୍ଦ । ଅନ୍ତଃସଲୀଳା ଫଲ୍‌ଗୁର ନୀରବିତ, ଯନ୍ତ୍ରିତ ଆବେଦନ ! ଦୁଃଖ ସୁନାର କଷଟି, ଭଲମନ୍ଦର ଜଗୁଆଳ । ଦୋଳୁଥିବା, ଏପାରି ସେପାରି ହଉଥିବା ଅସ୍ଥିରତା, ଅନିଶ୍ଚିତତା ଭିତରେ ଧ୍ରୁବତାରା । ଭଙ୍ଗାରୁଜା ଧୂଳି ଧୂସର କାଚ କଣ୍ଢେଇକୁ ଜୀବନ୍ୟାସ ଦେବାର ସଞ୍ଜିବନୀ । ଅନୁକମ୍ପାମୟ ହୃଦୟର ଥରଥର ହାତର ସ୍ପର୍ଶ ।୧୧।

କବିର ସିଂହାସନ ବିଶ୍ୱାସର ସିଂହାସନ । କବି ରାଜତ୍ୱ ନିର୍ଜନତାର ଅମରାବତୀ । କବିର ରାଜନଅର ନୂଆନୂଆ ଫୁଲ ଫଳ ଗଛରେ ଭରପୂର । କବିର ନଅର – ବେଢ଼ା ନାହିଁ । କବିର ବେଢ଼ା ପରିକ୍ରମା କରିବାର ଝୁଂକ ନାହିଁ । ନିଜକୁ ନିଜେ ବେଢ଼ିଚି କବି, ନିଜେ ନିଜକୁ ବେଢ଼ାଇ ରଖିଛି କବିତ୍ୱର ଅହଂକାର । ଏଇ ଅହଂକାର ହିଁ କବିର ସିଂହାସନ ।୧୨। କବିତାପଣର ଏକ ଚେତନାର ଦମ୍ଭ । ସବୁ ନପାରିଲା ତାପର ସ୍ତମ୍ଭ ପାଖରେ ଜଳୁଥିବା ଅଖଣ୍ଡ ଦୀପରୁଖା । ସବୁ ଅକିଞ୍ଚନତା ସବୁ ଦୋ ଦୋ ଚିହ୍ନା କୁହୁଡ଼ିଆ ଦିଗ୍‌ବଳୟ ମଥାରେ ଝଟକୁଥିବା କୁଆଁ-ତାରା । ଯାହା କବିକୁ ଉନ୍ମନା କରେ ।୧୩।

କବିତା ବୋଧହୁଏ ଏକ ସମୁଦ୍ର ପରି । ଆଉ ମଣିଷର କାବ୍ୟିକ ଚେତନା ଏଇ ସମୁଦ୍ରରେ ପାଲ ମେଲିଥିବା ନଉକାଟିଏ । କୂଳ ଛାଡ଼ି ଯେତେ ଯେତେ ସେ ନଉକାଟି ଦିଗ୍‌ବଳୟ ଆଡକୁ ଭାସିଚାଲିଛି ପଛରେ କୂଳ, ପାହାଡ଼, ଝାଉଁବନ ଧୀରେଧୀରେ ହଜିଯାଉଛି ସିନା, ଦିଗ୍‌ବଳୟକୁ ଛୁଇଁ ପାରୁନି । ଯୋଜନ ଯୋଜନ ସମୁଦ୍ର ଟପି ଆସିଲେ ବି ଆଗରେ ଆହୁରି ସମୁଦ୍ର । ଅସରନ୍ତି ନୀଳିମାର ଶେଷ ନାହିଁ । ନଉକାର ଯାତ୍ରା ସରେନି, ସରେନିବି ବାସ୍ତବତାର ସମୁଦ୍ର । ଏଇ ଅସରନ୍ତି ଯାତ୍ରା ଭିତରେ ସେଇ ନିଃସଂଗ ନଉକାଟି କେତେବେଳେ ସେଇ ସମୁଦ୍ରର ଅଂଶ ବିଶେଷ ହୋଇଯାଏ । ଏଇ ସଂପର୍କ, ଚେତନାର ଏଇ ଅନ୍ୱେଷା ଆଉ ଏଇ ଅନ୍ୱେଷାର ବିଫଳତା ହିଁ କବିତାର ବାସ୍ତବତା, ତାର ରହସ୍ୟ ।୧୪।

କବିତା ଏକ ଅଭିବ୍ୟକ୍ତି ମୂଳକ କଳା । ଏହା ମଧ୍ୟ ଏକ ଆବେଗମୂଳକ ଅନୁଭୂତି । ତେଣୁ ଯେଉଁ କବିତାରେ ଅଭିବ୍ୟକ୍ତି ଯେପରି ଜୀବନ୍ତ ଓ ସ୍ପଷ୍ଟ ହୋଇଥାଏ ସେହି କବିତା ସେପରି ପାଠକକୁ ରସାନୁସନ୍ଧିତ୍ସୁ କରିଥାଏ । କବିତାକୁ ଯୁକ୍ତି ଛନ୍ଦରେ ବୁଝାଯାଇ ପାରେନା ।

ଯୁକ୍ତିର ଆଶ୍ରା ନେଲେ କବିତାର ରସଗ୍ରହଣରେ ବାଧା ସୃଷ୍ଟି ହୁଏ । କବିତା ଯୁକ୍ତିଧର୍ମୀ କଳା ନୁହେଁ । ତାହା ଭାବ ଉପସ୍ଥାପନ ଧର୍ମୀ କଳା । ଏହି ଉପସ୍ଥାପନା ଶୈଳୀ ହିଁ କବିତାକୁ ଚିରନ୍ତନ ମୂଲ୍ୟ ଆଣି ଦେଇଥାଏ । କବିର ଭାବନା ଯେତେ ଉନ୍ନତ ଓ ସୁସଙ୍ଗତ ହେଉନା କାହିଁକି ତାହା ଯଦି ଶୃଙ୍ଖଳିତ ଭାବରେ ଉପସ୍ଥାପିତ ନ ହୋଇ ପାରେ ତେବେ କାବ୍ୟିକ ଆବେଦନ ଅନେକାଂଶରେ ନଷ୍ଟ ହୋଇଯାଏ ଏବଂ କବିର ଅନ୍ତର୍ନିହିତ ଭାବ ରାଜ୍ୟକୁ ପାଠକ ପଥ ପାଇପାରେ ନାହିଁ । କବିତାର ମୂଳଉସ୍ଥ ଉନ୍ନତ ତଥା ବଳିଷ୍ଠ ନହୋଇ ମଧ୍ୟ ତା'ର ଉପସ୍ଥାପନ ଶୈଳୀ ପାଠକ ନିକଟରେ ଏକ ଅନବଦ୍ୟ ସୃଷ୍ଟି ରୂପେ ପ୍ରତୀୟମାନ ହୁଏ ।୧୫।

**ସଙ୍କେତ ସୂଚୀ :**

୧ : କବିତା ବୀକ୍ଷା : ପୃଷ୍ଠା : ୯
ପ୍ରଥମ ପ୍ରକାଶ : ୧୯୭୬, ଅପୂର୍ବ ରଂଜନ ରାୟ
୨ : ଆଧୁନିକ ଓଡ଼ିଆ କବିତାର ରୂପରେଖ : ପୃଷ୍ଠା : ୭୭
ପ୍ରଥମ ସଂସ୍କରଣ : ୧୯୯୯, ନାରାୟଣ ପଣ୍ଡା
୩ : ସାଂପ୍ରତିକ ସାହିତ୍ୟ : ପୃଷ୍ଠା : ୯୬
ତୃତୀୟ ସଂସ୍କରଣ : ୧୯୯୭, ଡ. ବିଭୂତି ପଟ୍ଟନାୟକ
୪ : କବିତା ବୀକ୍ଷା : ପୃଷ୍ଠା : କ
ପ୍ରଥମ ପ୍ରକାଶ : ୧୯୭୬, ଅପୂର୍ବ ରଂଜନ ରାୟ
୫ : ତତ୍ରୈବ : ପୃଷ୍ଠା : ଖ
୬ : ତତ୍ରୈବ : ପୃଷ୍ଠା : ଖ
୭ : ତତ୍ରୈବ : ପୃଷ୍ଠା : ଖ
୮ : ତତ୍ରୈବ : ପୃଷ୍ଠା : ଗ
୯ : ତତ୍ରୈବ : ପୃଷ୍ଠା : ଗ
୧୦ : ତତ୍ରୈବ : ପୃଷ୍ଠା : ଗ
୧୧ : କବିର ଡାଏରୀ : ପୃଷ୍ଠା : ୩୪
ପ୍ରଥମ ପ୍ରକାଶ : ୧୯୯୭, କମଳାକାନ୍ତ ଲେଙ୍କା
୧୨ : ତତ୍ରୈବ : ପୃଷ୍ଠା : ୩୫
୧୩ : ତତ୍ରୈବ : ପୃଷ୍ଠା : ୬୭
୧୪ : ସତ୍ୟର କୁହୁକ : ପୃଷ୍ଠା ୭
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ
୧୫ : କବିତା ବୀକ୍ଷା : ପୃଷ୍ଠା : ଘ
ପ୍ରଥମ ପ୍ରକାଶ : ୧୯୭୬, ଅପୂର୍ବରଂଜନ ରାୟ

-୦-

# ଆଧୁନିକ ଓଡ଼ିଆ କବିତା

## (କ) ଆଧୁନିକ କବିତାର ସୃଷ୍ଟି, ସ୍ୱରୂପ ଓ ବିକାଶ

ଆଧୁନିକତା ଏକ ଭାବ । ପ୍ରକୃତି ଓ ପରିବେଶ ମଧ୍ୟରେ ଆତ୍ମପ୍ରତିଷ୍ଠା ପାଇଁ ମନୁଷ୍ୟର ସମୂହ ପ୍ରୟାସ ଓ ସାଧନାର ଏହା ଏକ ଅଂଗ । ବିଶେଷ ରୂପେ ଆଧୁନିକ ଆଦର୍ଶର ବହୁକିଛି ପ୍ରାଚୀନ ଯୁଗର ସୃଷ୍ଟି । ମାତ୍ର ଆଧୁନିକତାର ପ୍ରଭାବ ଓ ପ୍ରସାର ବହୁ ପରିମାଣରେ ପରିବେଶ ଉପରେ ନିର୍ଭରଶୀଳ । ଆଧୁନିକ ମଣିଷ ଯାହା ଖୋଜେ ତାହା ପାଏନାହିଁ, ଯାହା ପାଏ ତାହା ଖୋଜେ ନାହିଁ । କୌଣସି ଗଭୀର ତତ୍ତ୍ୱ ବା କାଳ୍ପନିକ ଆଦର୍ଶର ସନ୍ଧାନରେ ସେ ସନ୍ତୁଷ୍ଟ ହୁଏ ନାହିଁ । ତା'ର ଧାରଣାରେ ଜଗତ ଏକ ସ୍ୱଚ୍ଛ ଫଳକର ଆଭାସ ଚିତ୍ର । କୌଣସି ଐଶୀ ରହସ୍ୟାଲୋକର ବାୟୁମଣ୍ଡଳରେ ତା ଚତୁଃପାର୍ଶ୍ୱ ପରିବେଷ୍ଟିତ ନୁହେଁ । ମାନବ ସୃଷ୍ଟ ବାସ୍ତବତାର ଜଗତ ହିଁ ତା'ର ଆପଣାର ଜଗତ । ଆଦିମର ସାମ୍ୟବାଦ, ସାମନ୍ତର କୂପମଣ୍ଡୁକତାର ଊର୍ଦ୍ଧ୍ୱରେ ଆଧୁନିକ ମଣିଷର ସ୍ଥାନ ।୧।

ଆଧୁନିକ ମନୁଷ୍ୟ ଯନ୍ତ୍ରର ସାରଥୀ । ଯନ୍ତ୍ରର ଜଗତ ଏକ ହେତୁବାଦୀ ଜଗତ । ପ୍ରାକୃତିକ ନିୟମ ଅନୁସାରେ ଯନ୍ତ୍ର କାର୍ଯ୍ୟ କରେ । କଳଶକ୍ତି ବା ଯାନ୍ତ୍ରିକ ଶକ୍ତି ଆଧୁନିକ ମନୁଷ୍ୟର ସୃଷ୍ଟ ବହୁ ଯନ୍ତ୍ର ମଧ୍ୟରୁ ମୁଦ୍ରାଯନ୍ତ୍ର ପ୍ରସଙ୍ଗଟି ପ୍ରଥମେ ଉଲ୍ଲେଖ କରାଯାଇପାରେ । ବସ୍ତୁତଃ ମୁଦ୍ରାଯନ୍ତ୍ର, ବାରୁଦ ଓ ରସାୟନ ଏହି ତିନୋଟି ଇନ୍ଦ୍ରଜାଲ ଶକ୍ତି ଆଧୁନିକ ସଭ୍ୟତାର ମୂଳଭିତ୍ତି ସ୍ଥାପନ କରିଅଛି । ବାରୁଦ ଭାଙ୍ଗିଲା ମଧ୍ୟ ଯୁଗର ଦୁର୍ଗ ବ୍ୟୁହ । ନିଜର ଚାରିପାଖରେ ପରିଖା ପ୍ରାଚୀର ବେଷ୍ଟିତ ହୋଇ ଚତୁର୍ଦ୍ଦିଗ ନିଜକୁ ବିଚ୍ଛିନ୍ନ କରି ନିରାପଦ ରହିବାର ସ୍ୱପ୍ନ ବାରୁଦ ହିଁ ଭାଙ୍ଗିଲା । ମଧ୍ୟ ଯୁଗର ମନୁଷ୍ୟ କେବଳ ଯେ ଦୁର୍ଗ ଭିତରେ ଆବଦ୍ଧ ରହି ନିଜକୁ ନିରାପଦ ମଣୁଥିଲା, ତା ନୁହେଁ । ନାନା ଅନ୍ଧବିଶ୍ୱାସ, କୁସଂସ୍କାର ଓ ଆଚାର ବନ୍ଧନ ଭିତରେ ବାନ୍ଧି ହୋଇ ରହୁଥିଲା ।

ବାହାରର ଦୁର୍ଗ ଓ ଭିତର ଦୁର୍ଗ ଆଧୁନିକ ଯୁଗରେ ଚୂର୍ଣ୍ଣୀଭୂତ ହେଲା । ଯୁଦ୍ଧ ଜୟ ପାଇଁ ଯେପରି ପ୍ରୟୋଜନ ହେଲା ବଳ କୌଶଳ, ଦୂର ଲକ୍ଷ୍ୟ ସନ୍ଧାନ; ଜୀବନ ସଂଗ୍ରାମ ପାଇଁ ମଧ ନାନା ନୂତନ ଉଦ୍ଭାବନ କଳା କୌଶଳ ଉଦ୍ଭାବନ ହେଲା । ଠିକ୍ ସେହିପରି ମୁଦ୍ରାଯନ୍ତ୍ରର କଥା । ମୁଦ୍ରିତ ପୁସ୍ତକ ଓ ଅକ୍ଷର ଜ୍ଞାନ ମନୁଷ୍ୟକୁ ଭାବିବାକୁ ସାହାଯ୍ୟ କଲା ।

ପୁସ୍ତକକୁ ଅନ୍ୟ କୁହାଯାଇପାରେ ଭାବିବା ପାଇଁ ଏକ ଯନ୍ତ୍ର ଉଦ୍ଭାବନ ହେଲା । ମନୁଷ୍ୟ ଏକକ ଭାବରେ ଚିନ୍ତା କଲା । ଜ୍ଞାନର ସନ୍ଧାନ କଲା । ଅତୀତ ସହିତ ଭବିଷ୍ୟତର ଯୋଗସୂତ୍ର ସନ୍ଧାନରେ ସମର୍ଥ ହେଲା । ପ୍ରକୃତରେ ଛାପାଖାନାର ଚଳମାନ ଅକ୍ଷରକୁ ଆଧୁନିକ ମନୁଷ୍ୟ ସହିତ ତୁଳନା କରାଯାଇପାରେ । ଲିପିର ଅନ୍ୟ ନାମ ହେଲା ଅକ୍ଷର । ଅନ୍ୟ ନାମରେ ତାକୁ କୁହାଯାଇପାରେ ଅଚଳ ଓ ସ୍ଥିର । ମାତ୍ର ଛାପାଖାନାର ଅକ୍ଷରଗୁଡ଼ିକ ଚଳମାନ, ମୁକ୍ତ ଓ ସ୍ୱାଧୀନ । ଗତିଶୀଳତା ଓ ବ୍ୟକ୍ତିସତ୍ତା ଯେପରି କି ସଦା କ୍ରିୟାଶୀଳ । ଏକଅକ୍ଷର ନାନା ଶବ୍ଦ ଚେତନାରେ ଓ ନାନା ଭାବ ପ୍ରକାଶରେ ସହାୟକ । ତାର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । ପ୍ରାଚୀନ ସମାଜରେ ମନୁଷ୍ୟ ଥିଲା ସମାଜର ଗୋଟିଏ ଗୋଟିଏ ସ୍ଥାନରେ ଆବଦ୍ଧ । ତଳରୁ ଉପରକୁ ଯିବା ବା ଉପରୁ ତଳକୁ ଯିବା ସମ୍ଭବ ନଥିଲା । ମାତ୍ର ଆଧୁନିକ ମନୁଷ୍ୟ ଯେ କୌଣସି ସ୍ଥାନର ପରିବର୍ତ୍ତନ କରିପାରେ । ଆଜି ଯେ ଶ୍ରମିକ କାଲି ଯେ ଶାସକରେ ପରିଣତ ହୋଇପାରେ । କୃଷକର ସନ୍ତାନ ହୋଇପାରେ ଯୋଦ୍ଧା ଓ ଅଭିଜାତ ସାମନ୍ତ ହୋଇପାରେ ସର୍ବହରା । ମାତ୍ର ଏଇ ଛବିର ଅନ୍ୟ ଦିଗଟି ମଧ ବିଚାର ଯୋଗ୍ୟ । ଏ ଦିଗରେ, ତୁଳନାରେ ମୁଦ୍ରା ଯନ୍ତ୍ରର ଅକ୍ଷର ଯେପରି ଚଳମାନ ଓ ଗତିଶୀଳ ସେହିପରି ଅନ୍ୟ ଭାବରେ ଦେଖିଲେ ଯାନ୍ତ୍ରିକ ନିୟନ୍ତ୍ରଣାଧୀନ ସମାନ ଆକୃତି ଓ ସମାନ ମୂଲ୍ୟ ବିଶିଷ୍ଟ ।

ପ୍ରାଚୀନ ଯୁଗରେ ସାମାଜିକ ମନୁଷ୍ୟର ପରିଚୟ ହେଉଥିଲା ସାମନ୍ତ, ନାଗରିକ ଓ ଶିଳ୍ପୀ ଭାବରେ । ମାତ୍ର ଆଧୁନିକ ଯୁଗରେ ମନୁଷ୍ୟର ପରିଚୟ ସୈନ୍ୟ, ପ୍ରଜା, ଶ୍ରମିକ, ଭାବରେ । ଏମାନେ ସମସ୍ତେ ସ୍ଥାନ ପରିବର୍ତ୍ତନ କରିପାରନ୍ତି ଓ ସଂଖ୍ୟାନୁସାରେ ଏମାନଙ୍କ ଗୁଣ ନିର୍ଦ୍ଧାରଣ କରାଯାଇପାରେ । ଆଧୁନିକ ଜଗତରେ ସବୁ କିଛିର ମୂଲ୍ୟ ଯେପରିକି ବିନିମୟ ସୂତ୍ରରେ ଗୃହୀତ । ଆଧୁନିକ ମନୁଷ୍ୟ ବ୍ୟକ୍ତି ସ୍ୱାଧୀନତା ଓ ସ୍ୱାଚ୍ଛନ୍ଦ୍ୟ ପାଇଅଛି । ପାଇଛି ଉପଯୋଗୀ ଶିକ୍ଷା, ବାସଗୃହ ଓ ଯାନବାହନ । କିନ୍ତୁ ଯଥାର୍ଥ ବ୍ୟକ୍ତିତ୍ୱ ଆହରଣ ପାଇଁ ପଦେ ପଦେ ବାଧାର ସମ୍ମୁଖୀନ ହୋଇଅଛି ।

ପ୍ରାଚୀନ ଯୁଗରେ ଜୀବନ ଥିଲା ଯେପରିକି ସରଳ କୃଷକର ଜୀବନ । ଏଇ ଜୀବନ ଧାରାର ଏକ ଜୀବନ୍ତ ଆକୃତି ଥିଲା ଓ ଥିଲା ସୃଷ୍ଟିଶୀଳତା । କିନ୍ତୁ ଆଧୁନିକ ଜୀବନ ହୋଇଛି ନଗର କୈନ୍ଦ୍ରିକ ଯାନ୍ତ୍ରିକ । ପ୍ରାକୃତିକ ପରିବେଶ ସହ ମନୁଷ୍ୟର ଯୋଗସୂତ୍ର ହୋଇଛି ଛିନ୍ନ । ପ୍ରକୃତି ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଯାଇ କୃତ୍ରିମ ଆବରଣ ଭିତରେ ଆଧୁନିକ ମନୁଷ୍ୟଙ୍କୁ ଆତ୍ମହରା ହେବାକୁ ହୋଇଛି । ଆଧୁନିକ ମନୁଷ୍ୟର ବାହାରେ ନିରାପତ୍ତା ମାତ୍ର ଅନ୍ତରେ ଅନ୍ତରେ ଆତ୍ମ ପୀଡ଼ନର ବିଷକ୍ରିୟା ।

ଆଧୁନିକ ଜଗତ ଯେପରି ମୁଦ୍ରଣର ଜଗତ ସେପରି ମଧ ମୁଦ୍ରାର ଜଗତ । ମୁଦ୍ରାହୀନ ଜଗତରେ ସବୁକିଛି ଥିଲା ଶିଳ୍ପ ସୃଷ୍ଟି । ଶ୍ରମିକ ଥିଲା କାରିଗର ଓ ଶିଳ୍ପୀ । ଆତ୍ମା ସହିତ ପଣ୍ୟବସ୍ତୁର ଯୋଗଥିଲା ନିବିଡ଼ । ନଥିଲା ସମୂହ ଉତ୍ପାଦନ (Mass Production)

ନଥିଲା ମୁଦ୍ରା ପାଇଁ ଶ୍ରମ । ଶ୍ରମ ସହିତ ଜଡ଼ିତ ଆନନ୍ଦ, ହାତର ତାରିଫ୍, ପୌରୁଷର ଦାନ ଚିହ୍ନ, ନିଜ କୁଳ ଓ ବଂଶର ଗୌରବ ସବୁକିଛି ସେ ଯୁଗର ସୃଷ୍ଟିକୁ ଶିଳ୍ପୀ ମୂଲ୍ୟବାନ କରୁଥିଲା । ସେ ଯୁଗରେ ମୁଦ୍ରାହୀନ ଜଗତରେ ବ୍ୟକ୍ତିଗତ ଆୟ ବଢ଼ାଇବାର ଆବଶ୍ୟକତା ନଥିଲା । ଜୀବନ ଧାରଣ ମାନ ରଜା, ପ୍ରଜା, ଧନୀ, ଭିକାରୀ, ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେ ଯୁଗର ଶିଳ୍ପୀ ବା ଶ୍ରମିକ ସମାଜ କେବଳ ଜୀବନ ଧାରଣ ପାଇଁ ଆୟ କରୁଥିଲେ । ମାତ୍ର ଏହି ମୁଦ୍ରାର ଜଗତରେ ସମସ୍ତେ ଯେପରିକି ଆୟ କରିବାପାଇଁ ବଞ୍ଚିବାକୁ ଚାହାନ୍ତି ।୨।

ଆଧୁନିକ ମଣିଷକୁ ପ୍ରାଚୀନ ମଣିଷ ସହିତ ତୁଳନା କଲେ କେତେକ ପ୍ରଧାନ ପାର୍ଥକ୍ୟ ସହଜରେ ଅନୁଭୂତ ହୁଏ । ପ୍ରାଚୀନ ମନା ଲୋକେ ବିଶ୍ୱାସର ଜଗତରେ ବାସ କରୁଥିଲେ । ଆର୍ଷ ବଚନ, କିମ୍ବଦନ୍ତୀ, ଜନରବ, କାବ୍ୟର କଳ୍ପନା, ବିବେକର ବାଣୀ, ସାଧୁ, କାପାଳିକ, ଈଶ୍ୱର, ସବୁକିଛି ସେମାନେ ବିଶ୍ୱାସ ଦୃଷ୍ଟିରେ ଗ୍ରହଣ କରୁଥିଲେ । ସର୍ବୋପରି ନିଜ ଉପରେ ସେମାନଙ୍କର ଥିଲା ଅଖଣ୍ଡ ବିଶ୍ୱାସ । ସବୁକିଛି ଉପରେ ଏକ ଶାଶ୍ୱତ ଈଶ୍ୱରୀୟ ସତ୍ତାର ବିଦ୍ୟମାନତାରେ ବିଶ୍ୱାସ, ସେମାନଙ୍କୁ ସବୁ ପ୍ରକାର ସଂଶୟ ଓ ହେତୁ ଜିଜ୍ଞାସାର ଊର୍ଦ୍ଧ୍ୱକୁ ଘେନି ଯାଇଥିଲା । ପ୍ରାଚୀନ ଯୁଗରେ ଯଦି କିଛି ଉଜ୍ଜ୍ୱଳତାର ଆଭାସ ଥିଲା, ତାହା ଥିଲାକେବଳ ଉଜ୍ଜ୍ୱଳ ବିଶ୍ୱାସ । ସେ ଯୁଗର ଲୋକ ଥିଲା ଦୃଢ଼ବିଶ୍ୱାସୀ, ସଦା ପ୍ରସନ୍ନ, ଆତ୍ମବିଶ୍ୱାସ ପରାୟଣାକଳ୍ପନା ପ୍ରାଚୁର୍ଯ୍ୟ ଓ ଆଶାବାଦ ମଧ୍ୟରେ ତାହାର ଜୀବନ ଥିଲା କୌତୁହଳମୟ, ଉତ୍ତେଜନା ପୂର୍ଣ୍ଣ ଓ ଭାବପ୍ରବଣ । ମାତ୍ର ଆଧୁନିକ ମନୁଷ୍ୟର ଜୀବନ ଏହି ଭାବ ପ୍ରବଣତାର ବହୁ ଉର୍ଦ୍ଧ୍ୱରେ । ଆଧୁନିକ ମନୁଷ୍ୟ ପ୍ରତ୍ୟେକ କାର୍ଯ୍ୟ ଦ୍ରୁତ ଗତିରେ ଓ ଆରାମରେ କରିବାକୁ ଚାହେଁ । ମାତ୍ର କେତେ ଦ୍ରୁତ ଓ କେତେ ଆରାମ ? ତେଣୁ ପଦେ ପଦେ ଅସ୍ୱସ୍ତି । ପ୍ରତ୍ୟେକ ଯାନ୍ତ୍ରିକ ଉଦ୍ଭାବନ ଏବଂ ହେତୁବାଦୀ ଜୀବନ ଧାରାର ଅଂଶ ବିଶେଷ । ଏହା ପ୍ରତି ମୁହୂର୍ତ୍ତରେ ପୂର୍ଣ୍ଣତାର ଅପେକ୍ଷା ରଖେ । ସର୍ବତ୍ର ଏକ ନୈର୍ବ୍ୟକ୍ତିକତା ଓ ଏକରୂପକତାର ଆଭାସ ବହନ କରେ ।

ପ୍ରାଚୀନ ଯୁଗରେ ପ୍ରକୃତି ଥିଲା ପ୍ରକୃତରେ ବଣ୍ୟ । ଜୀବନ ଥିଲା ଯେପରିକି ଏକ ଦୁଃସାହସିକ ଯାତ୍ରା । ବିପଦ ସଙ୍କୁଳ ଏକ ଅପେରେସନ ପରି ପ୍ରତ୍ୟେକ ଯାତ୍ରା ଥିଲା ଭୟଙ୍କର । ମାତ୍ର ଆଧୁନିକ ମଣିଷ ଠାରେ ପ୍ରକୃତି ଯେପରିକି ତା'ର ସକଳ ବନ୍ୟତା ହରାଇଛି । ସେ ଯେପରିକି ଆଧୁନିକ ମନୁଷ୍ୟର ଇଙ୍ଗିତ ଚାଳିତ ସେବାଦାସୀ ।

ଆଧୁନିକ ଯୁଗରେ ଚିନ୍ତାର ସାମ୍ୟ ଥିଲା । ଯଦି ବା ଆଚାରଗତ ବୈଷମ୍ୟ ଓ ବିଚ୍ଛିନ୍ନତା ସଂସ୍କୃତିକୁ ବହୁ ଲୌକିକ ଓ ଆଞ୍ଚଳିକ ଆକୃତି ଦାନ କରିଥିଲା । ମାତ୍ର ଆଧୁନିକ ଯୁଗରେ ଆଞ୍ଚଳିକତା ଓ ଲୌକିକତା, ସାର୍ବଜନୀନତା ଓ ସାମଗ୍ରିକତାରେ ପରିଣତ ହୋଇଅଛି । ସବୁକିଛି ସର୍ବଜନ ଲଭ୍ୟ ଜ୍ଞାନର ଆଲୋକରେ ଉଦ୍ଭାସିତ । ଏକ ଆନ୍ତର୍ଜାତିକ ସଂସ୍କୃତିର ଯୁଗରେ ଆଧୁନିକ ମନୁଷ୍ୟ ବାସ କରେ ।

ଆଧୁନିକ ଯୁଗରେ ପ୍ରବେଶ ପାଇଁ ମନୁଷ୍ୟକୁ ଯେପରିକି ଦୁଇଟି ତପ୍ତ ଟ୍ୟୁବ୍ ମଧ୍ୟରେ ଗତିକରିବାକୁ ହୋଇଅଛି । ତା ହେଉଛି ଇନ୍ଦ୍ରିୟ ଗ୍ରାହ୍ୟତା ଓ ବସ୍ତୁତାନ୍ତ୍ରିକତା । ଇନ୍ଦ୍ରିୟଗ୍ରାହ୍ୟ ସୁଖର ସନ୍ଧାନରେ ଓ ବସ୍ତୁତନ୍ତ୍ରତାର କଠୋର ଯନ୍ତ୍ରଣାରେ ସେ ଯେପରିକି ନିପେଷିତ । ସୁଖ ଓ ଶାନ୍ତିର ସନ୍ଧାନ କରିବାକୁ ଯାଇ ତା'ର ଆତ୍ମାପୀଡ଼ିତ । ଉଷା ଅଥବା ଉଷସୀର ଦୁଇ ଦିଗ୍‌ବଳୟର ସୀମାନ୍ତରେ ସେ ଯେପରିକି ପଥହରା । ଈଶ୍ୱରଦତ୍ତ ସ୍ୱଭାବିକତାର ଆଲୋକରେ ଜଗତକୁ ଦେଖିବାର ଶକ୍ତି ସେ ହରାଇଛି । ଅଥଚ ହେତୁଜ୍ଞାନର କୃତ୍ରିମ ଆଲୋକରେ ନିଜକୁ ଓ ନିଜ ଜଗତକୁ ସଂପୂର୍ଣ୍ଣ ରୂପେ ଦେଖିବାକୁ ସମର୍ଥ ହୋଇନାହିଁ । ଗୋଟିଏ ସମସ୍ୟାର ସମାଧାନ କରିବାକୁ ଯାଇ ସହସ୍ର ସମସ୍ୟା ସୃଷ୍ଟିକରି ଚାଲିଛି ।୩।

ଆଧୁନିକ ମନୁଷ୍ୟ ବସ୍ତୁବାଦୀ ହୋଇ ହୋଇଛି ସଂଶୟବାଦୀ । ସଂଶୟର ପଥ ବିନାଶର ପଥ, "ସଂଶୟାତ୍ମା ବିନଶ୍ୟତି" । ମାତ୍ର ଏଇ ଦୁର୍ବଳତାର ଊର୍ଦ୍ଧ୍ୱରେ ଆଧୁନିକ ମନୁଷ୍ୟଠାରେ ସମନ୍ୱୟ ଆଦର୍ଶ ଉଦ୍‌ଭାସିତ । କୋରିଲେଟିଭ୍‌ର ସିଦ୍ଧାନ୍ତ ଆଧୁନିକତାର ମୂଳକଥା । ଆଧୁନିକ ମନୁଷ୍ୟଠାରେ କଳା ଓ ଉପଯୋଗିତା, କବିତା ଓ ବାସ୍ତବତା, କଳ୍ପନା ଓ ବିଜ୍ଞାନର ତରଂଗ ଓ ଉପକୂଳ ଭଳି ସମାନ୍ତରାଳ ସ୍ଥିତି ଓ ପାରସ୍ପର୍ଯ୍ୟ ମୂଳକ କ୍ରିୟା ପ୍ରକ୍ରିୟା ଉପରେ ଆଧାରିତ ।

ଆଧୁନିକ ଯୁଗ ସାଇବର ନେଟିକ୍‌ର ଯୁଗ । ନିକଟ ଓ ସୁଦୂରକୁ, ସମୂହର ଇଚ୍ଛା ଓ ବ୍ୟକ୍ତିର କ୍ରିୟା କୁଶଳତାକୁ ଯାନ୍ତ୍ରିକ ଗଣନାପଦ୍ଧତିରେ କେନ୍ଦ୍ରୀଭୂତ କରି ନିୟନ୍ତ୍ରଣ କରିବା କୌଶଳ ଆଧୁନିକ ମନୁଷ୍ୟକୁ ନୂତନ ଭବିଷ୍ୟତର ସନ୍ଧାନ ଦେଇଛି । ଆଧୁନିକ ମନୁଷ୍ୟ ଏଥିଲାଗି ହୋଇଛି ସମୟର ଉଡନ୍ତା ପକ୍ଷର ଯାତ୍ରୀ । ଏ ସମୟ ସୀମାହୀନ କେବଳ ନୁହେଁ; ଅଗ୍ର ପାଶ୍ଚାତ୍ୟହୀନ ଅଥଚ ଏକ ଚିର ପ୍ରବହମାନ ସତ୍ତା । ଏହି ସତ୍ତାର ସର୍ବମୟ ଅସ୍ତିତ୍ୱ ପ୍ରାଚୀନ, ଈଶ୍ୱର ବିଶ୍ୱାସ ଭଳି ରହସ୍ୟମୟ, ମାତ୍ର ସୂର୍ଯ୍ୟର ଆଲୋକ ରଶ୍ମି ଭଳି ସୃଷ୍ଟିଶୀଳ, ସକ୍ରିୟ ଓ ଶକ୍ତିମାନ । ଏହି ଶକ୍ତିର ଆଲୋକ ଆତ୍ମୀକରଣ ହିଁ ବିବିଧ ଅଜସ୍ର ରୂପାନ୍ତର ମଧ୍ୟରେ ହିଁ ଆଧୁନିକତାର ସାର୍ଥକତା ।୪।

ଆଧୁନିକତା ସମକାଳୀନତା ନୁହେଁ । ଏହା ଏକ ଭାବ । ଶାଶ୍ୱତ ସହିତ ଏହାର ବିରୋଧ ନାହିଁ । ବରଂ ଏହା ଶାଶ୍ୱତର ପରିପୂରକ । ଆଧୁନିକତା ପ୍ରାଚୀନତାର ବିରୋଧୀ । ପ୍ରାଚୀନତା ମଧ୍ୟ କେବଳ କାଳକୁ ବୁଝାଏ ନାହିଁ । ଅପ୍ରୟୋଜନୀୟ ଅହେତୁକ ଅନ୍ଧ ଆଚାର ଉପରେ ପ୍ରତିଷ୍ଠିତ ଗତାନୁଗତିକ ଭାବରାଜି ପ୍ରାଚୀନତାର ଦୋସର । ଜ୍ଞାନ, ଅନୁଭୂତି, ହେତୁବାଦୀମନନ ଏ ଶୁଭବୁଦ୍ଧି ସଂପନ୍ନ କର୍ମକୁଶଳତା ସାହାଯ୍ୟରେ ମଣିଷ ଯୁଗେ ଯୁଗେ ପ୍ରାଚୀନତାର ଅନ୍ଧକାର ମଧ୍ୟରୁ ଆଧୁନିକତାର ଆଲୋକ ସନ୍ଧାନରେ ପ୍ରୟାସ କରେ । ଏହି ପ୍ରୟାସର ଶୁଭ ସଙ୍କେତ ସାହିତ୍ୟରେ ପ୍ରଥମେ ଧରା ଦିଏ । ଆଧୁନିକତା ଓ ପ୍ରାଚୀନତା ମଧ୍ୟରେ ସଂଶୟ ପୀଡ଼ିତ ମନୁଷ୍ୟକୁ ରକ୍ଷା କରିବା ସାହିତ୍ୟର ଲକ୍ଷ୍ୟ । ଆଧୁନିକତାର ବହିରଙ୍ଗ ଉପାଦାନ ସହଜରେ ମଣିଷ ମନକୁ ଆକୃଷ୍ଟ କରେ ।

କିନ୍ତୁ ତା'ର ଅନ୍ତରଙ୍ଗ ଭାବମୂର୍ତ୍ତିକୁ ଗ୍ରହଣ କରିବା ପାଇଁ ଯେଉଁ ଜ୍ଞାନ ସାଧନା ଓ ବିଚାରବୁଦ୍ଧି ପ୍ରୟୋଜନ ତାହାର ଅଭାବ ଦେଖାଯାଏ ।

ଆଧୁନିକତାର ଆଲୋକରେ ଆମେ ଆମ ଅନ୍ତରକୁ ସେହି ପରିମାଣରେ ଆଲୋକିତ କରି ପାରୁନୁ । ସେଥିପାଇଁ ଘରେ ବାହାରେ, ପ୍ରାଚୀନ ଓ ନବୀନଙ୍କ ମଧ୍ୟରେ ହେତୁବାଦୀ ବିଜ୍ଞାନ ଓ ଭାବବାଦୀ କଳା ମଧ୍ୟରେ ସଂଘର୍ଷ । ଏହି ସଂଘର୍ଷରୁ ଊର୍ଦ୍ଧ୍ୱରେ ଉଠିବା ପାଇଁ ସାମ୍ୟ ଓ ସମନ୍ୱୟର ପଥ ହିଁ ଏକମାତ୍ର ପଥ ।

ଆଧୁନିକ ଜୀବନ ସମସ୍ୟା-ଜର୍ଜର । ପ୍ରତ୍ୟେକ ସମସ୍ୟାର ଉଦ୍‌ଭବ ଓ ସମାଧାନର ସୂତ୍ର ଖୋଜିବା ପାଇଁ ବିଶ୍ୱଜନୀନ ପ୍ରୟାସ ଓ ଦୃଷ୍ଟିକୋଣ ଆବଶ୍ୟକ । ଆଧୁନିକ ସାହିତ୍ୟର ବହୁ ସମସ୍ୟାର ସୂତ୍ର ଏହି ଭାବରେ ଖୋଜା ଯାଇପାରେ । ଆଧୁନିକ ଜୀବନ ବିଜ୍ଞାନ ଭିତ୍ତିକ । ବିଜ୍ଞାନ ଆନ୍ତର୍ଜାତିକ । ଜଗତ ଓ ଜୀବନର ସକଳ କ୍ଷେତ୍ରରେ ପାରସ୍ପର୍ଯ୍ୟ ସ୍ଥାପନ ଏହାର ଲକ୍ଷ୍ୟ । ବିଜ୍ଞାନରସାଧନ ଓ ଉଦ୍ଭାବନ ଆମର ଜୀବନକୁ କରିଛି ପରସ୍ପର ପ୍ରତି ନିର୍ଭରଶୀଳ । ବ୍ୟକ୍ତିର ବିଚ୍ଛିନ୍ନତା ନୁହେଁ, ସାମାଜିକ ସମନ୍ୱୟ ହେଉଛି ଆଧୁନିକ ଜୀବନର ଧର୍ମ । ଆମର ବାସ ଓ ଗ୍ରାମ, ଆରାମ ଓ ବିରାମ ସକଳ କ୍ଷେତ୍ରରେ ଏହି ବିଶ୍ୱଜନୀନ ନିର୍ଭରଶୀଳତାର ପ୍ରକାଶ ବିଦ୍ୟମାନ । ଆଧୁନିକ ସାହିତ୍ୟ ଆଧୁନିକ ଜୀବନର ଦୃଶ୍ୟମାନ ସଂହତି ଓ ଅଦୃଶ୍ୟ ବ୍ୟବଧାନର ଚିତ୍ର ପ୍ରଦାନ କରେ ।

ଆଧୁନିକ ଶବ୍ଦର ଅର୍ଥ ଆପେକ୍ଷିକ । ପ୍ରତ୍ୟେକ ଯୁଗର ସାହିତ୍ୟ ସେ ଯୁଗର ଆଧୁନିକ ସାହିତ୍ୟ ରୂପରେ ପରିଚିତ ଯେ କୌଣସି ସମୟର ସମସାମୟିକ ବ୍ୟକ୍ତିଗତ ଓ ସାମାଜିକ ଚେତନା ଭିତରେ ପାରସ୍ପରିକ ସଂପର୍କ ହିଁ ଉକ୍ତ ସମୟର ଆଧୁନିକତା ନିର୍ଣ୍ଣୟ କରିଥାଏ । ସମୟ-ସ୍ରୋତରେ ସାମାଜିକ ପରିବର୍ତ୍ତନ ଆବଶ୍ୟମ୍ଭାବୀ । ମଣିଷର ଆତ୍ମାସହିତ ଏଇ ଅପରିବର୍ତ୍ତିତ ସମାଜର ନୂତନ ସଂପର୍କ ପ୍ରତିଷ୍ଠିତ ହୁଏ । ଆତ୍ମିକ ଚେତନା ଓ ସାମାଜିକ ମୂଲ୍ୟବୋଧ ଭିତରେ ଏହି ଉତ୍ତେଜନାସୃଷ୍ଟି ହେବାବେଳେ ଯେଉଁ ନୂତନ ଚେତନାର ସୂତ୍ରପାତ ହୁଏ ତାହାହିଁ ସାହିତ୍ୟରେ ଆଧୁନିକ ବୋଲି ମନେହୁଏ ।

ଆଧୁନିକତାର ଧର୍ମ ହେଉଛି ପ୍ରତିଷ୍ଠିତ ମୂଲ୍ୟବୋଧକୁ ଅସ୍ୱୀକାର କରିବା । ସୁତରାଂସାହିତ୍ୟ କ୍ଷେତ୍ରରେ ଆଧୁନିକତା ଏକ ପରୀକ୍ଷା ବା (Experiment) ଛଡ଼ା ଅନ୍ୟ କିଛି ନୁହେଁ । ଆଧୁନିକତା ଅତୀତ ଏବଂ ବର୍ତ୍ତମାନର ଏକ ମଧୁର ସମନ୍ୱୟ । କାରଣ ପ୍ରତ୍ୟେକ ଯୁଗର ଶିଳ୍ପକଳା ତା'ର ଅତୀତ ଯୁଗର ଶିଳ୍ପଭିତ୍ତି ଉପରେ ଦଣ୍ଡାୟମାନ ହେବା ସଙ୍ଗେ ସଙ୍ଗେ ତା'ର ନିଜ କଳା ଓ ସମାଜ ପ୍ରତି ଅଧିକ ଅନୁରକ୍ତି ପ୍ରକାଶ କରିଥାଏ ।

ଆଧୁନିକ ବା ମଡର୍ଣ୍ଣ ନିଶ୍ଚିତ ଭାବେ ଏକ ଦ୍ୱନ୍ଦ୍ୱାତ୍ମକ, ସଂଶୟାଚ୍ଛନ୍ନ ଶବ୍ଦ । ଏହାର ଜନ୍ମ ଜାତକ ଏହାର ସ୍ୱରୂପ, ପ୍ରକୃତି ଓ ସଜ୍ଞାଦି ଅସ୍ପଷ୍ଟତାର ଅଳନ୍ଧୁରେ ଲୁକ୍କାୟିତ । ଆଧୁନିକତାର ଶୁଭଶଙ୍ଖ କେବେ କେଉଁଠିବାଜି ଉଠି ତାର ଧ୍ୱନି ପ୍ରତିଧ୍ୱନିର ପ୍ରକମ୍ପ କେବେସାରା ବିଶ୍ୱକୁ ଆଚ୍ଛନ୍ନ କରିଦେଲା ତାହାନିରୂପଣ କରିବା ଖୁବ୍ କଷ୍ଟକର । ହୋଇପାରେ

ଏହା ଏକବିପ୍ଳବ, କଳା, ସାହିତ୍ୟ, ସଂସ୍କୃତି ଓ ଚେତନାର ବିପ୍ଳବ । ତେବେ ରାଜନୈତିକ ବା ସାମରିକ ବିପ୍ଳବ ପରି ଏହା ଏକ ନିର୍ଦ୍ଦିଷ୍ଟ ତାରିଖରେ ନିର୍ଦ୍ଦିଷ୍ଟ ରୂପରେ ସଂଘଟିତ ହୋଇନାହିଁ । ଏହାଏକ କ୍ରମବର୍ଦ୍ଧମାନ ନିରବଚ୍ଛିନ୍ନ ଉଦ୍ୟମ, ଯାହା କ୍ରମଶଃ ଚେତନାରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଛି । ତେଣୁ ତା'ର ଅତୀତ ଇତିହାସ ଓ ପୃଷ୍ଠଭୂମି, ବିକାଶ, ବିସ୍ତାର ଆଦି ବିଚାରକୁ ନେଇ ତା'ର ତର୍ଜ୍ଜମାକରିବାର ଆବଶ୍ୟକତା ରହିଛି ।୫।

ଆଧୁନିକତା ଉଦ୍ଭବର ପଶ୍ଚାତ ଦେଶରେ, ବୈଜ୍ଞାନିକ,ସାମାଜିକ, ରାଜନୈତିକ, ଧର୍ମୀୟ ଓ ସାହିତ୍ୟିକଅବଦାନ ନିହିତ । ଭିକ୍ଟୋରିଆନ୍ ଅବବୋଧ ଅଥରିଟି ଓ ଏକ୍ସପର୍ଟ ଠାରେ ସମର୍ପଣକୁ ଚାଲେଞ୍ଜ କରାଗଲା । ଲୋକଙ୍କ ମଧ୍ୟରେ ଏକ ଅବିରାମ ଆକାଂକ୍ଷା, ରହସ୍ୟାୟିତ ପ୍ରଶ୍ନ, ଯୁକ୍ତିକର କୁସଂସ୍କାର ଓ ବାଧବାଧକ ମନୋଭାବକୁ ଚାପିନେଲା । ଇବ୍‌ସେନ୍‌ଙ୍କ Dolls Houseରେ ନୋରାଙ୍କ ପୁରୁଷ ବିରୋଧୀ ମନୋଭାବ ତଥା ତା ସୌଖିନ୍ କଣ୍ଢେଇ ଘରୁ ନାରୀର ମୁକ୍ତି ଆନ୍ଦୋଳନ ଏବଂ ଜର୍ଜ ବର୍ଣ୍ଣାଡସଙ୍କ Major Barbaraରେ ଏକ ପରିବର୍ତ୍ତିତ ସ୍ୱର ପ୍ରଚ୍ଛନ୍ନ । ବାରବ୍ରାର ସଂଳାପ 'I Stood on the rock I thought eternal and without a word in reeled and crumbled under me.'।୬।

ଧର୍ମ ନୈତିକତା ଓ ରାଜନୈତିକ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଛି ଏଥିରେ । 'Art for art sake'ର ଧାରା ବଦଳି ଯାଇ Art for the sake of comunity ଓ Art for life sake ହୋଇଗଲା । Sociological ଏବଂ Political Motives ପ୍ରାଧାନ୍ୟ ଲାଭକଲା ଓ ତହିଁରେ ସାହିତ୍ୟର ସତ୍ତା ହଜିଗଲା ପରି ପ୍ରତୀତ ହେଲା । ପ୍ରିଣ୍ଟ ମିଡ଼ିଆର ବହୁଳ ପ୍ରସାର ତଥା ପରବର୍ତ୍ତୀ ସମୟର ଇଲେକ୍ଟ୍ରୋନିକ ମିଡ଼ିଆର ପ୍ରସାର ପରିବର୍ତ୍ତନର ମାର୍ଗ ପ୍ରସ୍ତୁତ କଲା । ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ସାଧାରଣ ଜନତା ସ୍ଥାନରେ (Massman)ର ପ୍ରଭାବ ଉଦ୍ଭବ ହେଲା । ଖ୍ରୀଷ୍ଟ ଧର୍ମର ପ୍ରାଧାନ୍ୟ ଲୋପ ପାଇଲା । ଫେବିଆନ ସୋସାଇଟ୍‌ର ଉଦ୍ଭବ ହେଲା । ବ୍ଲୁମସ୍ ବରୀଗ୍ରୁପ୍ ବ୍ରିଟିଶ୍ ବୌଦ୍ଧିକ ଜୀବନକୁ ପ୍ରଭାବିତ କଲା ଏବଂ ସାଧାରଣ ସ୍ୱାର୍ଥ ଥିବା ଘଟଣାକୁ ଜାହିର କରାଗଲା । ଭାରତ ବର୍ଷରେ ବ୍ରାହ୍ମ ସମାଜ ପ୍ରତିଷ୍ଠା, ରାମମୋହନ ରାୟ ଓ ବିଦ୍ୟାସାଗରଂକ ସଂସ୍କାର ଧର୍ମୀ ଆନ୍ଦୋଳନ ଗଣଚେତନାକୁ ପ୍ରଭାବିତ କଲା । ଏସବୁ ସାହିତ୍ୟ କ୍ଷେତ୍ରରେ ପ୍ରତିଫଳିତ ହେଲା । 'Art gave Place to anti-art and under the banner of Anti-Art chaotic production needed to apology or defence chaos had indeed come again, bringing its high priests and devotes.'।୭।

ସାହିତ୍ୟ ଏକ ଉପଭୋକ୍ତା ସାମଗ୍ରୀ (Consumer's Goods) ରେ ପରିଣତ ହୋଇଗଲା । ବ୍ୟକ୍ତି ଜୀବନ ଜଟିଳ,ବ୍ୟସ୍ତ ମୁଖର, ବିବ୍ରତ, ଅ-ନିଶ୍ଚିତ ଓ ଅସ୍ଥିର ବୋଧ ହେଲା । ପରିବେଶ ବିପଦସଂକୁଳ ଥିଲା । ଏକ କାଚଘରେ ବା ଆଗ୍ନେୟଗିରିଗହ୍ୱରରେ

ବାସକଲା ଭଳି ମଣିଷବୋଧ କଲା, ପ୍ରତିମୁହୂର୍ତ୍ତରେ ତୃତୀୟ ବିଶ୍ୱଯୁଦ୍ଧର ସମ୍ଭାବନା ତାକୁଭୟ ସନ୍ତ୍ରାସ ମଧ୍ୟରେ ମୁହ୍ୟମାଣ କରୁଥିଲା ।

ପରିବେଶ ଓ ପରିସ୍ଥିତିରେ ସାହିତ୍ୟର ଆକାରରେ ପରିବର୍ତ୍ତନ ଘଟିଲା । ଜୀବନ ପରି କବିତା ବିଛନ୍ଦ ଓ ଗଦ୍ୟମୟ ହେଲା । ଆଳଙ୍କାରିକତା ଓ ଆଡମ୍ବର ଅନ୍ତର୍ହିତ ହେଲା । ପୁରାଣ କାବ୍ୟ ଓ ପାଞ୍ଚଅଙ୍କ ବିଶିଷ୍ଟ ନାଟକ ସ୍ଥାନରେ ଆତ୍ମ ପ୍ରକାଶ କଲା, କ୍ଷୁଦ୍ର କବିତା କ୍ଷୁଦ୍ରଗଳ୍ପ ଓ ଏକାଙ୍କିକା । ଜୀବନ ପରି ସାହିତ୍ୟ ଉଦ୍ଭଟ ବା Absurd ହୋଇଗଲା । ଏହିପରିବର୍ତ୍ତନ ଅଧିକ ଭାବେ ନାଟକ ଓ କବିତାରେ ଅନୁଭୂତ ହେଲା । ସାଧାରଣ ଲୋକ ଏହାକୁ ଖୁବ୍ ବେଶୀ ଗ୍ରହଣ କଲେ ନାହିଁ ।ଅବୋଧ୍ୟତା ବା ଦୁର୍ବୋଧ୍ୟତା ସାହିତ୍ୟକୁ ଗ୍ରାସ କଲା ।ଚରିତ୍ର ଗୁଡ଼ିକ ତଦନୁଯାୟୀ ଦୁର୍ବୋଧ୍ୟ ଓ ରହସ୍ୟମୟ ଜଣାଗଲେ ।ସାହିତ୍ୟ ଜୀବନ ଓ ସମାଜ ମଧ୍ୟରେଏକ ସମନ୍ୱୟ ନିମନ୍ତେ ଉଦ୍ୟମ ଆରମ୍ଭ ହେଲା ।

T.S. Eliot ଙ୍କ (Dissociation of Sensibility) ଚେତନାର ପୃଥକୀକରଣ ଓ (Unification of Sensibility) ବା ଚେତନାର ଏକ୍ତୀକରଣ ବେଶ ଚମତ୍କାର ଆଧୁନିକ ଉପାଦାନ । ଆଧୁନିକ ମଣିଷର ଚିନ୍ତା ଓ ଅନୁଭୂତି ମଧ୍ୟରେ ସୁସମନ୍ୱୟ ରହିପାରୁ ନାହିଁ । ଅନ୍ୟଭାଷାରେ କହିଲେ Unifled sensibility ଚରିତ୍ରରେ ପରିଦୃଷ୍ଟ ହେଉନାହିଁ । ବ୍ୟକ୍ତିତ୍ୱର ପୂର୍ଣ ବିକାଶ ଅସମ୍ଭବ ବୋଧ ହେଉଛି । ସେହିପରି ଆଉ ଏକ ମନସ୍ତାତ୍ତ୍ୱିକ ଉପଚାର ଚେତନା ପ୍ରବାହର ଧାରା ବା Stream of Consciousness, ଖଣ୍ଡିତ ଚେତନା ସବୁ ନଦୀ ଓ ଝରଣାର ସ୍ରୋତପରି ବହିଯାଏ । ତାକୁ ପ୍ରକାଶ କରାଯାଇଛି "Let us call it the stream of thought of consciousness or of subjective life" ଏପରି ଅନେକେ ନୂତନତାର ଇସ୍ତାହାର ଦେଇ ନୂତନ ସାହିତ୍ୟର ଭିତ୍ତିପ୍ରସ୍ଥ ଗଢ଼ି ଉଠିଛି । ସାମାଜିକ, ରାଜନୈତିକ, ଅର୍ଥନୈତିକ, ବୈଜ୍ଞାନିକ ତଥା ପରିପାର୍ଶ୍ୱିକ ପ୍ରଭାବରେ ପ୍ରଭାବିତ ହୋଇଛି ।

ଆଧୁନିକତା ଏକ ସ୍ୱୟଂଭୂ ବା ବସ୍ତୁନିରପେକ୍ଷ ଜିନିଷନୁହେଁ । ଉତ୍ପାଦନ ପଦ୍ଧତିରେ ବୈପ୍ଳବିକ ପରିବର୍ତ୍ତନ ଯୋଗ ମଣିଷର ସାମାଜିକ-ସଂପର୍କ ବଦଳିବା ସଙ୍ଗେ ସଙ୍ଗେ ତା'ର ରୁଚି ଓ ମୂଲ୍ୟବୋଧ ଓ ଭାବ ପ୍ରକାଶର ଭଙ୍ଗୀ ଓ ଭାଷାରେ ମଧ୍ୟ ଦ୍ରୁତ ପରିବର୍ତ୍ତନ ଘଟିବାକୁ ବାଧ୍ୟ । ମଣିଷର ଜୀବନଧାରାବଦଳି ଚାଲିଥିବ ଅଥଚ ତା'ର ଚିନ୍ତା ଭାବନା, ଶିଳ୍ପ, ସାହିତ୍ୟ ଯେଉଁଠି ଥିଲା ସେଇଠି ରହିଥିବ ଏହା ହୋଇନପାରେ । କାଳିଦାସଙ୍କ ଯୁଗର ଗତି ଯଦି ଘଣ୍ଟାକେ କୋଡ଼ିଏ ମାଇଲ ବୋଲି ଅଶ୍ୱପୃଷ୍ଠରେ ଧରାଯାଏ, ଆମ ଯୁଗର ଗତି ଘଣ୍ଟାକେ ବହୁ ସହସ୍ର ମାଇଲ୍ ରକେଟ୍‌ରେ । ତେଣୁ ଆମର ରଚି, ଦୃଷ୍ଟିକୋଣ, ମୂଲ୍ୟବୋଧ ଓ ସାହିତ୍ୟ ତାଙ୍କ ଯୁଗ ପରି ହେବ କିପରି ? କେବଳ ସେତିକି ନୁହେଁ, ଆଙ୍ଗିକରେ ମଧ୍ୟ ଶୈଳ୍ପିକ ପରିବର୍ତ୍ତନ ଏବଂ ରୂପାନ୍ତର ଘଟିବା ସ୍ୱଭାବିକ । ତାହା ଅତୀତର ଏକ ଐତିହାସିକ ପରିଣତି, ଠିକ୍ ଯେପରି ବିଜ୍ଞାନରେ ଘଟିଥାଏ । ନ୍ୟୁଟନ୍‌ଙ୍କୁ ଛାଡ଼ି ଦେଲେ ଆଇନଷ୍ଟାଇନ୍ ସମ୍ଭବ ହୋଇନଥାନ୍ତେ ।୮।

ଧୀମାନ ସ୍ରଷ୍ଟାଙ୍କୁ 'ଐତିହ୍ୟମୟ ସୃଷ୍ଟିଶୀଳତା' ପାଇଁ ଏଲିୟଟ ଆହ୍ୱାନ କଲାବେଳେ ସେ କଳାର ପ୍ରବହମାନତା ସଂଗେ ତାହାର ସାମୂହିକ ସ୍ଥିତିକୁ ରେଖାଂକିତ କରିଛନ୍ତି । ଅତୀତ ଓ ବର୍ତ୍ତମାନ ମଧ୍ୟରେ ପ୍ରତିକୂଳ ସଂପର୍କ ଅପେକ୍ଷା ପରିପୂରକ ସଂପର୍କ ହିଁ ବେଶୀ । ଏଲିୟଟଙ୍କର ଏକଥା ମାନିନେବାକୁ ଆଧୁନିକ ମନ ଦ୍ୱ୍ୟର୍ଥୁକ୍ତି କରେ ନାହିଁ । ମାତ୍ର ସେ ଯେତେବେଳେ କହନ୍ତି ଯେ ସେ ରାଜନୀତିରେ ଜଣେରାଜତନ୍ତ୍ରବାଦୀ (ମୋନାରକିଷ୍ଟ) ଧର୍ମରେ ଜଣେ ରୋମାନ୍ କ୍ୟାଥଲିକ୍ ଏବଂ ସାହିତ୍ୟରେ ଜଣେ କ୍ଲାସିକ୍ ପନ୍ଥୀ ସେତେବେଳେ ଆଧୁନିକତା ତାଙ୍କୁ ଫୋପାଡ଼ି ଦିଏ । କାରଣ ଇତିହାସର ପଛୁଆ ସୁଅରେ ଯିବା ଆଧୁନିକତାର ଧର୍ମ ହୋଇନପାରେ । ଜୀବନ ତାହା କରାଇ ଦିଏ ନାହଁ । ମୋଟ ଉପରେ ପରମ୍ପରା ସଂଗେ ଆଧୁନିକତା ସୃଜନଶୀଳ ଜୈବିକ ସଂପର୍କ ହିଁ ଏକମାତ୍ର ସାର୍ଥକ ସଂପର୍କ । ତାହା ନହେଲେପରମ୍ପରା ଅନୁଶୀଳନ ସାମାଜିକ ସଂଗତି (Social Relevance) ହରାଇ ଏକ ଅନ୍ଧ ଅନୁକୃତିରେ ପର୍ଯ୍ୟବସିତ ହେବ । I.A. Richards କାବ୍ୟିକ ମନସ୍ତତ୍ତ୍ୱ ଧାରାରେ ଆଧୁନିକ କବିତାର ବିଚାରବିମର୍ଶ କରି ଆଦିମ ଯାଦୁ ବିଶ୍ୱାସ ସ୍ଥାନ ବିଜ୍ଞାନ ଦ୍ୱାରାପୂରଣ କରିଛନ୍ତି ।୯।

ପୁରାତନ ସାହିତ୍ୟ ସାମ୍ପ୍ରତିକ ସାହିତ୍ୟ ତଥା ଆଧୁନିକ ସାହିତ୍ୟ ମଧ୍ୟରେ ତଫାତ୍ ବା ସଂପର୍କ କ'ଣ Irving Howe ଏ ସଂପର୍କରେ ସୂଚନା ଦେଇ କହିଛନ୍ତି :"We call it modern and distinguish it from contemporary for whether the contemporary refers to time, the modern refers to sensibility and style,and where the contemporary is a term of neutral reference the modern a term of critical placement and judgement". ।୧୦।

ଆଧୁନିକତା ଏକ କାଳବାଚୀ ଶବ୍ଦ ନୁହେଁ । ଏହା ଏକ ତତ୍ତ୍ୱ, ଏକ ଦର୍ଶନ, ଜୀବନର ଏକ ଆଭିମୁଖ୍ୟ । ଆଧୁନିକତା ତା'ର ନିଜସ୍ୱ ଶୈଳୀକୁପ୍ରତିଷ୍ଠା ଦିଏ ନାହିଁ; ଯଦି ଦିଏ ତାହା ହେଲେ ଆଧୁନିକତାର ମୃତ୍ୟୁ ଘଟିଯାଏବୋଲି Irving Howe କହନ୍ତି ତାଙ୍କ ମତରେ : Modernism doesnot establish a prevalent style of its own; if it does it denies itself, thereby ceasing to be modern.।୧୧।

ଆଧୁନିକତା ସଂପର୍କରେ ଆଲ୍‌ଭାରେଜ ପ୍ରକାଶ କରିଛନ୍ତି – Modernism in short and synonymous with internationalism ।୧୨।

ଡ. ହୋ'ଙ୍କ ମତରେ ସାଂପ୍ରତିକତା ସମୟ ସୀମାରେ ସୂଚିତ ହୁଏ, ଏକ ଉଦାସ ଓ କ୍ଲୀବ ପ୍ରସଂଗ କିନ୍ତୁ ଆଧୁନିକତା ସମୟୋତ୍ତର, ସମୀକ୍ଷାତ୍ମକ ତଥା ବିଚାର ବିମର୍ଶର ହେତୁ । ପୋପ୍‌ଙ୍କ କଥାରେ କହିଲେ ଆଧୁନିକତାକୁ ସାମ୍ପ୍ରତିକତା ସଂଗେ ଯୋଡ଼ି, ସମୟ ସୀମାରେ ରଖି ଆମେ ତା'ର ଚିରନ୍ତନ ଆବେଦନକୁ ସଂକୁଚିତ କରିଥାଉ । ସବୁ ପ୍ରାଚୀନ ସାହିତ୍ୟ ଆଧୁନିକ ନୁହେଁ, କି ସବୁ ସାମ୍ପ୍ରତିକ ସାହିତ୍ୟକୁ ଆଧୁନିକ କହିହେବ ନାହିଁ ।୧୩।

.............................

ସାହିତ୍ୟର ପ୍ରତ୍ୟେକ ଧାରାରେ, ଏପରି ପରିବର୍ତ୍ତନ, ବିବର୍ତ୍ତନ ଉତ୍ତରଣ ଆଦି ସଂଘଟିତ ହୋଇଥାଏ । ସେଇ ପରିବର୍ତ୍ତନ ଘଟେ କେବଳ ସମୟ ବା ଐତିହାସିକ କାରଣକୁ ନେଇ ନୁହେଁ । ଏଇ ସମସ୍ୟା ମୂଳରେ ବହୁବିଧ କାରଣ ବିଦ୍ୟମାନ । William K. Williamଙ୍କ ମତରେ Literary problem occurs not just because history produces them, but because literature is a thing of such and such a sort, showing such and such a relation to the rest of human experience.True Laguages and Culture,times and places, differ widely.।୧୪।

ଜୀବନ ପରି ସାହିତ୍ୟରେ ଯେଉଁ ପରିବର୍ତ୍ତନର ଦୂଆ ଉଠେ, ତାହା ହୁଏତ ଅନେକ ସମୟରେ ସଂପୃକ୍ତ ସମାଜ, ପାଠକ ଓ ସାହିତ୍ୟିକ ବର୍ଗଙ୍କୁ ହତ ଚକିତ କରିପକାଏ, ତାହା ହୋଇପାରେ ଆମ ସମୟରେ ଖୁବ୍ ଖାପଛଡା ବା ଅସଂହତ ବୋଧ । ଏହି ପରିବର୍ତ୍ତନକୁ ଆମେ ଉଦ୍ଭଟ ବା Absurd ବୋଲି କହିଥିଲୁ ଏବଂ ତାହା ଅନେକ ସ୍ଥଳରେ ଗ୍ରହଣୀୟ ହୋଇପାରି ନଥିଲା । ଅନେକାଂଶରେ ଗତାନୁଗତିକ ବୁନିୟାଦୀରୁ ଖୁବ୍ ବେଶି ଦୂରେଇ ଯାଇଥିବା କାରଣରୁ । ତେଣୁ ଏଇ ପରିବର୍ତ୍ତିତ ସାହିତ୍ୟକୁ ହୁଏତ ସାଧାରଣ ଭାବେ 'ନୂତନ ସାହିତ୍ୟ' ବା 'ଆଧୁନିକ ସାହିତ୍ୟ' (Modern Literature) ବୋଲି କୁହାଯାଇଥାଏ । ଯଦିଓ ସାମ୍ପ୍ରତିକ କଥାଟା ସେତେବେଳେ ମନ ଭିତରେ ପଶିନଥାଏ । ସୁତରାଂ ଆଧୁନିକ (ମଡର୍ଣ୍ଣ) କଥାଟା ଏମିତି ଗୋଳମାଳିଆବା ଦ୍ୱନ୍ଦ୍ୱ ମଧ୍ୟରେ ରହିଯାଏ । ତେଣୁ ସାହିତ୍ୟିକ ଧାରାରେ ଆଧୁନିକତାର ସଂଜ୍ଞାଦି ନିରୂପଣ କରିବାର ଆବଶ୍ୟକତା ରହିଛି ।

ଆଧୁନିକ ନିଶ୍ଚିତ ଭାବେ ଏକ ଜଟିଳ କଥା । କିଏ କେମିତି ତାକୁ ନଗ୍ନତା, ଅନାବୃତ୍ତ, ଉନ୍ମୁକ୍ତ ବା ଉଦ୍ଭଟ ବୋଲି କହନ୍ତି । ସେମାନଙ୍କ ଦୃଷ୍ଟିରେ ଆଧୁନିକତା 'Paradoxically untraditional tradition'।୧୫।

ଯାହାକି ଅଦ୍ଭୁତ ଭାବେ କେତେକ ଐତିହାସିକ ଧାରାରୁ ବିଚ୍ୟୁତ Either liberation from inherited pattern or another extreme, deprivation and disinheritance'।୧୬। ହୋଇପାରେ ଆଧୁନିକତାର ଏହା ଏକ ନେତିବାଦୀ ଅଭିବ୍ୟକ୍ତି ।

ଜନଡ୍ରାଇଡେନ ପ୍ରମୁଖ ନିଓକ୍ଲାସିକ୍ ସମାଲୋଚକମାନଙ୍କ ଦୃଷ୍ଟିରେ ଆଧୁନିକତାର ଅର୍ଥ ଶ୍ରେଷ୍ଠ ବା ଉତ୍କୃଷ୍ଟ । ପୁଣି କେତେବେଳେ ଆଧୁନିକତା ହୁଏତ ପ୍ରାଚୀନତାର ବିରୋଧୀ ଶବ୍ଦ ରୂପେ ଦ୍ୱନ୍ଦ୍ୱ ଘଟାଇଥାଏ । ପୁରାତନ ପନ୍ଥୀମାନେ ଏହାକୁ A break in the past, a protest against past ବୋଲି ଆକ୍ଷେପ କଲାବେଳେ ଆଉ କେହି କେହି ଉଭୟର ସମନ୍ୱୟ ଟାଣି କହନ୍ତି ଅତୀତର ଜରାୟୁ ମଧ୍ୟରୁ ଆଧୁନିକତାର ଶୁଭ ଶଙ୍ଖ ବାଜି ଉଠି ଦୁନିଆର ଆଲୋକ ଦେଖିଥିଲା । ହାରେଲ୍ଡ ରୋଜେନବର୍ଗଙ୍କ ମତରେ : The Past is irrelevent because the present sterile,meaningless and mechanical.।୧୭।

ଠିକ୍ ସେପରି ଚଡ଼ା ଗଳାରେ ଆଲାନ୍‌ରିନସ ବର୍ଗ ଆଧୁନିକତାକୁ ଅତୀତର ବିରୁଦ୍ଧାତ୍ମକ ଶବ୍ଦ ଭାବରେ ଗ୍ରହଣ କରିଛନ୍ତି । ଅତୀତ ବା ଇତିହାସର କିଛି ଯଥାର୍ଥତା ନାହିଁବୋଲି ସେ କହନ୍ତି : History is bunk and the past is irrelevent ସମାଲୋଚକ ହବର୍ଟରିଡଙ୍କ ମତରେ ଏକ ପ୍ରତିବାଦ ଓ ଚାଲେଞ୍ଜରୁ ହିଁ ଆଧୁନିକତା ଜନ୍ମ ନେଇଛି । ତାଙ୍କର ଭାଷାରେ କହିଲେ An art of protest, protest against a barbourous Civilization, that is indifferent to all spiritual and aesthetic values.।୧୮। ଆରଭିଂ ହୋ ଆଧୁନିକତାକୁ ଏକ ବିପ୍ଳବ ବୋଲି କହି କର୍ତ୍ତୃପକ୍ଷଙ୍କୁ ମୁକାବିଲା କରିବା ନିମନ୍ତେ ଏକ ଜଟିଳ ସର୍ଜନାତ୍ମକ ଚେତନା ବୋଲି ଅଭିହିତ କରିଛନ୍ତି । ବଦଲେୟାରଙ୍କ ଦୃଷ୍ଟି କୋଣ ଏଦିଗରେସ୍ୱତନ୍ତ୍ର । ତାଙ୍କର ପରିଭାଷାରେ କହିଲେ Modernism is that which is ephemeral, fugitive, contegent upon the occasion.।୧୯।

ପୁନଶ୍ଚ ସେ କହନ୍ତି ଏହାର ସ୍ୱରୂପ ଦ୍ୱିବିଧ । ଏହାର ଅର୍ଦ୍ଧାଂଶ କଳା ଏବଂଅପରାର୍ଦ୍ଧାଂଶ ଚିରନ୍ତନ ଯାହାକୁ ମୁକାବିଲାକରିହେବ ନାହିଁ । It is half of art whose other half is eternal and unchangeable ।୨୦।

ସେହିପରି ହେରି ଲଭି ଆଧୁନିକତା ସଂଗେ ମାନବିକତାର ଆରୋପ କରିଛନ୍ତି । ତାଙ୍କ ମତରେ ଆଧୁନିକତା 'A child of humanism and enlightenment'. କବି ଫେନ ସ୍ପେଣ୍ଡର କହନ୍ତି ଆଧୁନିକତା Consisting the part and including this confrontation, within itself as the part of the single total experience or vision of the whole ।୨୧।

ଆଧୁନିକତାରେ ସାମଗ୍ରିକ ଦୃଷ୍ଟିଭଙ୍ଗୀ ବା ଅନୁଭୂତି ସମୂହର ଆଂଶିକ ମୁକାବିଲାସଂଘଟିତ ହୋଇଥାଏ । ଅନ୍ୟ ପ୍ରସଙ୍ଗରେ କହିଲେ ଆଧୁନିକତାରଉଭୟ ସାମଗ୍ରିକ ଓ ଖଣ୍ଡିତ ଅନୁଭୂତିର ସଂଘର୍ଷ ପ୍ରକଟିତ ହୋଇଥାଏ । ତେବେ ଆଧୁନିକତାର ଏକ ଅସଂହତ ଓ ଅସ୍ପଷ୍ଟ ଶୂନ୍ୟତା ଅନେକ ସମୀକ୍ଷକଙ୍କୁ ବିବ୍ରତ କରିଛି । ତା' ସତ୍ତ୍ୱେ ଗୋଏଥ ରୋନାନ୍, ଅରନଲ ଓ ଷ୍ଟେଡବିଉ ପ୍ରମୁଖ ଆଧୁନିକତାର ସ୍ୱରୂପ ନିର୍ଦ୍ଧାରଣ କରିକହନ୍ତି : ଏହାଏକ ଶୁଦ୍ଧ ଉଦ୍ଦୀପନା "A positive an critical spirit, the spirit that refuses to take things or authority"।୨୨।

ସିରିଲ କନୋଲି (Cyril Connolly) ଆଧୁନିକତାକୁ ଏକ ଆନ୍ଦୋଳନ ଭାବରେ ଗ୍ରହଣ କରନ୍ତି । ହେନେରୀ ଜେମ୍‌ସ ଏକାକୀତ୍ୱ (Loneliness)କୁ ଲେଖାରେ ପ୍ରକାଶ କରିବାପାଇଁ ଉପଦେଶ ଛଳରେ ଲୋଗାନ୍ ପଲସର ସ୍ମିଥ୍‌ଙ୍କୁ କହିବା ପରେ ପରେ ଆଧୁନିକ ଯୁଗ ଓ ଆଧୁନିକ ସାହିତ୍ୟ ଆରମ୍ଭ ହୋଇଥିଲା ବୋଲି କୁହାଯାଏ । ଏଥିରେ ଦୁଇଟି ମୁଖ୍ୟ ପ୍ରସଙ୍ଗ ହେଉଛି ସଂପର୍କ (Relationship) ଓ ବିଚ୍ଛିନ୍ନତା (Isolation) । ଏହାର ପରିଧି ଭିତରେ ଉପଲବ୍ଧି ହୁଏ ନୈତିକ ଶୃଙ୍ଖଳାର ମୃତ୍ୟୁ ବା ଅବକ୍ଷୟ (Decayed Moral order) ।୨୩।

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମଣିଷର ଚିନ୍ତାରାଜ୍ୟରେ ଦେଖାଦେଲା ଗଭୀର ଆଲୋଡନ । ପାରମ୍ପରିକ ମୂଲ୍ୟବୋଧ ଓ ନୈତିକତାର ଅବକ୍ଷୟ ଘଟି ମଣିଷ କ୍ରମେ ବାସ୍ତବ ଅଭିମୁଖୀ ହୋଇଛି । ଗୋଟିଏ ସମୂହ ଜୀବନ ଧାରାରୁ ମଣିଷ କ୍ରମଶଃ ଗତି କରିଛି ଏକାକୀ ଜୀବନକୁ । ଏହି ଜୀବନ ଧାରାକୁ କୁହାଯାଉଛି ଆଧୁନିକତା । ଯେଉଁ ସାହିତ୍ୟରେ ଉକ୍ତ ଚିନ୍ତନ ପ୍ରତିଫଳିତ, ଯେଉଁଠି ବିଚ୍ଛିନ୍ନତା (Alienation) ଅଜ୍ଞାତ (Darkness) ଶୀତଳତା (Bleakness) ଥାଏ ତାହାକୁ ଆଧୁନିକ କୁହାଗଲା । ଏହା ହେଲା ମୌଳିକ ଭାବନା ପ୍ରଚୋଦକ (Radical) ପରୀକ୍ଷା ମୂଳକ (Experimental) ଯାନ୍ତ୍ରିକ (Technical) ଓ ସୌନ୍ଦର୍ଯ୍ୟାତ୍ମକ (Aesthetic) । ରୋମାଣ୍ଟିସିଜିମ୍ ମଧ୍ୟରୁ ଏହା କ୍ରମଶଃ ସୃଷ୍ଟି ହୋଇ ସଂକଟ (Crisis) ମଧ୍ୟକୁ ଗତି କରୁଛି । ତେଣୁ ଏଥିରେ କୌଣସି ନିର୍ଦ୍ଦିଷ୍ଟ ଶୃଙ୍ଖଳା ବିଧାନ ବା ସଂରଚନାର ଭିତ୍ତି ନାହିଁ । ଏହା ହିସେନବର୍ଗଙ୍କ (Heisenberg) ଅନିଶ୍ଚିତ ମୌଳିକ ତଥ୍ୟ (Uncertainty Principle)ର ନିକଟବର୍ତ୍ତୀ । ବିଜ୍ଞାନର ଅଗ୍ରଗତି, ଶିଳ୍ପ ବିପ୍ଳବ ଓ ଔଦ୍ୟୋଗିକ ବିକାଶ ଫଳରେ ଗ୍ରାମ କ୍ରମେ ଧ୍ୱଂସ ହେବାକୁ ଲାଗିଲା ଓ ତାହା ଉପରେ ନଗର ସଂସ୍କୃତି ନୂଆକରି ପ୍ରତଷ୍ଠା ଲାଭ କଲା । ଲୋକମାନଙ୍କ ମଧ୍ୟରେ ସଂପର୍କ ସେତୁ ଭାଙ୍ଗିବାକୁ ଲାଗିଲା ।

ଊନବିଂଶ ଶତାବ୍ଦୀର ଶେଷ ଭାଗରୁ କ୍ରମଶଃ ପୁରାତନ ପୃଥିବୀ ଉପରେ ନୂତନ ପୃଥିବୀର ହେଲା ପ୍ରତିଷ୍ଠା । ଏହିନୂତନ ପୃଥିବୀ ପୁରାତନ ପୃଥିବୀକୁ ଗୋଟିଏ ସଂଶୟ ଦୃଷ୍ଟିରେ ଦେଖିଲା । ଏପରିକି ପୁରାତନ ପୃଥିବୀକୁ ଅବଜ୍ଞା କରିତା'ର ସମାଧି ଉପରେ ନୂତନ ପୃଥିବୀ ଆପଣାର ପ୍ରଭାବ ବିସ୍ତାର କଲା । ଫ୍ରାଙ୍କ୍ କରମୋଡ୍ (Frank Kermode) କହନ୍ତି ୧୯୦୭ ରୁ ୧୯୨୫ ମସିହା ମଧ୍ୟରେ ଆଧୁନିକତା ଆପଣାର କାୟା ବିସ୍ତାରକରିଛି । ଗ୍ରାହାମ ହଗ୍ କିନ୍ତୁ କହନ୍ତି ୧୯୧୦ରୁ ପ୍ରଥମ ବିଶ୍ୱ ଯୁଦ୍ଧର ଆରମ୍ଭ (୧୯୧୪) ମଧ୍ୟରେ ଆଧୁନିକତା ସୃଷ୍ଟି ହୋଇଛି । ଭରଜିନିଆ ଉଲ୍‌ଫ (Veriginia Woolf)ଙ୍କ ମତରେ ୧୯୧୦ ମସିହା ଡ଼ିସେମ୍ବର ମାସରେ ଇଂଲଣ୍ଡର ରାଜା ଏଡ୍‌ୱାର୍ଡଙ୍କ ମୃତ୍ୟୁ ପରେ ପୁରାତନ ବିଶ୍ୱର ଶେଷ ହୋଇଗଲା ଓ ଆଧୁନିକତାବାଦର ହେଲା ଉନ୍ମେଷ । ଏହି ସମୟରୁ ହିଁ ମନୁଷ୍ୟ ସହିତ ମନୁଷ୍ୟର ସକଳ ସଂପର୍କରେ ଦେଖାଦେଲା ପରିବର୍ତ୍ତନ ।୨୪।

ମାଲିକ ଓ ଭୃତ୍ୟ, ସ୍ୱାମୀ ଓ ସ୍ତ୍ରୀ, ପିତାମାତା ଓ ସନ୍ତାନ ସନ୍ତତି ମାନଙ୍କ ମଧ୍ୟରେ ସଂପର୍କ ବଦଳିବା ହେତୁ, ଧର୍ମ, ଚରିତ୍ର, ରାଜନୀତି ଓ ସାହିତ୍ୟ ମଧ୍ୟ ବଦଳିଗଲା । ଡ଼ି.ଏଚ୍. ଲରେନ୍‌ସ କିନ୍ତୁ କହନ୍ତି ଯେ 'It was in 1915 the old world ended' କଙ୍ଗାରୁ ଉପନ୍ୟାସରେ ସେ ଏହି କଥା ଉଲ୍ଲେଖ କଲେ; ରିଚାର୍ଡ ଏଲମାନ (Richard Ellman)ଙ୍କ ମତରେ ୧୯୦୦ ମସିହାରୁ ହିଁ ମଣିଷର ଚରିତ୍ରରେ ପରିବର୍ତ୍ତନ ଦେଖାଦେଲା ଓ ଆଧୁନିକ ପ୍ରକାଶ ପାଇଲା । ହାରି ଲେଭିନ (Harry Levin) ୧୯୨୨ ମସିହାକୁ

ଗୁରୁତ୍ୱଦେଇ ଏହି ସମୟରୁ ଆଧୁନିକତା ସୃଷ୍ଟି ହେଲାବୋଲି କହନ୍ତି । ଏହି ମସିହାରେ ହିଁ ଜେମ୍ସ ଜଏସଙ୍କର Ulysses ଟି. ଏସ. ଇଲିୟଟ୍‌ଙ୍କର 'The Wasteland' ରିଲ୍‌କେଙ୍କର Duineser Hegien ଓ Sonnets tp Orpheus ବ୍ରେସେଟଙ୍କର ନାଟକ Baal, ଲରେନ୍‌ସଙ୍କର ଉପନ୍ୟାସ 'Aron's Rod ଭର୍ଜିନିଆ ଉଲଫ୍‌ଙ୍କର ଉପନ୍ୟାସ Jacob's Room, ରବର୍ଟ ପ୍ରାଉଷ୍ଟଙ୍କର Sodom and Comossah ଓ ନିଲଙ୍କର Anna christie ଇତ୍ୟାଦି ବିଶ୍ୱବିଶ୍ରୁତ ପୁସ୍ତକ ଗୁଡ଼ିକ ପ୍ରକାଶ ପାଇ ବିଶ୍ୱ ସାହିତ୍ୟର ଧରା ଓ ଧାରାକୁ ସଂପୂର୍ଣ୍ଣ ଭାବରେ ବଦଳାଇ ଦେଲା । ଅନ୍ୟ କେତେକ ସମାଲୋଚକ ମଧ୍ୟ ୧୮୭୦, ୧୮୮୦ ଓ ୧୮୯୦ ମସିହା ପରେ ଆଧୁନିକତା ଆସିଥିଲା ବୋଲି କହିଥିଲା ବେଳେ ଆଉ କେହି କେହି ୧୯୨୪ ଓ ୧୯୩୦ ମସିହାରୁ ଆଧୁନିକତା ଉନ୍ମେଷ ଘଟିଥିଲା ବୋଲି କହିଥାନ୍ତି । ଜର୍ମାନ ସାହିତ୍ୟରେ ୧୮୯୦ରୁ ଆଧୁନିକତାର ଆଗମନ ଘଟିଥିଲା । Amo Holz ପ୍ରକାଶ କରିଥିଲେ Let the poet be modern from head to toe. ।୯

ଆଧୁନିକତାର ଆରମ୍ଭ ବିଂଶ ଶତାବ୍ଦୀର ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ହୋଇଥିଲେ ମଧ୍ୟ ତାହାର ମୂଳଦୂଆ ପଡ଼ିଥିଲା ବଦଲେୟାର, ଫ୍ଲବର୍ଟ, ନିତ୍‌ସେ, ଇବ୍‌ସନ,କିର୍କେଗାର୍ଡ ପ୍ରମୁଖଙ୍କ କୃତି ମଧ୍ୟରେ । ୧୯୨୨ ମସିହାରେ ହିଁ ଯୁଦ୍ଧ ପରବର୍ତ୍ତୀ ବିଶ୍ୱ ମଣିଷର ହତାଶା, ନୈରାଶ୍ୟ, ବିଚ୍ଛିନ୍ନତା, ଏକାକୀତ୍ୱ, ମୂଲ୍ୟବୋଧ ହୀନତା ଓ ସର୍ବୋପରି ଏକ ଆଧ୍ୟାତ୍ମିକ ଅନ୍ୱେଷା ଇଲିୟଟ୍‌ଙ୍କ ଲେଖାମାନଙ୍କରେ ଯେପରି ସ୍ପଷ୍ଟ ଭାବରେ ରୂପନେଲା, ସେପରି ଅନ୍ୟାନ୍ୟ ଲେଖକଙ୍କର ଲେଖାମାନଙ୍କରେ ହେଲା ନାହିଁ । ତେଣୁ ଇଲିୟଟଙ୍କ କବିତାର ପ୍ରଭାବ ହୋଇଗଲା ବିଶ୍ୱବ୍ୟାପୀ । ତାଙ୍କର 'ଜେରୋନ୍‌ସନ' କବିତାରେ ସେ ପ୍ରକାଶ କରିଛନ୍ତି : -

Here I'm an old man in a dry month

x x x waiting for rain ।୨୫।

ଏ ବର୍ଷା ସାଧାରଣ ବର୍ଷା ନୁହେଁ; ଏକ ଆଧ୍ୟାତ୍ମିକ ବର୍ଷା । ଏହି ବର୍ଷା ଫଳରେ ଶୁଷ୍କ ମନରେ ଭଗବତ ଦର୍ଶନ ହୋଇ ପାରିବ ।

ମୂଲ୍ୟବୋଧର ଅନ୍ୱେଷଣ ନିମନ୍ତେ ଉତ୍କଣ୍ଠା ଆଲଡସ ହକ୍‌ସଲେ ଓ ଜେମ୍ସ ଜୟେସଙ୍କ ମଧ୍ୟରେ ସୃଷ୍ଟି ହୋଇଛି ହୁଏତ ଇଲିୟଟ ପୃଥିବୀର ସେ ବିଶୃଙ୍ଖଳ ପରିବେଶ ଏତେ ମ୍ରିୟମାଣ ହୋଇ ମୂଲ୍ୟବୋଧକୁ ଜାବୋଡ଼ି ଧରିବାର ବ୍ୟାକୁଳତାକୁ ଗୁରୁତ୍ୱ ଦେଇ ନାହାନ୍ତି, ତଥାପି West Landରେ ସେଇ ବିଶୃଙ୍ଖଳତାର ନିଦାନ ଖୋଜା ଯାଇଛି ।

କିନ୍ତୁ ଡବ୍ଲୁ ବି ୟେଟ୍‌ସଙ୍କ 'Second Coming'ରେ ସେଇ ବିପର୍ଯ୍ୟୟର ଚରମ ବର୍ଣ୍ଣନା ଠିକ୍ ଭଗବତ୍ ଗୀତାର ଶ୍ଳୋକ ପରି । କବି ଯଥାର୍ଥରେ ପ୍ରକାଶ କରିଛନ୍ତି :

Things fall apart; the centre cannot hold

Mere anarchy is loosed upon the world.

..............................

The blood dimmed tide is loosed, and every
The ceremoney of innocence is drowned ।୨୬।

ଏପରି ଏକ ବିଶୃଙ୍ଖଳ ପୃଥିବୀରେ ତଥାପି W.B. Yearts ଦେଖିଛନ୍ତି ଏକ ସଂଭାବନାର ସଂକେତ; ତେଣୁ ଗାଇଛନ୍ତି ନିଶ୍ଚିତ Second Coming is at hand, revelations is at hand ଯାହାର ପ୍ରାକ୍ ପ୍ରସ୍ତୁତି କବିତାର ଶେଷ ପଂକ୍ତିରେ :- Slouches towards Bethlehem to be born ?

ଆଧୁନିକତାର ସାହାନାଇ ସବୁ ଯୁଗରେ ସାହିତ୍ୟିକମାନଙ୍କ ମଧ୍ୟରେ ଆଲୋଡନ ସୃଷ୍ଟି କରିଛି । କାହା ନଜରରେ ଏହା ନୂତନତାର ତୁରନ୍ତ ପ୍ରତିବିମ୍ବ ଆଉ କାହା ନଜରରେ ବିପ୍ଳବ, ସଂଘର୍ଷ ଓ ଶାଶ୍ୱତର ମନ୍ତ୍ର ଉଚ୍ଚାରଣ କରେ । କେହି କେହି କହନ୍ତି ଆଧୁନିକତା କାଳିସୀ ଲାଗିବା ପରି ତରୁଣମାନଙ୍କୁ ରୋଷ ତୁଷ୍ଟ କରି କ୍ଷମତାର ମସନନ୍ଦ ଚଳାଇବାରେ ଏକ ଆୟୁଧ । ଆଉ କିଏ କହନ୍ତି ତାହା ମାନବବାଦର ପ୍ରତିଭୂ ଓ ଜ୍ଞାନ ଦୀପ୍ତିରେ ଭାସ୍ୱର, ବହୁରୂପା କଳ୍ପନାର ଇନ୍ଦ୍ରଜାଲରେ ଛନ୍ଦାୟିତ ସୁନେଲି ସ୍ୱପ୍ନ ତ ପୁଣି ବହୁ ଦ୍ୱନ୍ଦ୍ୱ ଓ ସଂଘର୍ଷରେ ବିତର୍କିତ ବସ୍ତୁନିଷ୍ଠ ଆଧାର । କିନ୍ତୁ ତାକୁ ସମୟ ସୀମାରେଖାରେ ଛନ୍ଦି ଦେବା ବେଳେ ଅନ୍ୟ କିଏ କହନ୍ତି ତାହା ସମୟୋତ୍ତର ଚମତ୍କାର, ଶ୍ରେଷ୍ଠ ଓ ଶାଶ୍ୱତ । ଏହା ଅସ୍ପଷ୍ଟତା ଓ ଅବ୍ୟକ୍ତ ମଧ୍ୟରେ ବିଭ୍ରାନ୍ତି ଜନ୍ମାଏ । ତେବେ ଆକୃଷ୍ଟ କରେ କବି ଓ କଳାକାରଙ୍କୁ, ତାଙ୍କୁ ଆହୁରି ରହସ୍ୟାଚ୍ଛନ୍ନ ଆହୁରି ଜଟିଳ କରି ଆଙ୍କିବାକୁ ।

ବିଶ୍ୱର କୌଣସି ସାହିତ୍ୟ ସିଧା-ସଳଖ ଏକ ବଳିଷ୍ଠ ସାହିତ୍ୟରେ ବା ଆଧୁନିକ ରୂପରେଖରେ ପରିଣତ ହୋଇନାହିଁ । ଯୁଗ ଯୁଗର ସଞ୍ଚିତ ଶକ୍ତି ନେଇ ସେ କ୍ରମବର୍ଦ୍ଧନଶୀଳ ଗୋଟିଏ କ୍ଷୁଦ୍ର ବୀଜ ରୋପଣରେ ତାହା ଯେପରି କ୍ରମଶଃ ଅଙ୍କୁରରୁ କ୍ରମବର୍ଦ୍ଧନଶୀଳ ହୋଇଉଠିଛି ଏକ ବୃହତ୍ ବୃକ୍ଷରେ ପରିଣତ ହୁଏ, ଏବଂ ଶେଷରେ ଛାୟାଦାନକ୍ଷମ ହୋଇପାରେ; ଠିକ୍ ସେହିପରି ସାହିତ୍ୟ ମଧ୍ୟ ବହୁ ପରିବର୍ତ୍ତନ, ଆଲୋଡନ ଓ ବିପ୍ଳବର ସମ୍ମୁଖୀନ ହୋଇ ତନ୍ମଧ୍ୟରେ ଗତିକରି ଆଜି ଏକ ଉନ୍ନତ ସାହିତ୍ୟରେ ପରିଣତ ହୋଇଛି । ପୁରାତନ ଶରୀରରେ ନୂତନ ପ୍ରାଣର ସଞ୍ଚାର ହୁଏ ସଂଘର୍ଷ ମାଧ୍ୟମରେ । ଏମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଚିରନ୍ତନ ଓ ସ୍ୱାଭାବିକ ଅଟେ । ନୂତନ ଦ୍ୱାରା ପୁରାତନ ଯେପରି ଉପହସିତ ହୁଏ; ପୁରାତନ ମଧ୍ୟ ନୂତନକୁ ଭୟ ଓ ସନ୍ଦେହ ମିଶା ଚକ୍ଷୁରେ ଦେଖେ । ନୂତନ ଯେ ପୁରାତନର ମାର୍ଜିତ ରୂପ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏହିପରି ଯେ କୌଣସି ପ୍ରକାରେ ସାହିତ୍ୟ ସୃଷ୍ଟି ଯୁଗରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ନୂତନତା ପୁରାତନର ଶବ ଉପରେ ପଦକ୍ଷେପ କରି ଆଗେଇ ଆସିଛି ଏବଂ ଜନସାଧାରଣ କାଳକ୍ରମେ ତାହାର ସଂସ୍ପର୍ଶ ତଥା ସଂପର୍କରେ ଆସି ତାହାକୁ ଗ୍ରହଣ କରି ନେଇଛନ୍ତି ।୨୭।

## (ଖ) ଓଡ଼ିଆ କବିତାରେ ଆଧୁନିକତା

ଆଧୁନିକ ଓଡ଼ିଆ ସାହିତ୍ୟ 'ଆଧୁନିକ' ଅର୍ଥରେ ଯେତେ ଯୁକ୍ତି ଯୁକ୍ତ 'ରାଧାନାଥ ସାହିତ୍ୟ' ନାମରେ ସେତେ ନୁହେଁ। କାରଣ ଆଜି ଯାହା ନୂତନ ଆସନ୍ତାକାଲି ତାହା ପୁରାତନ। ସେ ଦୃଷ୍ଟିରୁ ରାଧାନାଥ ସାହିତ୍ୟ ଉନବିଂଶ ଶତାବ୍ଦୀର ଶେଷ ଦୁଇ ଦଶକ ଓ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ନିଶ୍ଚୟ ଆଧୁନିକ ଥିଲା। କିନ୍ତୁ ବର୍ତ୍ତମାନ ତାହାଙ୍କୁ ଆଧୁନିକ ଅର୍ଥରେ ପ୍ରୟୋଗ କରିବା ସମୀଚୀନ ନୁହେଁ। ତଥାପି ଗଡ଼ଡାଳିକା ପ୍ରବାହ ନ୍ୟାୟରେ ସମସ୍ତେ ଆଧୁନିକ ସାହିତ୍ୟ କହିଲେ ରାଧାନାଥ ଯୁଗକୁ ହିଁ ବୁଝିଥାନ୍ତି ଏବଂ ସାଂପ୍ରତିକ ସାହିତ୍ୟକୁ 'ଅତ୍ୟାଧୁନିକ' ନାମରେ ନାମିତ କରନ୍ତି। ଏସବୁ ସତ୍ତ୍ୱେ ଗୋଟିଏ ଅର୍ଥରେ ରାଧାନାଥ ସାହିତ୍ୟ ଚିରା ଆଧୁନିକ - କାରଣ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ ପରମ୍ପରା ଠାରୁ ସଂପୂର୍ଣ୍ଣ ଏକ ନୂତନ ସାହିତ୍ୟ ସୃଷ୍ଟି ହେଲା ଉନବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ, ତାହାହିଁ ଆଧୁନିକ ସାହିତ୍ୟ ବା ଅନ୍ୟ ଅର୍ଥରେ ରାଧାନାଥ ସାହିତ୍ୟ। ଦିନେ ଯେଉଁ ସମଗ୍ର ଭାରତୀୟ ଚିନ୍ତାଧାରା, ଦର୍ଶନବିଜ୍ଞାନ ଓ ସଂସ୍କୃତି ଓଡ଼ିଆ ସାହିତ୍ୟକୁ ରସାଣିତ, ପ୍ଲାବିତ, ତଥା ରୁଚି-ସମ୍ପନ୍ନ ଓ ସମ୍ଭ୍ରାନ୍ତ କରି ରଖିଥିଲା, ହଠାତ୍ ୧୮୦୩ ସାଲ ଡ଼ିସେମ୍ବର ୧୭ ତାରିଖରେ ଇଂରେଜମାନଙ୍କ ଓଡ଼ିଶା ଆଗମନ ତାହାର ଦ୍ୱାରରେ ଏପରି ଧକ୍କା ଦେଲା ଯାହା ଫଳରେ ଓଡ଼ିଶାର ଭାଗ୍ୟ ସଂଗେ ସଂଗେ ସାହିତ୍ୟିକ ଗତି ଧାରା କ୍ରମଶଃ ପରିବର୍ତ୍ତନ ହେବାକୁ ଲାଗିଲା।୨୮।

ସର୍ବଗ୍ରାସୀ ୟୁରୋପୀୟ ସାହିତ୍ୟ, ସଂସ୍କୃତି ଓ ଧର୍ମର ପ୍ରସାର ଫଳରେ ଏହା ନିଜସ୍ୱ ଓ ସମ୍ଭ୍ରାନ୍ତ ଶୁଚିତା ହଟାଇ ବସିଲା ଏବଂ ଅନ୍ୟ ଦିଗରେ ନବଜନ୍ମ ଲାଭ ନକରି ନୂତନ ରୁଚି ଓ ରୂପରେ ପୁଷ୍ଟ ହୋଇ ନବକଳେବରରେ ଅଭିଷିକ୍ତ ହେଲା। କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ସାହିତ୍ୟରେ ଯେଉଁ ନୂତନ ସାହିତ୍ୟର ସ୍ପନ୍ଦନ ଓ ଏକ ନବୀନ ସାହିତ୍ୟର ନବ ଜାଗରଣ ଅନୁଭୂତ ହୋଇଥିଲା ତାହା ହଠାତ୍ ଆତ୍ମ ପ୍ରକାଶ କଲା ରାଧାନାଥଙ୍କ ଲେଖନୀରେ। ୧୮୬୨ ସାଲରେ କବି ଗୋପାଳ କୃଷ୍ଣ ପ୍ରାଣତ୍ୟାଗ କଲାବେଳକୁ ଓଡ଼ିଶାରେ ଇଂରେଜ ଶାସନ ପ୍ରତିଷ୍ଠିତ ହୋଇ ପ୍ରାୟ ଷାଠିଏ ବର୍ଷ ଅତିବାହିତ ହୋଇ ସାରିଥିଲା ଏବଂ ଯଦୁମଣି ଓ କବିସୂର୍ଯ୍ୟ ଜୀବନର ଶେଷ ଅବସ୍ଥାରେ ଉପନୀତ ହୋଇ ମୃତ୍ୟୁର ଅପେକ୍ଷା କଲେଣି, ଏଣେ ନବଯୁଗ ପ୍ରବର୍ତ୍ତକ ରାଧାନାଥ ମାଟ୍ରିକ୍ୟୁଲେସନ୍ ପାସ୍ କରି ଉଚ୍ଚଶିକ୍ଷା ପାଇଁ କଲିକତା ଗମନ କଲେଣି ଓ ବ୍ୟାସକବି ଫକୀରମୋହନ ବାଲେଶ୍ୱରଠାରେ ଶିକ୍ଷକତା ଆରମ୍ଭ କଲେଣି। ଏତଦ୍ ବ୍ୟତୀତ କବିସୂର୍ଯ୍ୟ ବଳଦେବ ରଥଙ୍କ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ନୂତନତାର ସନ୍ଧାନ ଦେବାର ଉପକ୍ରମ କଲାଣି। ଚମ୍ପୂର ପ୍ରଥମ ପଦ "କହିତ ନୁହଁଇ ଭାରତୀରେ, କାଳି ଯା' ଦୂରରୁ ସଖି, କଳନା କଲା ମୋ ଆଖି," ସଙ୍ଗେ "ଖରାପ ତୁ ହେଲୁରେ, ଖେଳାଲୋଳା ଖଞ୍ଜନାକ୍ଷି କି ସାହସ କଲୁରେ," "ଗଲାଣିତ ଗଲା କଥାରେ ସଙ୍ଗାତ ଗୁପତେ ସିନା ମୁଁ ତୋତେ ପଚାରିଲି ବଳି ପଢ଼ିବାରୁ

ବ୍ୟଥା' ଏବଂ "ଘେନାଇ ଯେତେ ଆମ୍ଭେ କହିଲୁରେ, ଘେନିଲୁ ନାହିଁ ସେ ବାଳା ପହିଲୁରେ," ପ୍ରଭୃତି ପଦ ଗୁଡ଼ିକର ତୁଳନାତ୍ମକ ବିଚାର କଲେ ସେହି ଐତିହାସିକ ଇଙ୍ଗିତ ସୁସ୍ପଷ୍ଟ ହୋଇ ଉଠେ । ବାସ୍ତବିକ୍ ନୂତନତାର ଆବିର୍ଭାବରେ ସମସ୍ତେ ଯେପରି ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ, ସେହିପରି ବ୍ୟଥିତ ଓ ମ୍ରିୟମାଣ ମଧ୍ୟ । କବିସୂର୍ଯ୍ୟଙ୍କ କବିତାର ଅନ୍ତଃସ୍ୱରରେ ଏହା ଅନୁଭୂତ ହୁଏ । ଭଞ୍ଜ ଯୁଗର ଶେଷ ପ୍ରତିନିଧି ହିସାବରେ ସେ ଅପେକ୍ଷା କରି ବସିଥିଲେ ଭବିଷ୍ୟତର ଆଧୁନିକ ସାହିତ୍ୟକୁ ।

୧୮୦୩ ସାଲରେ ଓଡ଼ିଶାର ରାଜନୈତିକ କ୍ଷମତା ମରହଟ୍ଟାମାନଙ୍କଠାରୁ ଇଂରେଜମାନଙ୍କ ହସ୍ତକୁ ହସ୍ତାନ୍ତରିତ ହେଲେ ମଧ୍ୟ ୧୮୨୨ ପର୍ଯ୍ୟନ୍ତ ତାହା ଦୃଢ଼ ପ୍ରତିଷ୍ଠିତ ହୋଇପାରିନଥିଲା । ୧୮୧୭ ସାଲର ପାଇକ ବିଦ୍ରୋହ ପରେ ଓଡ଼ିଶାର ରାଜନୈତିକ ଅନିଶ୍ଚିତତାର ଅବସାନ ଘଟିଲା । କ୍ରମଶଃ ସେହି ବର୍ଷ ମିସ୍‌ନାରୀମାନେ ଓଡ଼ିଶାରେ ପାଶ୍ଚାତ୍ୟ ଧରଣର 'ଆଧୁନିକ ସ୍କୁଲ' ସ୍ଥାପନ କଲେ । ତତ୍ ସଙ୍ଗେ ସଙ୍ଗେ ଉଇଲିୟମ୍ ବେଣ୍ଟିକ୍‌ଙ୍କ ଭାରତରେ ଇଂରେଜ ଶିକ୍ଷା ପ୍ରଚଳନ ବ୍ୟବସ୍ଥା କାର୍ଯ୍ୟକାରୀ ହୁଏ ଏବଂ ୧୦୧ଟି ହାର୍ଡିଞ୍ଜ୍ ସ୍କୁଲ ପ୍ରତିଷ୍ଠା ମଧ୍ୟରୁ ଓଡ଼ିଶା ପାଇଁ ୮ଟି ମାତ୍ର ଅନୁମୋଦିତ ହୁଏ । ଏହାରି ଫଳରେ ଏ ଦେଶର ଚିନ୍ତା ଜଗତରେ ଏକ ବିରାଟ ପରିବର୍ତ୍ତନର ସୂତ୍ରପାତ ହେଲା । ମିସ୍‌ନାରୀ ମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାର ଓ କମ୍ପାନୀ ସରକାରଙ୍କର ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନରେ ବ୍ୟତିବ୍ୟସ୍ତ ଓଡ଼ିଆଙ୍କ ସାଂସ୍କୃତିକ ଜୀବନରେ ଏକ ବିରାଟ ପ୍ରତିବନ୍ଧକ ସୃଷ୍ଟିହେଲା । ରାଜନୈତିକ ହସ୍ତକ୍ଷେପ ସଙ୍ଗେ ସଙ୍ଗେ ଧର୍ମ, ସଂସ୍କୃତି ତଥା ଶିକ୍ଷାରେ ହସ୍ତକ୍ଷେପ ହେବାରୁ ଓଡ଼ିଶାବାସୀ ସରକାରଙ୍କ ସଙ୍ଗେ ଅସହଯୋଗ ଓ ଆଧୁନିକ ଶିକ୍ଷା ପ୍ରତି ଗଭୀର ବିତୃଷ୍ଣା ମନୋଭାବ ପୋଷଣ କଲେ । ଫଳରେ ବହୁ ସରକାରୀ ଚେଷ୍ଟା ସତ୍ତ୍ୱେ ଉନବିଂଶ ଶତାବ୍ଦୀର ଦୀର୍ଘ ୮୦ ବର୍ଷ କାଳ ଓଡ଼ିଆ ସାହିତ୍ୟରେ ଏକ ଅନ୍ଧକାର ଯୁଗର ସୂତ୍ରପାତ ହେଲା । କିନ୍ତୁ ୧୮୪୪ ସାଲରେ ହାର୍ଡ଼ିଞ୍ଜଙ୍କ ଶିକ୍ଷାନୀତି ଅନୁଯାୟୀ ଇଂରେଜୀ ଭାଷାକୁ ସରକାରୀ ଚାକିରୀର ବାଧ୍ୟତାମୂଳକ ମାନଦଣ୍ଡ ରୂପରେ ଗ୍ରହଣ କରାଗଲା । ଏହା ଦ୍ୱାରା ଓଡ଼ିଆ ମାନେ ଚାକିରୀ ଲୋଭରେ ଇଂରେଜ ଶିକ୍ଷା ପ୍ରତି ସାମାନ୍ୟ ଆକୃଷ୍ଟ ହେଲେ । କାଳକ୍ରମେ ୧୮୬୮-୭୦ ମସିହା ବେଳକୁ ଓଡ଼ିଶାରେ ଏକ ନବ୍ୟ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ (Newly Created educated middle class) ସୃଷ୍ଟି ହେଲା । ଏତଦ୍‌ବ୍ୟତୀତ ୧୮୬୫-୬୬ ସାଲର ନ'ଙ୍କ ଦୁର୍ଭିକ୍ଷ ଓ ୧୮୬୮-୭୦ ସାଲର କେତେକ ବିକାର ଗ୍ରସ୍ତ ବଙ୍ଗାଳୀଙ୍କ ଓଡ଼ିଆ ଭାଷା ଲୋପ ଆନ୍ଦୋଳନର ହୀନ ଷଡ଼ଯନ୍ତ୍ର ଓଡ଼ିଆ ଜାତିର ପ୍ରାଣରେ ପ୍ରଚଣ୍ଡ ଆଘାତ ପୂର୍ବକ ଦୁର୍ବଳ କରିଦେବା ସଙ୍ଗେ ସଙ୍ଗେ ଏ ଦୁଇଟି ଘଟଣା ଆଧୁନିକ ଓଡ଼ିଆ ସାହିତ୍ୟ ତଥା ସାଂସ୍କୃତିକ ଜୀବନରମଙ୍ଗଳମୟଙ୍କ ଆଶୀର୍ବାଦ ତୁଲ୍ୟ ପ୍ରତିକ୍ରିୟା ସୃଷ୍ଟି କଲା । ଫଳରେ ନବଜାଗରଣର ସାର୍ଥକ ସ୍ୱାକ୍ଷର ସ୍ୱରୂପ ଦୀପିକା (୧୮୬୬), ବାହିକା (୧୮୬୮), ଉତ୍କଳ ଦର୍ପଣ (୧୮୭୩) ଉତ୍କଳ ପୁତ୍ର

(୧୮୭୪), ବିଦେଶୀ (୧୮୭୪), ଉତ୍କଳ ମଧୁପ (୧୮୭୮), ଉତ୍କଳ ପ୍ରଭା (୧୮୯୧) ପ୍ରଭୃତି ମାସିକ ପତ୍ରିକା ଆତ୍ମପ୍ରକାଶ କଲା । ଏହି ମାସିକ ପତ୍ରିକା ଓ ପାଠ୍ୟ ପୁସ୍ତକ ପ୍ରଣୟନର ଆଶୁ ପରିଣତି ସ୍ୱରୂପ ପରବର୍ତ୍ତୀ ପନ୍ଦର ବର୍ଷ ୧୮୯୧-୯୭ ମଧ୍ୟରେ ଆଧୁନିକ ଓଡ଼ିଆ ସାହିତ୍ୟର ସୁପ୍ରତିଷ୍ଠା ସମ୍ଭବ ହୋଇ ପାରିଥିଲା । ଏଥିରେ ରାଧାନାଥଙ୍କର 'ମେଘଦୂତ' ଅନୁବାଦ ଠାରୁ ଆରମ୍ଭ କରି 'ବିବେକୀ' (ପ୍ରବନ୍ଧ) 'ଇଟାଲୀୟ ଯୁବା' ଗଳ୍ପ ରାମଶଙ୍କରଙ୍କ 'ପ୍ରେମ ତରୀ' (ଖଣ୍ଡକାବ୍ୟ) ଏବଂ ମଧୁସୂଦନଙ୍କ 'ଜୀବନ ଚିନ୍ତା' (କବିତା) ପ୍ରଭୃତି ଉତ୍କୃଷ୍ଟ ରଚନାମାନ ସୃଷ୍ଟି ହେଲା । ୧୮୭୬ରେ ପ୍ରକାଶିତ ରାଧାନାଥ ଓ ମଧୁସୂଦନଙ୍କର କବିତାରେ 'ଉପଧାମିଳନ' ଓ 'ଯତିପାତ' ଏବଂ ମଧୁସୂଦନଙ୍କର କବିତାରେ ଇଂରେଜୀ ଏକାନ୍ତର ମେଳ ଓ ସ୍ପେନ୍ସରିଆନ ଷ୍ଟାଞ୍ଜାର ପ୍ରଭାବ ସୁସ୍ପଷ୍ଟ । ଭାରତୀୟତାକୁ କେନ୍ଦ୍ରକରି ଏହି ସବୁ ଗଢ଼ି ଉଠିଲେ ମଧ୍ୟ ଏହାର ଆଙ୍ଗିକ ଓ ଆତ୍ମିକ ରୂପ ବିଭବ ଭାଷା, ଭାବ, ସ୍ୱର, ଶୈଳୀ, ଅନ୍ତଃପ୍ରକୃତି ଅଭିବ୍ୟକ୍ତିର ମାଧ୍ୟମ ଓ ଜାତୀୟତା ସଂହତି ସଂପୂର୍ଣ୍ଣ ପାଶ୍ଚାତ୍ୟାନୁସୃତ । ୧୮୮୬ ମସିହାରେ ରାଧାନାଥଙ୍କର ବଳିଷ୍ଠ କବିତ୍ୱର ପ୍ରଥମ ପ୍ରକାଶ ହୁଏ 'କେଦାର ଗୌରୀ'ର ଆବିର୍ଭାବରେ କ୍ରମଶଃ 'ଚନ୍ଦ୍ରଭାଗା' (୧୮୮୬), ନନ୍ଦିକେଶ୍ୱରୀ (୧୮୮୭) ଉଷା (୧୮୮୮), ପାର୍ବତୀ (୧୮୯୦), ଚିଲିକା (୧୮୯୧), ମହାଯାତ୍ରା (୧୮୯୨), ଯଯାତି କେଶରୀ (୧୮୯୪), ତୁଳସୀ ସ୍ତବକ (୧୮୯୪) ଓ ଦରବାର (୧୮୯୪) ଇତ୍ୟାଦି କାବ୍ୟ ପ୍ରକାଶିତ ହୁଏ । ଯୁଗପ୍ରବର୍ତ୍ତକ ରାଧାନାଥଙ୍କ ଲେଖନୀ ଓଡ଼ିଆ ଆଧୁନିକ ସାହିତ୍ୟକୁ ବହୁ ବର୍ଣ୍ଣବିଭାରେ ବିମଣ୍ଡିତ କରିଛି ।

ଆଧୁନିକ ଓଡ଼ିଆ କବିତାର ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ, ତାହା କବି ସଚ୍ଚିଦାନନ୍ଦଙ୍କ କାବ୍ୟ ସାଧନାର ଫଳ ।

ଆଜିର କବିତା ଅନ୍ୟ ସମୟର ଯୁଗ ପୁରୁଷ ମନୀଷୀ ସଚ୍ଚିଦାନନ୍ଦଙ୍କ ସୃଷ୍ଟି ପରମ୍ପରା ଉପରେ ଅଧିକ ନିର୍ଭରଶୀଳ ନୁହଁ । ସଚ୍ଚିଦାନନ୍ଦ ନିଜେ ନିର୍ଭରଶୀଳ ପ୍ରାଚ୍ୟ ଓ ପ୍ରତୀଚୀର ଅତୀତ ଓ ବର୍ତ୍ତମାନର ପରମ୍ପରା ଉପରେ । ପରମ୍ପରା ଓ କାରୟିତ୍ରୀ ପ୍ରତିଭାର ସୁସମନ୍ୱୟରେ ସଚ୍ଚିଦାନନ୍ଦ ଏକ ନବଯୁଗର ଭିତ୍ତି ସ୍ଥାପନ କରିବାକୁ ସଂପୂର୍ଣ୍ଣ ସମର୍ଥ ହୋଇଛନ୍ତି । ଏ କ୍ଷେତ୍ରରେ ସେ ପରମ୍ପରାର ପୁନଃମୂଲ୍ୟାୟନ, ପୁରାତନରେ ନୂତନତାର ଆରୋପ, ଆହୃତରେ ମୌଳିକତାର ସଂଚାର, ସ୍ଥଳ ବିଶେଷରେ ପରମ୍ପରାର ଅନାବଶ୍ୟକ ଅଂଶକୁ ବର୍ଜନ କରିବା ଦ୍ୱାରା ନୂତନ ମାର୍ଗ ସୃଷ୍ଟି କରିଛନ୍ତି ।୨୯।

ପ୍ରଥମତଃ ଆଧୁନିକ ଓଡ଼ିଆ କବିତାରେ ମୁକ୍ତ ଛନ୍ଦର ପ୍ରୟୋଗ ଏବଂ ମୌଖିକ ରୀତି ସଙ୍ଗେ କାବ୍ୟରୀତିର ଯଥା ସମ୍ଭବ ସମନ୍ୱୟ ହିଁ ଆଧୁନିକ ଓଡ଼ିଆ କବିତାର ଶ୍ରୀବୃଦ୍ଧି କରିଛି । ପୂର୍ବରୁ ପ୍ରଚଳିତ କାବ୍ୟିକ ଛନ୍ଦର ମିଳନ ଆଧୁନିକ କବିତାରୁ କ୍ରମଶଃ ଦୂରେଇ ଯାଉଛି । ଓଡ଼ିଆ କବିତାର ମୁକ୍ତଛନ୍ଦ ବଙ୍ଗଳା କବିତାର ପୟାର ଜାତୀୟଛନ୍ଦ ଭଳି ।

ମୁକ୍ତଛନ୍ଦର ପ୍ରୟୋଗ ଯୋଗୁଁ କବିତା ଅଧିକ ବାସ୍ତବ ଜୀବନ ଧର୍ମୀ ହୋଇପାରିଛି। ଆଧୁନିକ କବିତାର ସାଙ୍ଗୀତିକତା ମଧ୍ୟ ମରିଯାଇଛି ଓ ବାସ୍ତବ ଜୀବନ ସହିତ କବିତା ଅଧିକ ସାମଞ୍ଜସ୍ୟ ପ୍ରତିଷ୍ଠା କରିଛି। କବି ଆଉ ଶ୍ରୁତି ପାଇଁ ରୀତି ଯୁଗର ଶ୍ରୁତି ସୁଖକର କବିତା ନଲେଖି ଭାବଧର୍ମ ଉପରେ ଅଧିକ ଗୁରୁତ୍ୱ ଦେଇଛି।୩୦।

ଇଂରାଜୀ କବିତାରେ ହପ୍‌କିନ୍‌ସ, ଟି.ଏସ୍.ଏଲିୟଟ, ଏଜରାପାଉଣ୍ଡ ଇତ୍ୟାଦିଙ୍କ ଭଳି ଆଧୁନିକ କବି ତା'ର କବିତାରେ ମୁକ୍ତ ଛନ୍ଦର ସଫଳ ପ୍ରୟୋଗ କରି ପାରିଛି। ଫଳତଃ କବିର ଭାବ ଧର୍ମକୁ ଏହା ବିନାଦ୍ୱିଧାରେ ପ୍ରକାଶ କରିପାରିଛି।

ମୁକ୍ତଛନ୍ଦ ବା ଗଦ୍ୟଛନ୍ଦ ଆଧୁନିକ ଓଡ଼ିଆ କବିତାର ଆଙ୍ଗିକରେ ପରିବର୍ତ୍ତନ ଆଣିଛି। ବାସ୍ତବରେ ବାକ୍‌ଛନ୍ଦରେ ହିଁ ଆଧୁନିକ କବିତାର ବଳିଷ୍ଠ ପ୍ରକାଶ ସମ୍ଭବ। କବିତାର ଶବ୍ଦଭଙ୍ଗୀ, ସ୍ୱରଭଙ୍ଗୀ, ଶ୍ୱାସକ୍ଷେପଣ ଭଙ୍ଗୀ, ଯେଉଁ ଛନ୍ଦରେ ଏକତ୍ର ସଂଚାରିତ ହେବା ସମ୍ଭବ, ସେହି ତ୍ରିବେଣୀ ପ୍ରତି ଆଧୁନିକ କବିତାର ଦୃଷ୍ଟି ନିବଦ୍ଧ, ଯାହାକୁ ଭୁଲରେ କେହି କେହି ଗଦ୍ୟଛନ୍ଦ ବୋଲି ମନେକରନ୍ତି।୩୧।

ଦ୍ୱିତୀୟତଃ ଆଙ୍ଗିକ କ୍ଷେତ୍ରରେ ଆଧୁନିକ ଓଡ଼ିଆ କବିତାର ଭାଷାକୁ ଗ୍ରହଣ କରାଯାଇ ପାରେ। ଭାଷା ଭାବର ବାହକ। ପୁନଶ୍ଚ କବିତାର ଭାଷାରେ ଆବେଦନ କ୍ଷମତା ନରହିଲେ ତାହା ଯେତେ ବୌଦ୍ଧିକତାର ବିସ୍ଫୋରଣ ହେଲେବି ବ୍ୟର୍ଥ ହୋଇଯିବ। ପାଠକମାନଙ୍କ ହୃଦୟକୁ ତାହା ରସସିକ୍ତ କରିପାରିବ ନାହିଁ। ଏଣୁ ସ୍ୱାଧୀନତା ପରବର୍ତ୍ତୀ ଉତ୍ତର ପଚାଶ ଓଡ଼ିଆ କବିତାର ଭାଷାକୁ କବି ଯଥା ସମ୍ଭବ ସରଳ ଗଣମୁଖୀ କରିବାକୁ ଚେଷ୍ଟା କରିଛି। ମାତ୍ର ସ୍ଥଳ ବିଶେଷରେ ଏହି ଭାଷା ଗଦ୍ୟଛନ୍ଦର ପ୍ରୟୋଗ ଓ ଅତ୍ୟାଧୁନିକ ଏବଂ ସମ୍ଭ୍ରାନ୍ତୀୟତା ଦେଖାଇବା ଆଳରେ କ୍ଲିଷ୍ଟ ହୋଇଯାଇଛି।

ସଂପ୍ରତି ଭାଷା ନିର୍ମାଣ ଓ ଶବ୍ଦ ପ୍ରୟୋଗ କ୍ଷେତ୍ରରେ ସବୁ ପ୍ରକାର ଶୁଚିବାୟୁ ପରିତ୍ୟକ୍ତ। ଗଦ୍ୟଗନ୍ଧୀ ଶବ୍ଦ ପ୍ରତିପକ୍ଷପାତିତା ସ୍ପଷ୍ଟ। କୌଣସି ଶବ୍ଦ ଆଉ ଅପାଙ୍‌କ୍ତେୟ କି ଅଶାଳୀନ ନୁହେଁ। ପ୍ରଚୁର ଦେଶୀ, ବିଦେଶୀ ଶବ୍ଦ, ସଂସ୍କୃତ ଶବ୍ଦ ପ୍ରବାହ ସହିତ ବିଖ୍ୟାତ କବି ଲେଖକଙ୍କ ପ୍ରସିଦ୍ଧ କାବ୍ୟର ଉଦ୍ଧୃତି ମଧ୍ୟ କବିତାରେ ପୂର୍ଣ୍ଣଭାବରେ ବ୍ୟବହୃତ ହେଉଛି। ନଗ୍ର, ଭ୍ରାଥ, ବୃଛ, ଯୁଜେଷ୍ଟି ଓ ମହାପ୍ରୁ ଆଦି ପ୍ରାଚୀନ ସାହିତ୍ୟରେ ବ୍ୟବହୃତ ଶବ୍ଦ ପ୍ରୟୋଗ, ଦଲିଲ, ଦସ୍ତାବିଜ, ତାମ୍ରଲେଖ, କୋର୍ଟ କଚେରୀର ଭାଷା ବ୍ୟବହାର ଓ ପରନ୍ତୁ କିନ୍ତୁ ଯଦିବା ଆଦି ଯୁକ୍ତି ତର୍କରେ ଅବ୍ୟୟ ବାହୁଲ୍ୟ ତଥା ସୁପ୍ରଚୁର ଆକସ୍ମିକ ଓ ବ୍ୟକ୍ତିଗତ ପ୍ରତୀକ ଚିତ୍ରକଳ୍ପ ବ୍ୟବହାର ଫଳରେ ଓଡ଼ିଆ କବିତାର ଗତି ସଂପୂର୍ଣ୍ଣ ବଦଳିଯାଇଛି।୩୨।

ହୃଦୟାବେଗକୁ ଅର୍ଥ ଦ୍ୟୋତକ ଭାଷାରେ ପୂର୍ଣ୍ଣ ଅନୁଭବ ଯୋଗ୍ୟ କରିବାରେ 'ଶବ୍ଦ' ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ତେଣୁ ଆଧୁନିକ ଓଡ଼ିଆ କବିତାର ଆଙ୍ଗିକ ପରିବର୍ତ୍ତନରେ ଏହି ଶବ୍ଦ ପ୍ରୟୋଗର ବୈଶିଷ୍ଟ୍ୟକୁ ଅସ୍ୱୀକାର କରାଯାଇ ନପାରେ। ସ୍ୱାଧୀନତା ପରବର୍ତ୍ତୀ

ଓଡ଼ିଆ କବିତାରେ ତଦ୍‌ଭବ ଶବ୍ଦାବଳୀର ଅସଦଭାବ ନଥିଲେ ହେଁ ଉତ୍ତର ସତୁରୀ କାବ୍ୟ ବ୍ୟାପାରରେ ଦେଶଜ ଶବ୍ଦର ଭୂମିକା ଲକ୍ଷ୍ୟ କରିହେବ ।

ବାକ୍‌ରୀତି ସଂଗେ କାବ୍ୟରୀତିର ସମନ୍ୱୟ ଆଧୁନିକ କବିତାର ମୂଳମନ୍ତ୍ର ହୋଇଥିବାରୁ ଇଂରାଜୀ ପରି ବୈଦେଶିକଶବ୍ଦର ପ୍ରୟୋଗ ବହୁ କବିତାରେ ଦେଖିବାକୁ ମିଳୁଛି । ଆଙ୍ଗିକରେ ନୂତନ ପ୍ରୟୋଗ କୌଶଳ ମୁକ୍ତ ଛନ୍ଦର ପ୍ରୟୋଗ ସାଙ୍ଗକୁ ସମାଜମୁଖୀ ଭାଷା ଓ ଶବ୍ଦର ପ୍ରୟୋଗ ଫଳରେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାପାଠକର ନିକଟବର୍ତ୍ତୀ ହୋଇପାରିଛି । ସାମାଜିକ ବାସ୍ତବତାକୁ ପୂର୍ଣ୍ଣଭାବରେ ପ୍ରକାଶ କରିପାରିଛି ।

ଆଧୁନିକ କବିତାର ଭାଷାଭାବ ସଂବାହୀ ନହୋଇ କ୍ରମେ ଯୁକ୍ତିପୂର୍ଣ୍ଣ ହୋଇଛି । ଏହି ମର୍ମରେ ଏଥିରେ ଅଧିକ ବୁଦ୍ଧିଦୀପ୍ତତା (Wit) ବ୍ୟଞ୍ଜନା (Irony) ଓ ରୁଚିଶୀଳତା (Urbantity) ପ୍ରକାଶ ପାଇଛି ।୩୩।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ଶବ୍ଦର ସୃଷ୍ଟିକାରୀ ଶକ୍ତି ପ୍ରତିକବିର ଏକ ସ୍ୱତନ୍ତ୍ର ଅବବୋଧ ଜନ୍ମିବା ସଙ୍ଗେ ସଙ୍ଗେ ଶବ୍ଦକୁ ବିଚିତ୍ର ଭାବଧାରଣା ଉପଯୋଗୀ କରି କବିତାରେ ପ୍ରୟୋଗ କରିବାର ଅଭିନବ ପରମ୍ପରା ସୃଷ୍ଟି କରିବାର ଲକ୍ଷ୍ୟ କରିହେବ । ବର୍ଣ୍ଣନାଶ୍ରୟୀ କବିତାର ବାକ୍ ବାହୁଲ୍ୟ ବିରୁଦ୍ଧରେ ପୂର୍ଣ୍ଣ ବିଦ୍ରୋହକରି ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତା ଭାବଧାରଣା ଏବଂ ଉପଲବ୍ଧି ଗର୍ଭକ ଚିତ୍ରକଳ୍ପ ଦ୍ୱାରା ପାଠକମନରେ ବାସ୍ତବ କାବ୍ୟରୂପ ପ୍ରଦାନରେ ସାହାଯ୍ୟ କରିଛି । ଏହି ଚିତ୍ରକଳ୍ପର ପ୍ରୟୋଗ ଆଧୁନିକ ଓଡ଼ିଆ କବିତାର ଆଙ୍ଗିକରେଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ଆଧୁନିକ କବିତାରେ ବ୍ୟବହୃତ ଶବ୍ଦକୁ ଅଧିକ ଭାବବ୍ୟଞ୍ଜକ କରିବାପାଇଁ ଯେଉଁ ପ୍ରଚେଷ୍ଟା ତାହାରି ଫଳରେ କବିତାର 'ରୂପକ' 'ପ୍ରତୀକ' ଚିତ୍ରକଳ୍ପର ପ୍ରାଧାନ୍ୟ ଦେଖାଦେଇଛି । ଚିତ୍ରକଳ୍ପ ମାଧ୍ୟମରେ କବି ଆଧୁନିକ ମଣିଷର ନିଃସଂଗ ଯନ୍ତ୍ରଣାଜର୍ଜରିତ ବାସ୍ତବବାଦୀ ଜୀବନର ସ୍ପଷ୍ଟ ଚିତ୍ରକୁ ପାଠକ ପାଖରେ ଚିତ୍ତାକର୍ଷକ ଭାବରେ ଉପସ୍ଥାପନ କରିପାରିଛି ।

ବିଶ୍ୱସୃଷ୍ଟିର ମାନସିକ ପ୍ରତିକ୍ରିୟା, ଅର୍ଥ, ଅନୁଭୂତି ଓ ଆଲୋଚନା କେବେ ପ୍ରାଞ୍ଜଳ କି ସ୍ପଷ୍ଟ ହୋଇପାରେ ନାହିଁ ଅର୍ଥାତ୍ ବିଶ୍ୱର ସତ୍ୟ ଓ ସୌନ୍ଦର୍ଯ୍ୟକୁ ମଣିଷର ମାନସିକ ସଚେତନତା ପୂର୍ଣ୍ଣତଃ ଉପଲବ୍ଧିକୁ ଆଣିପାରେ ନାହିଁ । କବିଗଣ ସେହି ଅସ୍ପଷ୍ଟ ଓ ଅପୂର୍ଣ୍ଣ ସତ୍ୟୋପଲବ୍ଧିର ରୂପାୟନ ପାଇଁ ବହିଃବସ୍ତୁ ପ୍ରକ୍ଷେପଣ (Projection)ର ସହାୟତା ଲୋଡନ୍ତି । ଚିତ୍ରକଳ୍ପ ତାଙ୍କ ସତ୍ୟୋପଲବ୍ଧିକୁ ମୂର୍ତ୍ତି ଦାନକରେ । ଅନ୍ତର ଆଲୋକିତ ଅର୍ଥାତ୍ ସେହି ଆଲୋକରେ ବର୍ତ୍ତମାନ ଆଲୋକିତ ହୁଏ । ଜଣାଜଗତ ଅଜଣା ଅଜଣା ଲାଗେ । ସେହି ଅଜଣାଅଜଣା ଅନୁଭବକୁ କବି କବିତାରେ ଚିତ୍ରକଳ୍ପ ମାଧ୍ୟମରେ ଜଣାଇବାକୁ ଚାହେଁ ।

ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ବହୁ ପ୍ରତିଭାବାନକବି ନିଜ ନିଜ କବିତା ଗୁଡ଼ିକରେ ଚିତ୍ରକଳ୍ପର ସଫଳ ପ୍ରୟୋଗ କରିଛନ୍ତି । କବିମାନଙ୍କ ମଧ୍ୟରେ

କବି ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଭାନୁଜୀ ରାଓ, ଶରତଚନ୍ଦ୍ର ପ୍ରଧାନ, ଦୀପକ ମିଶ୍ର, ସୌଭାଗ୍ୟ କୁମାର ମିଶ୍ର, କମଳାକାନ୍ତ ଲେଙ୍କା ଏବଂ ପ୍ରତିଭା ଶତ୍‌ପଥୀ ପ୍ରମୁଖ ପ୍ରଧାନ ।

ସଚ୍ଚିଦାନନ୍ଦ ରାଉତରାୟ ଥିଲେ ଆଧୁନିକ ଓଡ଼ିଆ କବିତାର ଆଦ୍ୟଗୁରୁ । ପ୍ରାରମ୍ଭିକ କାବ୍ୟ ଜୀବନରେ ସେ ରୋମାଣ୍ଟିକ୍ ଭାବେ ଲେଖନୀ ଚାଳନା କରନ୍ତି ଏବଂ ପରେ ଅଡେନ ସ୍ପେଣ୍ଡର, ଓ ନଜରୁଲ୍‌ଙ୍କ ବାମପନ୍ଥୀ ଚିନ୍ତାଧାରାକୁ ଗ୍ରହଣ କରନ୍ତି । ତାଙ୍କ ପରବର୍ତ୍ତୀ କବିତାରେ ଶୁଭେ ମେଟାଫିଜିକାଲ୍ ବା ଆଧିଭୌତିକ ଜୀବନସଂଗୀତ । ଏହାର ଉତ୍ସ ଥିଲେ ବଦ୍‌ଲେୟାର, ପାଉଣ୍ଡ ଏବଂ ଇଲିୟଟ୍ । ଇଲୟଟ୍‌ଙ୍କ କାବ୍ୟ ଦର୍ଶନ ଓ ତତ୍ତ୍ୱ ଦ୍ୱାରା ସେ ଅନେକ ମାତ୍ରାରେ ପ୍ରଭାବିତ ହୋଇଛନ୍ତି । କବିତା ୧୯୭୪ରେ ସେ କବି ମନୀଷୀ ଇଲିୟଟ୍‌ଙ୍କ ପରି ଘୋଷଣା କରନ୍ତି - କବି ଓ କବିତା ଦୁଇଟି ପୃଥକ ସତ୍ତା । ଦୁଃଖ ଯନ୍ତ୍ରଣାରେ ସଢ଼ି ସଢ଼ି ଲେଖୁଥିବା କବିଟି ଜଣେ ବ୍ୟକ୍ତି ଏବଂ ତା'ର ମସ୍ତିଷ୍କରେ ତିଆରି ହେଉଥିବା କବିତାଟି ସେଇ ବ୍ୟକ୍ତି ସତ୍ତାଠାରୁ ପୃଥକ । କବି ରାଉତରାୟଙ୍କ ଏହି ତତ୍ତ୍ୱ ଇଲିୟଟଙ୍କ Theory of impersonality ପ୍ରତିଧ୍ୱନି ନିଶ୍ଚୟ ।୩୪।

ପାଣ୍ଡୁଲିପି (୧୯୪୭) କବିତା ଗ୍ରନ୍ଥରେ ସଚ୍ଚିଦାନନ୍ଦ ରାଉତରା ପ୍ରଥମ ଥର ପାଇଁ ଆଧୁନିକତାର ପ୍ରଥମ ସ୍ୱର ଶୁଣାଇଲେ ଅନେକ ପାରମ୍ପରିକ ରଚନାରେ ସମୃଦ୍ଧ ଏ ସଂକଳନର ଅନ୍ତତଃ ପକ୍ଷେ ଅଳ୍ପ କେତୋଟି କବିତା ନୂତନତାର ସ୍ୱରସ୍ୱାକ୍ଷର ବହନ କରିଥିଲେ । କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକରେ ସବୁଜ ଓ ସବୁଜ ପରବର୍ତ୍ତୀ ଏହା ରୋମାଣ୍ଟିକ୍ କବିଙ୍କ ବିରୁଦ୍ଧରେ ଯୁଦ୍ଧର ଆହ୍ୱାନ ଗୁଞ୍ଜରିତ ହୋଇଥିଲା । ଏହି ନୂତନତାରେ ଲିପିବଦ୍ଧ ଥିଲା ସୁନ୍ଦର ଅପେକ୍ଷା ଅସୁନ୍ଦର, ଅମୃତ ଅପେକ୍ଷା ହଳାହଳ ଏବଂ ଜୀବନ ଅପେକ୍ଷା ମୃତ୍ୟୁର ଅକ୍ଷର । ପାଣ୍ଡୁଲିପିର ପଶ୍ଚାତ ଭାଗରେ ମୁଣ୍ଡ ଟେକି ଉଠିଥିଲା ସହର ଓ ସହରୀ ସଭ୍ୟତା । ସଚ୍ଚିଦାନନ୍ଦ ରାଉତରାୟ ସହରୀ ବାୟୁମଣ୍ଡଳ ଭିତରେ ତାଙ୍କ କବିତା ପାଇଁ ଖୋରାକ ଖୋଜିଥିଲେ । ସହରୀ ସଭ୍ୟତାର ନାନା ଦୁର୍ଗନ୍ଧ, ପଚମାନ ସଂସ୍କୃତିର ନାନା ରୂପରେଖ ବହନ କରିଥିଲା ତାଙ୍କ କବିତା । 'ପ୍ରତିମା ନାୟକ' ଓ 'ଅଳକା ସାନ୍ୟାଲ' ଇତ୍ୟାଦି କବିତାରେ ସଚ୍ଚିରାଉତରାୟ ଏକ ନୂତନ ନାରୀ ସୃଷ୍ଟି କରିଥିଲେ । ଏହି ନାରୀ ଏକ ଭିନ୍ନ ନାରୀ, ବୋଧ ହୁଏ ବିଦେଶୀ ନାରୀ । ସେ ସୌନ୍ଦର୍ଯ୍ୟ, ସ୍ନେହ ଓ ସୌହାର୍ଦ୍ଦ୍ୟର ପ୍ରତିମୂର୍ତ୍ତି ନୁହେଁ । ତା'ର ଆଖିରେ ମମତାର ଆଲୋକ ପରାହତ । ସେ ପଳିତ ସଭ୍ୟତା ଓ ଅବକ୍ଷୟ ଗ୍ରସ୍ତ ସଂସ୍କୃତିର ପ୍ରତୀକ ବହୁ ପାପ ଓ ଗନ୍ଧରେ ତିଆରି ହାଡ଼ ମାଂସର ଶରୀର । ପାରମ୍ପରିକ ଭାରତୀୟ ସମାଜର ପ୍ରତିବିମ୍ବ ବହନ କରନ୍ତିନି ଅଳକା ଓ ପ୍ରତିମା । ଶାଢ଼ୀକୁ ପରିତ୍ୟାଗ କରି ସେ ଖାକି ପରିଧାନ କରେ, ତାର ମୁଖ ସାରା ଖାଲି ବ୍ରଣ ତା'ର ଆଖିରେ ରାତିର ଇସାରା । ତାର ହସରେ ଏକ ଅଦ୍ଭୁତ ଆଭାସ କବି କବିତାରେ ପ୍ରକାଶ କରିଛନ୍ତି :-

ପ୍ରତିମା ନାୟକ ହସେ, ଓଠେ ତାର ସ୍ୱପ୍ନର ଆଭାସ
ମୁହଁରେ ଖାକୀର ହସ, ଆଖିରେ ତା' ରାତିର ଇସାରା
ଦୁଇ ପାଖେ ଦ୍ରୁତ ବନ, ଗତିବାନ ନକ୍ଷତ୍ରର ଧାରା ।୩୫।

ରାଉତରାୟଙ୍କ କାବ୍ୟ ଜଗତରେ ବିଷୟ ବସ୍ତୁ ଅପେକ୍ଷା ଶୈଳୀରେ ଇଲିୟଟଙ୍କ ପ୍ରତିଧ୍ୱନି ଅଧିକ ପ୍ରତିବିମ୍ବିତ ହୁଏ । ସଚ୍ଚିରାଉତରାୟଙ୍କ ଟେକ୍‌ନିକ୍ ଅନେକାଂଶରେ ଇଲିୟଟଙ୍କ ଶୈଳୀର ଅନୁବର୍ତ୍ତୀ । ରାଉତରାୟ ହେଉଛନ୍ତି ପ୍ରଥମ ଓଡ଼ିଆ କବି, ଯେ ନିଜ କବିତାରେ କଥିତ ଭାଷା ଏବଂ କାବ୍ୟିକ ଚିନ୍ତନର ଅପୂର୍ବ ମିଳନ ସୃଷ୍ଟି କରିଥିଲେ । ତାଙ୍କର ବହୁ ଚିତ୍ରକଳ୍ପ, ରୂପକଳ୍ପ ବା ଭାବକଳ୍ପ ଓ ପ୍ରତୀକ ଇଲିୟଟ୍‌ଙ୍କ କବିତାର ପ୍ରତିଧ୍ୱନି ବହନକରେ । ବାସ୍ତବିକ୍ ରାଉତରାୟ ସାଂପ୍ରତିକ, ପ୍ରାତ୍ୟହିକ ଜୀବନରୁ ଇମେଜେରୀ ସୃଷ୍ଟିକରି ଓଡ଼ିଆ କବିତାରେ ଏକ ନୂତନ ଦିଗ ଉନ୍ମୋଚନ କରିଥିଲେ । ସାଂପ୍ରତିକ କାଳର ନାନା ବିପର୍ଯ୍ୟୟ, ବିଭ୍ରାନ୍ତି ଅବକ୍ଷୟ ଓ ଅବସାଦ ବହନ କରିଛି ତାଙ୍କ ଚିତ୍ରକଳ୍ପ । କବି କବିତାରେ ପ୍ରକାଶ କରିଛନ୍ତି :-

'ବସନ୍ତ ଆସେ ଯେ ଠେଲି ଧକ୍‌କା ଖାଇ କୁକୁଡ଼ାର ଛଦିହେ
ଭାଙ୍ଗି ବହୁ ମହୁର ସୋରେଇ
ମାଟିରେ ଗଡ଼ାଇ ଅବା ଫୁଲବର୍ଣ୍ଣ ସଂଜେ
ବସନ୍ତ ଆସେ ଯେ ଠେଲି ମଲାଚେର ଗନ୍ଧେ
ଶୁଖିଲା ହାଡର ରନ୍ଧ୍ରେ ବଜାଇ ସାନାଇ' ।୩୬।

ସଚ୍ଚିରାଉତରାୟଙ୍କ ସମସାମୟିକ କବି ଗୁରୁପ୍ରସାଦ ମହାନ୍ତି । ଓଡ଼ିଆ କବିତା କ୍ଷେତ୍ରରେ ସେ ଜଣେ ସଫଳ କାବ୍ୟିକ ବ୍ୟକ୍ତିତ୍ୱ । ରାଉତରାୟଙ୍କ ପରେ ଗୁରୁପ୍ରସାଦ ଅଧିକ ଶକ୍ତିଶାଳୀ କବି । ଗୁରୁପ୍ରସାଦଙ୍କ କବିତାରେ ପ୍ରେମ ହିଁ ମୁଖ୍ୟ ଅନୁଭବ ଓ ଆରମ୍ଭ । 'ସୁନାର ଝରଣା'ର ପ୍ରତୀକତାରେ ଏହାର ସୂଚନା ପ୍ରଦାନ କରିଛନ୍ତି । କବିଙ୍କ କବିତାରେ :-

'ହସି ହସି ଝରିଗଲା ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା' ।୩୭।

ପରେ କବିତାରେ ଏହି ସୂଚନାର ପୁନରାବୃତ୍ତି କରାଯାଇଛି ଓ ଏଥିରେ ଉଭୟ ଆନନ୍ଦ ଓ ବିସ୍ମୟ ଅନ୍ତର୍ନିହିତ । ଏପରିକି ପରେ ଯେତେବେଳେ ଏହି ସୂଚନାକୁ ସ୍ପଷ୍ଟତର ଭାବରେ ପ୍ରକାଶ କରାଯାଇଛି ସେତେବେଳେ ପ୍ରେମାସ୍ପଦା ସହିତ ନିଜକୁ ଏକାତ୍ମ କରିନେବାର ଆନନ୍ଦ ଓ ଉନ୍ମାଦନା କବିତାରେ ପ୍ରତିବିମ୍ବିତ ହୋଇଛି । କବିଙ୍କ କବିତାରେ :

ତା' ପାଦରେ ଛନ୍ଦ ଅଛି, ତା' ଆଖିରେ ଚିକିମିକି ତାରା
ତା' ଦେହରେ ଯେତେ ଢେଉ ଜହ୍ନ ଆଉ ତାରା ଆଲୁଅର
ତା' ବେଣୀରେ ଲୀଳାୟିତ ସ୍ୱପ୍ନ ଯେତେ ଉଆଁସ ରାତିର
ତା' ଭିତରେ ଆଶା ମୋର ରହେ ଅବା ଗୋପ୍ୟ ନିରାକାର ।୩୮।

କବିତାର ସଂଗଠନର ଅନ୍ୟ ପ୍ରକାର ଅନୁଭବ ରହିଛି । ଯାହା ପ୍ରେମର ଆନନ୍ଦ ବା ଉନ୍ମାଦନା ଠାରୁ ଭିନ୍ନ; ଏକ କ୍ଷୟିଷ୍ଣୁ ସମୟର ସୂଚନା କବିତାରେ ସୂଚୀତ । ବ୍ୟକ୍ତି ଜୀବନର କ୍ଲେଶ ଦୁଃସ୍ଥିତି ଓ ଅସଫଳତା କବିତାରେ ଚିତ୍ରିତ ।

'ସମୁଦ୍ରା ସ୍ନାନ' କବିତା ସଂକଳନରେ ସନ୍ନିବେଶିତ କବିତା ଗୁଡ଼ିକ ଆଧୁନିକ କବିତାର ସ୍ୱରୂପକୁ ବଦଳାଇ ଦେବାରେ ଯଥେଷ୍ଟ ସହାୟକ ହୋଇଛି । 'ସମୁଦ୍ର ସ୍ନାନ' କବିତା ସଂକଳନରେ ସ୍ଥାନିତ 'କାଳପୁରୁଷ' (୧୯୭୦) କବିତାଟି ଓଡ଼ିଆ କବିତା ରାଜ୍ୟରେ ବିଶେଷ ଭାବରେ ଆଲୋଡନ ସୃଷ୍ଟି କରିଛି । କବି ମନୀଷୀ ଟି.ଏସ୍. ଇଲିୟଟଙ୍କ Waste Land କବିତା ଅବଲମ୍ୱନରେ ଏହା ରଚିତ ହୋଇଥିଲେ ହେଁ ଏଥିରେ କବିଙ୍କର ମୌଳିକତା ପ୍ରତିଫଳିତ । ଆହରଣରେ ଚତୁରତା, ଅନୁକରଣରେ ମୌଳିକତା, ଆରୋପଣରେ ନୂତନତା ପରିବେଷଣରେ ଚମତ୍କାରିତା କବି ଗୁରୁପ୍ରସାଦ ମହାନ୍ତିଙ୍କ କବିତାର ବୈଶିଷ୍ଟ୍ୟ । ପ୍ରତ୍ୟେକ ଆଧୁନିକ କବି ଊଣା ଅଧିକେ କବି ମନୀଷୀ ଟି.ଏସ୍. ଇଲିୟଟଙ୍କ ଦ୍ୱାରା ପ୍ରଭାବିତ ଓ ଅନୁପ୍ରାଣିତ । ସମଗ୍ର ଇଂରାଜୀ କବିତାରେ ଟି.ଏସ. ଇଲିୟଟଙ୍କ କାବ୍ୟାଦର୍ଶର ଅଦ୍ଭୁତତା ସଂପର୍କରେ David Daiches ପ୍ରକାଶ କରିଛନ୍ତି : The Eliot revolution has proved permanent even if later poets have as was invitable chosen other theam and other techniques none of any structure has totally abandoned, the cerebral discipline or renounce the intellectual toughess in the midst of passionate feeling which the revolution. 1762 to 1820, brought batch into English poetry. ।୩୯।

ଯୁଗର କ୍ଲାନ୍ତି, ବ୍ୟକ୍ତିର ଉଦ୍ଦେଶ୍ୟହୀନତା, ଆଧ୍ୟାତ୍ମ ଜୀବନର କେନ୍ଦ୍ରଚ୍ୟୁତି ସମ୍ୱନ୍ଧରେ ଗଭୀର ସଚେତନତା ଓ ଅନ୍ତର୍ଦୃଷ୍ଟି ହେତୁ ଇଲିୟଟ୍ ଧ୍ୱଂସୋନ୍ମୁଖୀ ପଶ୍ଚିମ ଇଉରୋପର ସଭ୍ୟତାକୁ 'Waste Land' ବା ପୋଡ଼ାଭୂଇଁ ରୂପେ କବିତାରେ ପ୍ରକାଶ କରିଥିଲେ । ସେହିପରି ସାମାଜିକ ଦୁଃସ୍ଥିତି ଅର୍ଥନୈତିକ ବିପର୍ଯ୍ୟୟ, ରାଜନୈତିକ ଅନିଶ୍ଚିତି ଆଦିରେ ଭାରାକ୍ରାନ୍ତ, ଜଟିଳ ଜୀବନ ଯାତ୍ରାରେ ରୁଦ୍ଧଶ୍ୱାସ ତଥା ଯନ୍ତ୍ରଶିଳ୍ପର ବିକାଶ ହେତୁରୁ ସୌନ୍ଦର୍ଯ୍ୟର ଦ୍ରୁତ କ୍ଷୟ ହେଉଥିବା କଟକର ଗୁରୁ ମହାନ୍ତି 'କାଳପୁରୁଷ' ରଚନା କରନ୍ତି, ଚତୁର୍ଦିଗରେ ବାଲିଚର ଲକ୍ଷ୍ୟ କରନ୍ତି ଓ ସମୁଦ୍ରସ୍ନାନ କରିଥାନ୍ତି । କବିତାରେ କବି ଜୀବନର ଅସହାୟତା ଓ ବିଫଳତାକୁ ପ୍ରକାଶ କରିଛନ୍ତି ।୪୦ ।

ଗୁରୁପ୍ରସାଦ ମହାନ୍ତି 'ସମୁଦ୍ର ସ୍ନାନ' କବିତା ସଂକଳନର 'କାଳପୁରୁଷ' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି :-

ନିଶବ୍ଦ ଏ ବାଲିରେ ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥହୀନ ବିବର୍ଣ୍ଣ ପୃଥିବୀ

ଉପରେ ନିସ୍ତେଜ ଖରା ପଥହୀନ ବିବର୍ଣ୍ଣ ଆକାଶ / ବିବର୍ଣ୍ଣ ବାଲି ଓ ଘାସ ଶେଷହୀନ ଶୋଷ ଆଉ ଶୋଷ ।୪୧।

ଗୁରୁପ୍ରସାଦଙ୍କ କବିତାର ପ୍ରାଣକେନ୍ଦ୍ର ଦେହ । ଏହା ପ୍ରାଣ ପ୍ରାଚୁର୍ଯ୍ୟରେ ସ୍ପନ୍ଦିତ ଏବଂ ଏହି ସ୍ପନ୍ଦନ କବିଙ୍କ ବ୍ୟକ୍ତିଗତ ଅନୁଭବକୁ ସାର୍ବଜନୀନ କରେ । ଇନ୍ଦ୍ରିୟଜ ଅନୁଭୂତିରୁ ଅତିନ୍ଦ୍ରିୟ ଚେତନା ଆଡକୁ ଟାଣିନିଏ । ତେଣୁ କବିଙ୍କୁ ବୁଝିବାକୁ ହେଲେ ଦେହ ବର୍ଣ୍ଣନାର ବିଶ୍ଳେଷଣ ନିହାତି ପ୍ରୟୋଜନ । ଏହା ତାଙ୍କ କବିତାର ମୁଖ୍ୟଧାରା ନୁହେଁ ଏହା ହିଁ ତାଙ୍କ କବିତା ।୪୨।

କବିତା ଏକ ଅନନ୍ୟ ଅନୁଭବର ସ୍ୱଚ୍ଛନ୍ଦ ପରିପ୍ରକାଶ ଓ ଶାବ୍ଦିକ ଉଚ୍ଚାରଣ । ଏଥିରେ କବିତା ନିଜର ଅନୁଭବକୁ ତାର ଅନନ୍ୟତାରେ ଧରି ରଖିଥାଏ । ଏହି ଅନନ୍ୟ ଅନୁଭବକୁ ସତ୍ୟଶୀଳ ଭାବରେ ନିଜ ଭାଷା ମାଧ୍ୟମ ସାହାଯ୍ୟରେ ମୂର୍ତ୍ତିମନ୍ତ କରେ । ଯା ଫଳରେ କବିତା ଏକ ନିଜସ୍ୱ ପଣରେ ଝଟକି ଉଠେ । ସମକାଳର କବିଙ୍କ କବିତା ଗୁଡ଼ିକରେ ଜନ ଜୀବନର ଚିତ୍ର ପ୍ରତିଫଳିତ ।

## (ଗ) ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ

ମଣିଷର ସତର୍କ ଓ ଅନିସନ୍ଧିତ୍ସୁ ମନ ସାଧାରଣତଃ ଆପଣା ଦେଶର ବେଢ଼ା ଡେଇଁ ଭିନ୍ନ ଦେଶର ମନ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଆଗ୍ରହୀ ହୋଇଥାଏ । ମନୋରାଜ୍ୟ ବା ଭାବଜଗତରେ ଭିନ୍ନ ଭିନ୍ନ ଜାତିର ପରସ୍ପର ସହିତ ସଂପର୍କ ସ୍ଥାପନ ତଥା ଆଦାନ ପ୍ରଦାନ ସାଂସ୍କୃତିକ ସମୃଦ୍ଧିର ପରିଚାୟକ । ପ୍ରତ୍ୟେକ ଦେଶର ସାରସ୍ୱତ ଇତିହାସରେ ଏଇ ପ୍ରକ୍ରିୟାର ପରିମାଣରୁ ପରିବର୍ତ୍ତନ ଘଟିଥିବା ଲକ୍ଷ୍ୟ କରାଯାଏ । ଏପରି ପରିବର୍ତ୍ତନ ସାହିତ୍ୟ ପକ୍ଷରେ ପ୍ରାୟ ସବୁ ସମୟରେ ଲାଭ ଜନକ ହୋଇଥାଏ । ଆମର ସାରସ୍ୱତ ଇତିହାସରେ ଅନୁରୂପ ଘଟଣା ଘଟିଛି ; ବହୁକାଳ ହେଲା ଆମେ ପାଶ୍ଚାତ୍ୟ ସହିତ ଇଂରାଜୀ ଭାଷା ଓ ଶିକ୍ଷା ମାଧ୍ୟମରେ ସମ୍ବନ୍ଧାନ୍ୱିତ ହୋଇଛୁ । ଏହା ଫଳରେ ଆମ ସାରସ୍ୱତ ଦିଗନ୍ତ ନବ ନବ ରୂପରାଗରେ ବିମଣ୍ଡିତ ହୋଇଛି ।୪୩।

ବହିଃ ସଂସର୍ଗ ଓ ସଂସ୍ପର୍ଶର ପରିମାଣରୁ ଦେଶ ଓ ଜାତିର ମନନ କ୍ଷେତ୍ରରେ ରୂପଗତ ପରିବର୍ତ୍ତନ ଦେଖାଦେଇଥାଏ । ତାହା ଦୀର୍ଘକାଳ ସ୍ଥାୟୀ ହେଲେ ଚିନ୍ତାର ଗୋଲକ କ୍ରମଶଃ ନୂତନ ମୂଲ୍ୟବୋଧର ପୋଷକତା କରି ପ୍ରସାରିତ ହେବାକୁ ଲାଗେ । ସାହିତ୍ୟ ବା ବିବିଧ କ୍ରିୟା ପରିସରରେ ସେଗୁଡ଼ିକର ପ୍ରତିବିମ୍ବ ପରିଲକ୍ଷିତ ହୁଏ । ବିଶ୍ୱର ସାଂସ୍କୃତିକ ଇତିହାସରେ ଏପରି ଦୃଷ୍ଟାନ୍ତ ଅପ୍ରତୁଳ ନୁହେଁ । ଅତୀତର ଇଂରେଜ ଭାବଭୂମିରେ ଗ୍ରିକ୍ ଚେତନାର ପ୍ରତିଫଳନ ହେତୁ ନବୀନ ସର୍ଜନାର ସିଂହ ଦ୍ୱାର ଉଦ୍‌ଘାଟିତ ହୋଇଥିଲା । ଇତାଲୀୟ ଅଭ୍ୟୁଦୟର ବର୍ଣ୍ଣଛଟା ଇଂରେଜ ମାନସ ପୀଠକୁ ଉଦ୍ଭାସିତ କରିଥିଲା । ଊନବିଂଶ ଶତାବ୍ଦୀରୁ ଓଡ଼ିଆ କବିମନ ଓ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବର ପ୍ରତିଫଳନ ଦେଖାଗଲା । ଉତ୍ତରକାଳକୁ ମଧ୍ୟ ଏହି ପ୍ରଭାବର ଧାରା ବ୍ୟାପି ଯାଇଥିଲା ।୪୪।

ପାଶ୍ଚାତ୍ୟ ଚେତନା, ଇଂରେଜ ଶିକ୍ଷା ଓ ସାହିତ୍ୟ ଅଧ୍ୟୟନ ଜରିଆରେ ମୁଖ୍ୟତଃ ଆମ ଭାବ ଜଗତରେ ପାଶ୍ଚାତ୍ୟ ପ୍ରଭାବ ପ୍ରବେଶ କରିଥିଲା । ବ୍ରିଟିଶ୍ ଶାସନ କାଳରେ ଓଡ଼ିଆ ସମେତ ବିଭିନ୍ନ ଭାରତୀୟ ସାହିତ୍ୟ, ପାଶ୍ଚାତ୍ୟ ଚିନ୍ତାଧାରାକୁ ଇଂରେଜ ମାଧ୍ୟମରେ ଉପଲବ୍ଧ କରି ତାହାରି ଅନୁପ୍ରେରଣାରେ ଆତ୍ମିକ ଓ ଆଙ୍ଗିକ କ୍ଷେତ୍ରରେ ରୂପାନ୍ତର ଘଟାଇଥିଲେ । ଏହି ସମୟରେ ପାରମ୍ପରିକତାର କର୍ତ୍ତୃତ୍ୱରୁ ଆପଣାକୁ ମୁକ୍ତ କରି ନୂତନତାର ଶୁଭ ସଂକେତ ଦେବାକୁ ସେହି ସାହିତ୍ୟ ସବୁ ପ୍ରୟାସୀ ହୋଇଥିଲେ । ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ଦେଖାଯାଉଥିବା ପାଶ୍ଚାତ୍ୟ ପ୍ରଭାବ ଯଥାର୍ଥତଃ ଇଂରେଜ ପ୍ରଭାବ ଆକାରରେ ହିଁ ପ୍ରବେଶ କରିଥିଲା ।

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ଓଡ଼ିଆ କାବ୍ୟ - ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବର ପ୍ରତିଫଳନ ଦେଖା ଦେଇଛି । ପ୍ରାଚ୍ୟ-ସଂସ୍କୃତ ସାହିତ୍ୟର ଅନୁବାଦ ଅବଲମ୍ବନ ଇତ୍ୟାଦିରୁ ପ୍ରାଚୀନ, ମଧ୍ୟ ଯୁଗୀୟ ଓଡ଼ିଆ ସାହିତ୍ୟ ବିକଶିତ ହେଲାଭଳି ପାଶ୍ଚାତ୍ୟ ଇଂରେଜ କାବ୍ୟ କବିତାରେ ଅନୁବାଦ ଅନୁସରଣରୁ ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟର ନବୋନ୍ମେଷ ସାଧିତ ହୋଇଅଛି ।୪୫।

କାବ୍ୟ ରଚନା ବ୍ୟାପାରରେ ପାଶ୍ଚାତ୍ୟ ଅନୁସରଣ ପ୍ରବୃତ୍ତି ଜଗନ୍ମୋହନଙ୍କ ଠାରୁ ରାମଶଙ୍କରଙ୍କ ମଧ୍ୟ ଦେଇ ରାଧାନାଥଙ୍କ ପର୍ଯ୍ୟନ୍ତ ଦ୍ରୁତ ବିକଶିତ ହୋଇଛି । ଜଗନ୍ମୋହନ ଓ ରାମଶଙ୍କର କାବ୍ୟ ସୃଷ୍ଟିରେ ସିଦ୍ଧି ଲାଭ କରି ନାହାଁନ୍ତି ସତ; ମାତ୍ର ସେମାନେ ଯେ ପାଶ୍ଚାତ୍ୟ କାବ୍ୟାନୁସରଣର ଭୂମିକା ପ୍ରସ୍ତୁତ କରିଛନ୍ତି, ଏହା ନିଃସନ୍ଦେହ ।

ରାଧାନାଥ, ତାଙ୍କ ପୂର୍ବସୂରୀଙ୍କ ତୁଳନାରେ ଅନୁସରଣ ତଥା ଆହରଣ ମୂଳକ କାବ୍ୟ ରଚନା ଧାରାର ବିପୁଳ ବ୍ୟବହାର କରିଛନ୍ତି । ବଙ୍ଗଳା ସାହିତ୍ୟ ନୁହେଁ; ଓଡ଼ିଆ ସାହିତ୍ୟ ସର୍ଜନ ପାଇଁ ତନ୍ମଧ୍ୟରେ ଓଡ଼ିଶାକୁ ନାନାଭାବେ ରୂପାୟିତ କରିବା ପାଇଁ ଭୂଦେବ ବାବୁଙ୍କ ପରାମର୍ଶ ରାଧାନାଥଙ୍କୁ ପ୍ରଣୋଦିତ କରିଛି । ପୁରାତନରେ ନୂତନତା ଆହୃତରେ ମୌଳିକତା ଫୁଟାଇ ତାଙ୍କ ପ୍ରତିଭା ଏକ ନୂତନ କାବ୍ୟମଣ୍ଡଳ ସୃଷ୍ଟିରେ ତତ୍ପର ହୋଇଉଠିଛି । କାବ୍ୟରଚନା ଲାଗି ଗଳ୍ପାଂଶ ସମେତ ଭାବରାଜି ସେ ବିଭିନ୍ନ ସାହିତ୍ୟରୁ ଗ୍ରହଣ କରିଥିଲେ । ସେହି ଦୃଷ୍ଟିରୁ ତାଙ୍କ ରଚିତ କାବ୍ୟ ସମୂହରେ ପାଶ୍ଚାତ୍ୟ ପ୍ରଭାବର ପ୍ରତିଫଳନ ଖୁବ୍ ସ୍ପଷ୍ଟ ।

କେଦାର ଗୌରୀ (୧୮୮୫) କବିବର ରାଧାନାଥଙ୍କର ପ୍ରଥମ କଥାକାବ୍ୟ । ଏହି କଥାବସ୍ତୁ ରୋମାନ କାହାଣୀ ସୂତ୍ରରୁ ସଂଗୃହୀତ । ରୋମାନ୍ କବି ଓଭିଡ୍‌ଙ୍କର ପିରାମସ୍ ଓ ଥିସ୍‌ବିଙ୍କର ପ୍ରଣୟ କାହାଣୀ ଏଇ କାବ୍ୟର ଆଧାର । ଓଭିଡ୍‌ଙ୍କର ରୋମାନ୍‌ସ୍ ଧର୍ମୀ ଏଇ ଗଳ୍ପଟିକୁ ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ କବିମାନେ ସେମାନଙ୍କର ରଚନାରେ ବିନିଯୋଗ କରିଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଚଷରଙ୍କର 'Legend of Good Women'ରେ ଏହାର ଅସ୍ତିକଙ୍କାଳ ପ୍ରାପ୍ତ ହୁଏ ଏବଂ ସେକ୍ସପିୟରଙ୍କର 'Midsummer's Night Dream' ନାଟକର ଏକ ସଂଳାପରେ ଏଇ ପ୍ରଣୟ କାହାଣୀଟି ଉଲ୍ଲେଖ କରାଯାଇଛି ।

ରାଧାନାଥ ଗଳ୍ପଦିଗରୁ ଓଭିଡ୍ ଓ ସ୍ଥଳ ବିଶେଷରେ ବର୍ଣ୍ଣନାଧାରୀ ଦିଗରୁ ସେକ୍ସପିୟରଙ୍କଠାରୁ ପ୍ରୟୋଜନୀୟ ଉପାଦାନ ଆହରଣ କରିଥିବା ଜଣାଯାଏ ।୪୬।

ଓଭିଡ୍‌ଙ୍କର କବିତାଟି ୧୧୦ ପଙ୍‌କ୍ତିରେ ଓ ରାଧାନାଥଙ୍କର କବିତା ୧୦୮ ଧାଡ଼ିରେ ସମାପ୍ତ ହୋଇଛି । ଅଂଗସଜ୍ଜା ଦୃଷ୍ଟିରୁ ଉଭୟଙ୍କ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ ।

ରାଧାନାଥଙ୍କ କାବ୍ୟରେ ପୁରାଣର ସମର୍ଥନ ନାହିଁ । ତେଣୁ ସେ ଇତିହାସର ସୂତ୍ରକୁ ସମ୍ବଳ କରି ଭୁବନେଶ୍ୱରର ଖ୍ୟାତି ସଂପର୍କୀୟ ଏକ କାବ୍ୟିକ ପ୍ରହେଳିକା ସୃଷ୍ଟି ଦ୍ୱାରା ପାଶ୍ଚାତ୍ୟ କଥନଟିକୁ ଏ ଦେଶର ବୋଲି ସୂଚେଇ ଦେବାକୁ କୌଶଳ କରିଛନ୍ତି । ସେହି ହେତୁ ତାଙ୍କ ଦୃଷ୍ଟିରେ ବ୍ୟକ୍ତିଠାରୁ ସ୍ଥାନ ହୋଇଛି ବଡ଼ । ତଥାପି ଏ କ୍ଷେତ୍ରରେ ଦୃଷ୍ଟିଗତ ବ୍ୟବଧାନ ଥିଲେ ସୁଦ୍ଧା ରଚନା ରୂପର ମୂଳ ପ୍ରେରଣା ଯେ ଓଭିଡ୍‌ଙ୍କ ଠାରୁ ସଂଗୃହୀତ ଏଥିରେ କୌଣସି ସନ୍ଦେହ ନାହିଁ ।୪୭।

ପାଶ୍ଚାତ୍ୟ କବି ମନୀଷୀ ଓଭିଡ୍ ତାଙ୍କ ବିଶ୍ୱବିସ୍ତୃତ ଗ୍ରନ୍ଥ 'Metamorphoses' ଗ୍ରନ୍ଥରେ ପ୍ରକାଶ କରିଛନ୍ତି:-

Within the town of whose huge walls
So monostrous high and thick,
The fame is given semiramis for making them of brick
Dwelt hard together two young folk in houses
Joined so near that under all one roof well nigh
both twain conveyed were. ।୪୮।

କବିଙ୍କ ଅନୁସରଣରେ ରାଧାନାଥ ରାୟ 'କେଦାର ଗୌରୀ' କାବ୍ୟରେ ପ୍ରକାଶ କରିଛନ୍ତି :-

'ହିମାଚଳ ଶିରେ ଲଲାଟ କେଶରୀ
ରଚିଲେ ରମ୍ୟ ନଗର
ଉତ୍କଳ ଭୁବନେ ଦେଶେ ଦେଶେ ଖ୍ୟାତ
ହେଲା ଭୁବନ ଈଶ୍ୱର ।
ବିନ୍ଦୁ ସରୋବର ଚାରି ପାଶେ ସୌଧ
ସୌଧ ଅନ୍ତେ ଘୋରବନ
ଇନ୍ଦୁ ଚାରିଦିଗେ ଧଳା ମେଘମାଳା
ନୀଳ ଗଗନେ ଯେସନ ।୪୯।

ଭୁବନେଶ୍ୱର ନଗର ଓ ତାର ନିର୍ମାତା ଲଲାଟ କେଶରୀଙ୍କ ବର୍ଣ୍ଣନାରେ ଆହରଣର ମୁଦ୍ରାଙ୍କ ସ୍ପଷ୍ଟ । ମାତ୍ର ଅନ୍ୟାନ୍ୟ ଆନୁଷଙ୍ଗିକ ପଙ୍‌କ୍ତିରେ ରଚନାର ମୌଳିକତା ନିହିତ । କବି କେଦାରଗୌରୀଙ୍କର ପରିଚୟାତ୍ମକ ଆତ୍ମଲିପି ରଚନା କଲାବେଳେ ଓଭିଡ୍‌ଙ୍କର ପରିବେଷଣ ଧାରାଦ୍ୱାରା ପରିଚାଳିତ ହୋଇଛନ୍ତି । ଓଭିଡ୍‌ଙ୍କ ଉପସ୍ଥାପନ ଅନୁକ୍ରମରେ ସେ କେଦାର ଗୌରୀଙ୍କୁ ଉପସ୍ଥାପିତ କରିଛନ୍ତି । କବି ଓଭିଡ୍ 'Metamorphoses' ଗ୍ରନ୍ଥରେ ପ୍ରକାଶ କରିଛନ୍ତି :-

The name of him was Pyramus and Thisbe called was she so fair a man in all the East was none alive as he, Nor ne'er a woman, maid nor wife in beauty like to her. ।୫୦।

ତଦନୁରୂପ କବି ରାଧାନାଥ ରାୟ 'କେଦାରଗୌରୀ' କାବ୍ୟରେ ପ୍ରକାଶ କରିଛନ୍ତି: -

'କେଦାର ଗଉରୀ କିଶୋର କିଶୋରୀ
ଥିଲେ ଭୁବନ - ଈଶ୍ୱରେ
ତରୁଣୀ ତିଳକ ଗଉରୀ, ତରୁଣ
ତିଳକ କେଦାର ନରେ ।୫୧।

ପିତାମାତାଙ୍କର ବାରଣ ହେତୁ ପ୍ରେମିକ ପ୍ରେମିକାଙ୍କ ମିଳନ ଆକାଙ୍‌କ୍ଷା ବୃଦ୍ଧି ପାଇଛି । ସେତେବେଳେ ସେମାନଙ୍କ ମଧ୍ୟସ୍ଥ କାନ୍ଥର ରନ୍ଧ୍ରଟିଏ ହିଁ ଏମାନଙ୍କୁ ଭେଟ ସମ୍ଭାଷଣର ସୁଯୋଗ ଦେଇଛି । ନିର୍ମାଣ କାଳରୁ ପ୍ରାଚୀର ସନ୍ଧିରେ ଅଜାଣତରେ ରନ୍ଧ୍ରଟିଏ ରହିଯାଇଥିବା କଥା ରାଧାନାଥ ତାଙ୍କ 'କେଦାର ଗୌରୀ' କାବ୍ୟରେ ଉଲ୍ଲେଖ କରିଛନ୍ତି । ଏହି ପ୍ରସଂଗଟି ଓଭିଡ୍‌ଙ୍କ ଠାରୁ ଆହୃତ ହୋଇଛି ଏବଂ ବର୍ଣ୍ଣନା କ୍ରମରେ ଏକା ରୂପତ୍ୱ ଲକ୍ଷିତ ହୋଇଛି ଉଭୟଙ୍କ କାବ୍ୟାଂଶରୁ ଏହା ସ୍ପଷ୍ଟ ପ୍ରତିପନ୍ନ ହୋଇଥାଏ । ପୁଣି କାନ୍ଥ ସହିତ ପ୍ରେମିକ ଯୁଗଳଙ୍କର ସଂଳାପ; ଚୁମ୍ବନ ସୁବିଧା ଦେବା ପାଇଁ ତାକୁ ଆତୁର ନିବେଦନ, ସେମାନଙ୍କ ପ୍ରତି କିଞ୍ଚିତ୍ ହିତ ସାଧନ କରୁଥିବାରୁ କାନ୍ଥଠାରେ ସେମାନଙ୍କର ଋଣ ସ୍ୱୀକୃତି ଇତ୍ୟାଦି ଅଂଶର ଉପସ୍ଥାପନରେ ଉଭୟଙ୍କ ଭିତରେ ଯଥେଷ୍ଟ ମେଳ ଥିବାରୁ ରାଧାନାଥ ଏହାକୁ ଓଭିଡ୍‌ଙ୍କ ଠାରୁ ଆହରଣ କରିଥିବା ଜଣାଯାଏ ।୫୨।

ପାଶ୍ଚାତ୍ୟ କବି ଓଭିଡ୍ 'Metamorphoses' ଗ୍ରନ୍ଥରେ ପ୍ରକାଶ କରିଛନ୍ତି;-

The wall that parted house from house had
Riven there in a Granny, which shrunk at making of the wall.
This fault not marked of any of many hundred
years before what doth not love espy ?
Those Lovers first of all found out and made a way.
Where by to talk together secretly and through the same did go their loving whisperings very light and safely to and fro.।୫୩।

କବି ରାଧାନାଥ ରାୟ 'କେଦାରଗୌରୀ' କାବ୍ୟରେ ପ୍ରକାଶ କରିଛନ୍ତି :-

'ନିର୍ମାଣ ଦିନରୁ ପ୍ରାଚୀର ସନ୍ଧିରେ
        ରନ୍ଧ୍ରଥିଲା ଅଲକ୍ଷରେ
ତରୁଣ ତରୁଣୀ ଝୁରୁଥାନ୍ତି ତହିଁ
        କରୁଣ-ଅସ୍ଫୁଟ-ସ୍ୱରେ ।୫୪।

ମିଳନର ବାଧକ ଏଇ ନିଦାରୁଣ କାନ୍ଥ ହେତୁ ପ୍ରଣୟ ପିପାସୀଙ୍କର ଅନ୍ତରୋଦନ ଏବଂ ମେଲାଣି ମୁହୂର୍ତ୍ତରେ ସେମାନଙ୍କର ଇନ୍ଦ୍ରିୟ ଲାଳସାର ସ୍ୱାଭାବିକ ପରିସ୍ଫୁଟନରେ ରାଧାନାଥଙ୍କର ବର୍ଣ୍ଣନା ଓଭିଡ୍‌ଙ୍କ ସଦୃଶ ହୋଇଛି । କବି ମନୀଷୀ ଓଭିଡ୍ ତାଙ୍କ ଅନବଦ୍ୟ ଗ୍ରନ୍ଥ 'Metamorphoses' ଗ୍ରନ୍ଥରେ ପ୍ରକାଶ କରିଛନ୍ତି;-

'O spite ful wall' said they, why dost thou part us Lovers thus? What Matter were it if that thou Permitted both of us in arms each other to embrace ?

Or if thou think that this were over much, yet mightest thou art least make room to kiss, And yet thou shalt not find us churl; We

think our selves on debt for the same piece of courtesy, in vouching safe to let our saying to our friendly ears thus freely come and go.।୫୫।

କବି ରାଧାନାଥ ରାୟ 'କେଦାରଗୌରୀ' କାବ୍ୟରେ ତଦନୁରୂପ ପ୍ରକାଶ କରିଛନ୍ତି:-

କହନ୍ତି କାନ୍ଥକୁ ନିଦାରୁଣ ଏଥି
 କେଉଁ ବଡ଼ ପଣ ତୋ'ର ?
ତନୁରୁ ତନୁକୁ ଅନ୍ତର କରିତୁ
 ଲଭିବୁ ଦୁଷ୍କୃତ ଘୋର ।
ତନୁ ମେଳେ ବାଧା ଦେଇ ଆଚରିଲୁ
 ଭଗାରିପଣ ଆମ୍ଭର
ଲବେ ହୋଇ ଦ୍ୱିଧା ଚୁମ୍ବନ ସୁବିଧା
 ବିଧାନେ ସୁଦୟା କର ।
ସାଧି ଅଛୁ ହିତ କାନ୍ଥ ତୁ ବହୁତ
 ଋଣୀ ଆମ୍ଭେ ତୋହଠାରେ ।୫୬।

କବି ରାଧାନାଥ ପାଶ୍ଚାତ୍ୟ ସାହିତ୍ୟକୁ ନେଇ କାବ୍ୟ ସୃଷ୍ଟି କରିଛନ୍ତି । ରାଧାନାଥଙ୍କର ଆଠଗୋଟି ବିଶିଷ୍ଟ କାବ୍ୟ କିପରି ଇଂରାଜୀ ସାହିତ୍ୟର ବିଷୟବସ୍ତୁ ଉପରେ ପରିକଳ୍ପିତ, ତାହା ବିଦ୍ୱାନ ଗବେଷକ ପ୍ରଦର୍ଶନ କରିଛନ୍ତି । କବିଙ୍କର ଯେଉଁ କାବ୍ୟଗୁଡ଼ିକ ଉପରେ ଇଂରାଜୀ ସାହିତ୍ୟ ରଚନାର ପ୍ରଭାବ ପଡିଛି, ତାହା ଆଲୋଚନା କଲେ ସହଜରେ ଅନୁମାନ କରିହେବ ।୫୭।

କେଦାରଗୌରୀ (Pyramus and Thisbe) ଚନ୍ଦ୍ରଭାଗା (Daphne and Apllo) ପାର୍ବତୀ (Iliod Agamemnon, Hamlet and Cence cymbeline) ଯଯାତି କେଶରୀ (Simbelion) ଉଷା (Hippomenes and Atlanta) (The Earthly Paralisc) ନନ୍ଦିକେଶ୍ୱରୀ (Seigh of Corinth) ମହାଯାତ୍ରା (Paradise Lost) ଚିଲିକା (Lady of the lake) ପ୍ରଭୃତି ପାଶ୍ଚାତ୍ୟ କାବ୍ୟ ଗ୍ରନ୍ଥ ପ୍ରତି ପ୍ରଭାବିତ ହୋଇ କବିବର ଆହରଣରେ ନୂତନତା ଓ ଅନୁକରଣରେ ମୌଳିକତା ପ୍ରଦର୍ଶନ କରିଛନ୍ତି ।

ଭକ୍ତକବି ମଧୁସୂଦନ ରାଓ ରାଧାନାଥଙ୍କ ସାହିତ୍ୟ ସାଧନା କାଳର ଅନ୍ୟତମ କବିପୁରୁଷ । ରାଧାନାଥ ତାଙ୍କର କାବ୍ୟଗୁରୁ । ତଥାପି କାବ୍ୟ ଗୁଣରେ ତାଙ୍କର ସୃଷ୍ଟି ସ୍ୱତନ୍ତ୍ର । ସେ ଋଷିକବି, ତାଙ୍କ ସାହିତ୍ୟ ଉଚ୍ଚ ଭାଗବତ ବୋଧ ଓ ଗଭୀର ଭାବଐଶ୍ୱର୍ଯ୍ୟର ପ୍ରଶାନ୍ତ ସମୁଦ୍ର । ଏହା ଦେଶୀୟ ସାରସ୍ୱତ ଧନରେ ଯେମିତି ପରିପୁଷ୍ଟ ଓ ପୁଣ୍ୟତର, ବିଦେଶୀ ଉପାଦାନରେ ସେମିତି ଅଭିନବ ଓ ଅଭିଜାତ ।୫୮।

ସାମଗ୍ରିକ ଭାବେ ଦେଖିଲେ ଜଣାଯାଏ ଯେ ବ୍ରହ୍ମବାଦୀ କବି ମଧୁସୂଦନ ଆମ କାବ୍ୟ ଭୂମିରେ ପାଶ୍ଚାତ୍ୟ କାବ୍ୟ ଶୈଳୀର ପ୍ରବର୍ତ୍ତନ ସମେତ କେତେକ ସ୍ଥଳରେ ଆପଣା କବିତାରେ ପାଶ୍ଚାତ୍ୟ ଭାବ ରୁଚିର ବିନିଯୋଗ କରିଛନ୍ତି । ନୂତନ ଆଙ୍ଗିକ ପ୍ରୟୋଗ କ୍ଷେତ୍ରରେ ସ୍ପେନ୍‌ସରିୟାନ ଷ୍ଟାଞ୍ଜା, ଏକାନ୍ତର ମେଳ, ଅମିତ୍ରାକ୍ଷର ଛନ୍ଦ ଏବଂ ପାଶ୍ଚାତ୍ୟ ରୀତି କବିତାର ବିବିଧ ଶୈଳୀ; ମଧୁସୂଦନଙ୍କ କାବ୍ୟ ସାହିତ୍ୟରେ ପରୀକ୍ଷିତ ହୋଇଛି । ସ୍ଥଳବିଶେଷରେ ସେ ରୁଚି ଅଭିମୁଖୀଭାବ ଆହରଣ କରି ଆପଣା କବିତାରେ ପ୍ରୟୋଗ କରିଛନ୍ତି । ମଧୁସୂଦନଙ୍କ କବିତାବଳୀ ଅନ୍ତର୍ଭୁକ୍ତ ବିଭିନ୍ନ କବିତାରେ ପାଶ୍ଚାତ୍ୟ ପ୍ରଭାବର ମୁଦ୍ରାଙ୍କ ଏବଂ ତାଙ୍କ ବ୍ୟଙ୍ଗ କବିତାରେ ପାଶ୍ଚାତ୍ୟାନୁସରଣର ରୂପରେଖ ବିଷୟରେ ଆଲୋଚନା କରାଯାଇଛି ।୫୯।

କବି ମଧୁସୂଦନ ରାଓଙ୍କର ଭାବଗମ୍ଭୀର କବିତା ମାନଙ୍କରେ ପାଶ୍ଚାତ୍ୟ ଅନୁସରଣର ଦୃଷ୍ଟାନ୍ତ ପରିଲକ୍ଷିତ ହୋଇଥାଏ । 'ନଦୀପ୍ରତି' କବିତାରେ କବି ଟେନିସନ୍‌ଙ୍କର 'The Brook' କବିତାର ପ୍ରଭାବ ନିହିତ । ଟେନିସନ୍‌ଙ୍କର Babbling Brook, ଏଠି କଳକଳନାଦିନୀ ତଟିନୀ ରୂପେ କଳ୍ପିତ । କବି ମଧୁସୂଦନ 'ନଦୀପ୍ରତି' କବିତାରେ ପ୍ରକାଶ କରିଛନ୍ତି;-

ଗିରିବର ନନ୍ଦିନୀ ଅଟୁତୁହି ତଟିନୀ / ଗଭୀର ଗହ୍ୱର ଗର୍ଭରେ
ଥିଲୁ ତୁ ଗର୍ଭବାସେ ନିରୋଳେ ଅପ୍ରକାଶେ / ଲୋକ ଲୋଚନ ଅଗୋଚରେ ।୬୦।

ପାଶ୍ଚାତ୍ୟ କବିମନୀଷୀ ଟେନିସନ୍ 'The Brook' କବିତାରେ ପ୍ରକାଶ କରିଛନ୍ତି:-

I come from haunts of coot and hern
I make a sudden sally
And sparkle out among the fern
To bicker down a valley.।୬୧।

ମଧୁସୂଦନଙ୍କ ନଦୀ, ଶୈଶବକାଳରେ ଥିଲା ସ୍ୱପ୍ନମଗ୍ନ । ଏପରି ସ୍ୱପ୍ନାଳୁଭାବ ଟେନିସନ୍‌ଙ୍କ ବ୍ରୁକ୍‌ଠାରେ ଲକ୍ଷ୍ୟ କରାଯାଏ ନାହିଁ ବରଂ ରବୀନ୍ଦ୍ରନାଥଙ୍କର ନିର୍ଝରରେ ସ୍ୱପ୍ନଭଙ୍ଗ କବିତାରୁ ଏହାର ଉଦ୍ଭବ । ତଥାପି ଅନ୍ୟତ୍ର ଟେନିସନ୍‌ଙ୍କର ପ୍ରଭାବ ମଧୁସୂଦନଙ୍କଠାରେ ପରିଦୃଷ୍ଟ । କବି ମଧୁସୂଦନ 'ନଦୀପ୍ରତି' କବିତାରେ ପ୍ରକାଶ କରିଛନ୍ତି:-

କଳକଳ ନାଦରେ ତେଣୁ ତୋ କଣ୍ଠୁ ହର୍ଷଭରେ
ସ୍ଫୁରିଲା ଗୀତ ଅନର୍ଗଳ ।୬୨।

Alfred Lord Tennyson ତାଙ୍କର ଅନବଦ୍ୟ ଗ୍ରନ୍ଥ 'The Brook'ରେ ପ୍ରକାଶ କରିଛନ୍ତି:-

I Chatter, Chatter as I flow
To join the brimming river

...............................

For men may come and men may go

But I go on for ever.'।୬୩।

ନିର୍ଝରର ଗତିରେ ଅଛି ଅସ୍ପଷ୍ଟ ଗୁଞ୍ଜରଣ, ନଦୀଠାରେ କଳ ନାଦ । ଏମାନଙ୍କ ଗତିର ସ୍ୱଧର୍ମ ପ୍ରକାଶ କ୍ଷେତ୍ରରେ ଦୁଇ କବିଙ୍କ ମଧ୍ୟରେ ସାମ୍ୟ ନିହିତ । ପୁଣି ଯାତ୍ରା ପଥରେ ବ୍ରୁକ୍ କ୍ଷୁଦ୍ର ସ୍ରୋତ ଧାର କିମ୍ବା ବିବିଧ ବସ୍ତୁ ପୁଞ୍ଜକୁ ଘେନି ବହିଗଲା ପରି ନଦୀ କେତେ ଗିରିକୁମାରୀ ତଟିନୀ ସଖୀଙ୍କ ସମେତ ପତ୍ର, କୁସୁମ ଫଳ ଦୁର୍ବାଦଳ ଇତ୍ୟାଦିଙ୍କୁ ଅଙ୍ଗଲଗା କରି ବହିଯାଉଥିବାର ଦୃଶ୍ୟ ପ୍ରଦତ୍ତ । ମଧୁସୂଦନଙ୍କ ନଦୀ ପ୍ରବାହକାଳରେ ବହୁବିଘ୍ନ ଓ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛି । କିନ୍ତୁ ସେ ସବୁକୁ ଅତିକ୍ରମ କରି ଏହାର ସାଗର ସଙ୍ଗମ ପାଇଁ ଅପୂର୍ବ ଉଲ୍ଲାସ ଓ ଉନ୍ମାଦନାରେ ଆଗେଇ ଯାଇଛି ଯେପରି ଟେନିସନ୍ଙ୍କ ନିର୍ଝର ।୬୪।

Lord Alfred Tennyson ତାଙ୍କର ଅନବଦ୍ୟ ଗ୍ରନ୍ଥ 'The Brook'ରେ ପ୍ରକାଶ କରିଛନ୍ତି;-

And here and there a foamy flake

Upon me as I travel

With many a silvery water break

Above the golden gravel. ।୬୫।

ବ୍ରହ୍ମବାଦୀ କବି ମଧୁସୂଦନ ତାଙ୍କ 'ନଦୀପ୍ରତି' କବିତାରେ ପ୍ରକାଶ କରିଛନ୍ତି:-

କେତେ ଗିରି କୁମାରୀ ତଟିନୀ ସୁକୁମାରୀ

ମିଳିଲେ ଆସି ତୋ' ସହିତ ।୬୬।

ସେହିପରି କବିଙ୍କର 'ଆକାଶ ପ୍ରତି' କବିତାଟି ଇଂରେଜ କବି ସେଲିଙ୍କର 'Ode to heaven' କବିତାର ଅଂଶ ବିଶେଷ ଦ୍ୱାରା ପ୍ରଭାବିତ ହୋଇଥିବା ମନେହୋଇଛି । ମଧୁସୂଦନଙ୍କ ଦୃଷ୍ଟିରେ ଏହା; ମହା ଆକାଶ, ଅନନ୍ତ ଓ ଅପାର, ତାହାଙ୍କ ପ୍ରକାଶ ମଧ୍ୟ ଖୁବ୍ ଗମ୍ଭୀର ଓ ମହାନ । ଏହି ଗଗନ ସମସ୍ତ ସୃଷ୍ଟି କ୍ରିୟାର ସାକ୍ଷୀ, ଏପରିକି ପୃଥିବୀ ଜନ୍ମର ସ୍ରଷ୍ଟା ମଧ୍ୟ । ଗ୍ରହ ଚନ୍ଦ୍ର ସୂର୍ଯ୍ୟ ତାରା ସମେତ କୋଟି କୋଟି ଜ୍ୟୋତି ପୁଞ୍ଜ ତାହାଙ୍କ ଦେହରେ ପ୍ରଭାବନ୍ତ ହୋଇଥାନ୍ତି ଏବଂ ସେ କାଳ କାଳକୁ ଏକ ସର୍ବବ୍ୟାପୀ ଅବିନଶ୍ୱର ଆତ୍ମାଭଳି ବିରାଜିତ । ପୁଣି ଏହା ହେଉଛି ପରମାତ୍ମାଙ୍କ ଆବାସଭୂମି । ଏଠି ଶେଲିଙ୍କ ସହ ମଧୁସୂଦନଙ୍କ କବିଚେତନା ଓ ବର୍ଣ୍ଣନା ଲିପିର ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଇଥାଏ । ସେଲି Heavenକୁ ପରମାତ୍ମାଙ୍କର ଅଧିଷ୍ଠାନ କ୍ଷେତ୍ର ବୋଲି ବିବେଚନା କରି ତହିଁ ଯୋଗୁ ଏହା ପୁରୁଷାନୁକ୍ରମେ ଜୀବଙ୍କ ଉପାସ୍ୟ ହେଉଥିବା ବୋଧ କଲାବେଳେ, ମଧୁସୂଦନ ଆକାଶ ଦର୍ଶନରେ ପରମାତ୍ମାଙ୍କ ଉପସ୍ଥିତି ଅନୁଭବ କରିଛନ୍ତି ଏବଂ କବି ଚିତ୍ତରେ ଆକାଶ ଅନୁଭୂତି ସହିତ ପରମ ଆନନ୍ଦର ଅନୁଭୂତି ଜାତ ହୋଇଛି ।୬୭।

ଭକ୍ତକବି ମଧୁସୂଦନ 'ଆକାଶ ପ୍ରତି' କବିତାରେ ପ୍ରକାଶ କରିଛନ୍ତି:-

ସୃଷ୍ଟିର ପ୍ରଥମ ହାସ୍ୟ ତୋହରି ଗୋଚର
ପ୍ରଥମ ଜୀବର ସୃଷ୍ଟି ତୋର ସନ୍ନିଧାନେ
ସୃଷ୍ଟି ଆଦି ନରନାରୀ ଅଗ୍ରତେ ତୋହର
ସର୍ବଦର୍ଶୀ ଅଟୁ ତୁହି ବିଧିର ବିଧାନ ।୬୮।

ପାଶ୍ଚାତ୍ୟ କବି P.B. Shelley ତାଙ୍କ ଅନନ୍ୟ କୃତି 'Ode to Heaven' କବିତାରେ ପ୍ରକାଶ କରିଛନ୍ତି :-

Even thy name is as a god
Heaven ! for thou art the abode
Of that power which is the glass
Where in man his nature sees,
Generations as they pass
Worship thee with bended knees
Their unremaining gods and they
Like a river roll away
Thou remainest such - always୬୯।

କବିଙ୍କର 'ଉଦ୍‌ବୋଧନ' କବିତାଟି 'ଋଷି ପ୍ରାଣେ ଦେବାବତରଣ'ରେ ମିଲ୍‌ଟନ୍‌ଙ୍କର 'On the morning of Chirst's Nativity' କବିତାର ଛାୟା ପ୍ରତିଫଳିତ । ମିଲଟନ୍‌ଙ୍କ କବିତାର (Prelude) ପ୍ରଥମ ଚାରୋଟି ଶ୍ଳୋକ ଅଂଶରେ କବି Muse ଦେବୀଙ୍କୁ ଖ୍ରୀଷ୍ଟଙ୍କ ଜନ୍ମର ଆଲେଖ୍ୟ ଗାନକରିବା ନିମିତ୍ତ ଯଥାର୍ଥ ଶକ୍ତି ଓ ସାମର୍ଥ୍ୟ ପ୍ରାପ୍ତି ପାଇଁ ଉଦ୍‌ବୋଧିତ କଲାଭଳି ମଧୁସୂଦନ ଅମୃତମୟୀ ଜନନୀ ଭାରତୀଙ୍କୁ ଆର୍ଯ୍ୟଋଷିଙ୍କ ମୁଗ୍ଧ ପ୍ରାଣରେ ଦେବାବତରଣର ସଂଗୀତଗାନ ପାଇଁ ଶକ୍ତି ଦେବାକୁ ଉଦ୍‌ବୋଧିତ କରିଛନ୍ତି ।୭୦।

ଏହି କବିତାର ପ୍ରାରମ୍ଭ ଭାଷଣ ସଂଯୋଜନା ଧାରା ମଧୁସୂଦନ ମିଲଟନ୍‌ଙ୍କ ପ୍ରେରଣାରୁ ଲାଭ କରିଥିବା ମନେହୁଏ । ପୁଣି ସରସ୍ୱତୀ ନଦୀତଟରେ ଉଷା ବର୍ଣ୍ଣନା ପାରମ୍ପରିକ ଭାରତୀୟ ଭୂମିକା ଉପରେ ଗଠିତ ହୋଇଥିଲେ ମଧ୍ୟ ଏହାର ଅନ୍ତର୍ଲିପିରେ ମିଲଟନ୍‌ଙ୍କ କବିତାସ୍ଥ ଉଷା ବର୍ଣ୍ଣନାଂଶର ଶକ୍ତିସ୍ୱର ନିହିତ ।

'On the Morning of Chirsts Nativity' କବିତାରେ କବି ମିଲଟନ୍ ଯଥାର୍ଥରେ ପ୍ରକାଶ କରିଛନ୍ତି :-

Say, Heav'nly Muse, Shall not thy sacred vein
Afford a present to the infant God ?
Hast thou no verse, no hyme or solemn strain

..............................

To Welcome him to this new abode,
Now while the heav'n by the Sun's team untrod,
Hath took no point of the approaching light,
And all the spangled host keep watch in squardrons bright. ।୭୧।

ବ୍ରହ୍ମବାଦୀ କବି ମଧୁସୂଦନ 'ଋଷିପ୍ରାଣେ ଦେବାବତରଣ' କବିତାରେ ଅନୁରୂପ ପ୍ରକାଶ କରିଛନ୍ତି :-

ଫେଡ଼ି ଅତୀତର ଦ୍ୱାର ଆଦିମ ଆର୍ଯ୍ୟ ସଂସାର
ତୋ' ଆଦିମ ଲୀଳାଭୂମି ଦେଖାଅ ମା ଆଣି
ଦେଖୁ ସେହି ପୁଣ୍ୟାଲେଖ୍ୟ ଏପ୍ରାଣ ବଖାଣି
ଆର୍ଯ୍ୟ ଋଷି ମୁଗ୍‌ଧ ପ୍ରାଣେ ଦେବାବତରଣ
ମହୋଦର ପୁଣ୍ୟ ଚିତ୍ର କରି ଦରଶନ
ଲଭିବି ବାଞ୍ଛିତ ଫଳ ଏ ଚିତ୍ତ ହେବ ନିର୍ମଳ
ଭଜିବି ଭକ୍ତିଭରେ ତୋର ଶ୍ରୀଚରଣେ
ଦୟାକର ଦୟାମୟୀ ମୁହିଁ ଅକିଞ୍ଚନ ।୭୨।

ମଧୁସୂଦନଙ୍କର ଶିଶୁମନ ଦର୍ଶନରେ ଯେଉଁ ଦେବୋତାଲବ୍‌ଧି ଲାଭ କରିଛି, ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛି ତାଙ୍କର 'ନବଜାତ ଶିଶୁ ଦର୍ଶନରେ' କବିତା । ଉକ୍ତ କବିତାରେ ୱାଡସୱାର୍ଥଙ୍କ କବିତାର ଭାବନୁସରଣ ମୁଦ୍ରାଙ୍କ ସୁସ୍ପଷ୍ଟ ।

କବି William Wordsworth - Ode to Intimation of Immortality କବିତାରେ ପ୍ରକାଶ କରିଛନ୍ତି:-

The heavens laugh with you in your jubilee
Heaven lies about us in our infancy !
Thou little child, Yet glorious in the might
Of heaven-born freedom on thy being's height.।୭୩।

ପାଶ୍ଚାତ୍ୟ କବିଙ୍କ ସ୍ୱରରେ ସ୍ୱର ମିଳାଇ କବି ମଧୁସୂଦନ 'କୁସୁମାଞ୍ଜଳି' କବିତା ସଂକଳନର 'ନବ ବସନ୍ତ ଭାବନା' କବିତାରେ ପ୍ରକାଶ କରିଛନ୍ତି :-

ଅନାଇଣ ବାରେ ଦେଖରେ ଜୀବ ! ନିଜ ଅନ୍ତରେ
ଅନନ୍ତ ଜୀବନ ଆଧାର ସତ୍ୟ ଶିବ ସୁନ୍ଦରେ
ଅନନ୍ତ ସରସ ବସନ୍ତ ମଧୁମୟ ଉତ୍ସବ
ଅନନ୍ତ ଜୀବନ ଯୌବନ ମହାନନ୍ଦ ବିଭବ ।୭୪।

ଉନବିଂଶ ଶତକର ଶେଷ ଦଶକକୁ ଓଡ଼ିଆ କାବ୍ୟ ସାହିତ୍ୟରେ କବି ନନ୍ଦକିଶୋର ବଳ ପାଶ୍ଚାତ୍ୟ କାବ୍ୟ ବସ୍ତୁର ଆହରଣ ଓ ତାହାର ଦେଶାନୁକୂଳ ଆରୋପଣକୁ ଯଥାସମ୍ଭବ

ସଂକୁଚିତ କରିଦେଇଥିଲେ । ଯଥାପି ଆପଣା କାବ୍ୟ କବିତାରେ ପାଶ୍ଚାତ୍ୟ ସୃଷ୍ଟି କୌଶଳର ଅନୁସରଣ ଏବଂ ସ୍ଥଳ ବିଶେଷରେ ପାଶ୍ଚାତ୍ୟ କାବ୍ୟାଂଶର ସଂପ୍ରସାରଣ କିମ୍ବା ସଂଯୋଜନାରୀତି ଦ୍ୱାରା ପ୍ରଭାବିତ ହୋଇପଡ଼ିଥିଲେ । କବି ଜୀବନର ଉନ୍ମେଷ କାଳରୁ ତାଙ୍କ କାବ୍ୟକବିତାରେ ପାଶ୍ଚାତ୍ୟ ଆଭିମୁଖ୍ୟର ପ୍ରତିଫଳନ ପରିଦୃଷ୍ଟ ହୋଇଥିଲା ।୭୫।

କବିଙ୍କର ଅନ୍ୟାନ୍ୟ କବିତା ମାନଙ୍କ ପରି ପଲ୍ଲୀଚିତ୍ର କବିତାଂଶରେ ପାଶ୍ଚାତ୍ୟ କବିଙ୍କ କାବ୍ୟବୋଧ ଅନୁସରଣର ଦୃଷ୍ଟାନ୍ତ ଲକ୍ଷ୍ୟ କରିହୁଏ । ଏହାର ପରିକଳ୍ପନା ପାଇଁ କବି ଆପଣା ଅନୁଭୂତି ଓ ଆବେଗ ନିକଟରେ ଯେମିତି ଦାୟୀ ପାଶ୍ଚାତ୍ୟ ସୃଷ୍ଟି କଳା ନିକଟରେ ସେମିତି ଋଣୀ । କବିଙ୍କ କାଳରୁ ଏ ଦେଶ ମାଟିରେ ନଗର ସଭ୍ୟତାର କ୍ରମ ଅଭ୍ୟୁଦୟ ଘଟି ପଲ୍ଲୀର ପୁରାତନତା ନଷ୍ଟ ହେଉଥାଏ । ଏତିକି ବେଳେ ତା'ର ସଂରକ୍ଷଣ ପାଇଁ କବି ଉତ୍କଣ୍ଠା ପ୍ରକାଶ କରିଥିଲେ ଏବଂ ସେଇଠି ଜୀବନକୁ ଖୋଜି ପାଇବାର ପ୍ରୟାସ କରିଥିଲେ । ଏହା ଅନୁଭୂତି ପ୍ରେରିତ ହେଲେବି ଏହାର ରୂପାୟନ ଅନ୍ତରାଳରେ ଇଂରେଜ ରୋମାଣ୍ଟିକ କାବ୍ୟାଦର୍ଶର ପ୍ରଭାବ ନିହିତ । 'ପଲ୍ଲୀଚିତ୍ର'ର ପ୍ରସ୍ତାବନା ଅଂଶରୁ ଏପରି ସୃଷ୍ଟିର ସୂଚନା ମିଳେ ।

ଇଂରାଜୀ କବି ଗୋଲ୍‌ଡସ୍ମିଥ୍‌ଙ୍କ ଅନବଦ୍ୟ କୃତି Deserted Villageର ପ୍ରେରଣା 'ପଲ୍ଲୀଚିତ୍ର'ର ସୃଷ୍ଟି ପ୍ରେରଣା ମୂଳରେ ବିଦ୍ୟମାନ । ଗୋଲ୍‌ଡସ୍ମିଥ୍‌ଙ୍କ ବର୍ଣ୍ଣନା ଧାରାର ପଦଚିହ୍ନ ପଲ୍ଲୀକବି ନନ୍ଦକିଶୋରଙ୍କ କବିତାଂଶରେ ପରିଲକ୍ଷିତ ହୁଏ ! ଦୃଷ୍ଟାନ୍ତ ସ୍ୱରୂପ ପଲ୍ଲୀଚିତ୍ରର 'ଗ୍ରାମଚାଟଶାଳୀ' କବିତା ସହିତ 'Deserted Village' ରୁ Village Master ବର୍ଣ୍ଣନୀୟ ଅଂଶକୁ ତୁଳନା କରାଯାଇପାରେ । କବି ଓଲିଭର୍ ଗୋଲ୍‌ଡସ୍ମିଥ 'Deserted Village' କବିତାରେ ପ୍ରକାଶ କରିଛନ୍ତି :-

The Village master taught his little school
A man severe he was and stern to view
The village all declared how much he knew
It was certain he could measure terms and tides presage,
And even the story ran that he could gauge;
In arguing, too the person owned his skill
For, even tho, Vanquished, he could argue still;
While words of learned length and thundering sound
Amazed the gazing rustics ranged around;
And still they gazed and still the wonder grew. ।୭୬।

ପଲ୍ଲୀ କବି ନନ୍ଦକିଶୋର ବଳ 'Oliver Goldsmithଙ୍କ Deserted Village ଛାୟାରେ ପଲ୍ଲୀଚିତ୍ର କବିତା ସଂକଳନରେ ସ୍ଥାନିତ 'ଗ୍ରାମଚାଟଶାଳୀ' କବିତାରେ ପ୍ରକାଶ କରିଛନ୍ତି:-

ଗୁରୁଙ୍କର ବିଦ୍ୟା ଅପ୍ରମିତ
ଜାଣନ୍ତି ସେ ଶ୍ଳୋକ ଛାନ୍ଦଗୀତ.
ମହାଜନୀ ଜମିଦାରୀ, ହିସାବରେ ଅଣ୍ଟାଭାଗି
ଲେଖା ଯୋଖା ଖଡ଼ି ପାଠେ ଅତି ଧୁରନ୍ଧର
ପୁରଭଉଁରିଆ ଲେଖା ଅପୂର୍ବ ସୁନ୍ଦର
ଜମି ଜରିବରେ ଅଛି ଜ୍ଞାନ,
ଗ୍ରାମେ ଗୁଣିବିଦ୍ୟାରେ ପ୍ରଧାନ
ଅପାର ତାଙ୍କ ମହିମା ନାହିଁ ସେ ବିଦ୍ୟାର ସୀମା
ଏକାଧାରେ ସମାବିଷ୍ଟ ଆହା କେତେ ଗୁଣ
ଅମୂଲ୍ୟ ଅଟଇ ଆହା ! ଅତୁଳ ନୈପୁଣ୍ୟ ।୭୭।

ବର୍ଣ୍ଣନାବସ୍ତୁ ଓ ଆଭିମୁଖ୍ୟରେ ସାମ୍ୟଘେନି ନନ୍ଦକିଶୋରଙ୍କ କବିତାଂଶ ଗୋଲଡ୍‌ସ୍ମିଥ୍‌ଙ୍କ ପ୍ରଭାବର ଫଳବୋଲି ଅନୁମିତ ହୁଏ । କବି କଳ୍ପନା ଜଗତରେ ବୈରାଗ୍ୟ କାକର ଭୂମିକା ଘେନି ସମସ୍ତଙ୍କ ପାଇଁ 'କାକାବାର୍ତ୍ତା' କବିତାରେ ଯେଉଁ ସତ୍ୟର ଡାକ ଶୁଣାଇଛନ୍ତି ତାହାର ଅନ୍ତରାଳରେ ମଧ୍ୟ ପାଶ୍ଚାତ୍ୟ କବିଙ୍କ କବିତାର ଭାବଧ୍ୱନି ସଂଚିତ ଏଇ ପ୍ରସଙ୍ଗରେ ପୁଣି ଉତ୍କଳ ସାହିତ୍ୟରେ ପ୍ରକାଶିତ ଏକ ଆଲୋଚନାରୁ ଜଣାଯାଏ ଯେ 'କାକବାର୍ତ୍ତା' ଲେଖିଲା ବେଳେ କବି ରେଭେନ୍‌ସା କଲେଜରେ ଛାତ୍ର ଥିଲେ । କବିଙ୍କର ଜଣେ ସହାଧ୍ୟାୟୀ ଏ ବିଷୟରେ ମତ ଦେବାକୁ ଯାଇ କହିଛନ୍ତି ଯେ ଆମ୍ଭମାନଙ୍କ କବି ନିଶ୍ଚୟ ସେ ସମୟର ଓ୍ୱାଡସଓ୍ୱାର୍ଥ, ଟେନିସନ୍‌ଙ୍କ କବିତାର ମାଧୁରୀରେ ଆକୃଷ୍ଟ ହୋଇ ତାହା ସ୍ୱୀୟ ମାତୃଭାଷାରେ ଲେଖିବାକୁ ପ୍ରେରଣା ପାଇଥିବେ ।୭୮।

ଭାବଧର୍ମର ସାଦୃଶ୍ୟ ହେତୁ ବସ୍ତୁତଃ 'କାକବାର୍ତ୍ତା' କବିତାଟି ଟେନିସନ୍‌ଙ୍କ 'All things will die' କବିତାର ପ୍ରେରଣାରୁ ଜନ୍ମ ଘେନିଥିବା ଅନୁଭୂତ ହୁଏ । ପୁଣି 'ବସନ୍ତକୋକିଳ' କବିତା ଗ୍ରନ୍ଥରେ ସ୍ଥାନିତ ଅଧିକାଂଶ କବିତା ଇଂରାଜୀ କବିଙ୍କ କବିତାର ସଂପ୍ରସାରିତ ରୂପ କିମ୍ବା କେତୋଟି ମଧ୍ୟ ସେମାନଙ୍କ କବିତାର ସ୍ପଷ୍ଟ ଅନୁବାଦ । 'ବନପ୍ରିୟ' କବିତାଟି ସେଲିଙ୍କ 'To a Sky Lark' କବିତାଂଶର ଏକ ସଂପ୍ରସାରିତ ଭାବଲିପି । ସେହିପରି ଟେନିସନ୍‌ଙ୍କର The Princess ଓ Maud କାବ୍ୟର ଅଂଶ ବିଶେଷକୁ ଭିତ୍ତିକରି ଯଥାକ୍ରମେ 'ପ୍ରବାସୀ' ଓ 'ବିରହିଣୀ ଲତା' କବିତା ଦ୍ୱୟ ରଚିତ ଏବଂ 'Tears Idle tears' କବିତାଂଶର ଭାବାର୍ଥରୁ ସ୍ମୃତିକବିତାଟିର ଉତ୍ପତ୍ତି । ଶେଲିଙ୍କର Last Love ଏବଂ 'To a sky Lark' କବିତାର ଗୋଟିଏ ଗୋଟିଏ ଛତ୍ରକୁ ଭୂମିକାକରି 'ବ୍ୟର୍ଥ ପ୍ରଣୟ' ଓ 'ବିଷାଦିନୀ' କବିତା ଦ୍ୱୟ ରଚିତ । କାଉପରଙ୍କର On the receipt of my mother's picture କବିତାଟିର ଦୁଇଟି ପଙ୍‌କ୍ତିର ଆଧାରରେ ନନ୍ଦକିଶୋରଙ୍କର ଜନନୀଙ୍କ ସ୍ମୃତି କବିତାଟି ରଚିତ ।୭୯।

ଏତଦ୍‌ଭିନ୍ନ ରବର୍ଟ ସାଉଦି, ସେକ୍ସପିୟର, କୀଟସ୍‌, ରବର୍ଟ ବର୍ଣ୍ଣସ ଇତ୍ୟାଦି ଇଂରେଜ କବିଙ୍କର କବିତାରୁ ଗୋଟିଏ ଗୋଟିଏ ପଙ୍‌କ୍ତି ଘେନି କବି ନନ୍ଦକିଶୋର ତାହାକୁ ଆପଣା କବିତାରେ ସଂପ୍ରସାରିତ କରିଛନ୍ତି । ପୁନଶ୍ଚ ୱାଡ଼ସ୍‌ୱାର୍ଥଙ୍କର To the Cuckoo ଏବଂ ଜେ. ଲେଗାନ୍‌ଙ୍କର Ode to the Cuckoo କବିତା ଦ୍ୱୟକୁ ଯଥାକ୍ରମେ 'କୋକିଳ ପ୍ରତି' ଓ 'କୋକିଳ' ଶିରୋନାମାରେ ସେ ଅନୁବାଦ କରିଛନ୍ତି ।୮୦।

ପଲ୍ଲୀକବି ନନ୍ଦକିଶୋର ବଳଙ୍କ 'ଶର୍ମିଷ୍ଠା' କାବ୍ୟ ଦ୍ୱିତୀୟ ସର୍ଗରେ କ୍ଷମା ଗୁଣର ଉଲ୍ଲେଖ ସେକ୍ସପିୟର୍‌ଙ୍କ ନାଟକସ୍ଥ Portiaଙ୍କ ସଂଳାପର ଏକାନ୍ତ ଅନୁରୂପ । କବି ମନୀଷୀ William Shakespeare 'Merchant of Venice' ଗ୍ରନ୍ଥରେ ପ୍ରକାଶ କରିଛନ୍ତି :-

The quality of Mercy is not strain'd
It droppeth as the gentle rain from heaven
Upon the place beneath; it is twice bless'd
It blesseth him that gives and him that takes. ।୮୧।

କବି ନନ୍ଦକିଶୋର ବଳ ତଦନୁରୂପ 'ଶର୍ମିଷ୍ଠା' କାବ୍ୟର ଦ୍ୱିତୀୟ ସର୍ଗରେ ପ୍ରକାଶ କରିଛନ୍ତି:-

କ୍ଷମା କଲେ ଝିଅ ! କ୍ଷମା ତ ମିଳଇ
କ୍ଷମାର ନ ମିଳେ ଅନ୍ତ
କ୍ଷମାର ଗ୍ରହୀତା କ୍ଷମା ଦାତା ଦୁହେଁ
ଏ ଭୁବନେ ଭାଗ୍ୟବନ୍ତ ।
ଦିବ୍ୟଧାମୁଁ ସୁଧା ତରଙ୍ଗିଣୀ ତଟୁଁ
ଓହ୍ଲାଇ ଆସିଛି କ୍ଷମା
ପ୍ରାଣୀ ହିତକର ବାରିଦ ଜୀବନ
ସୁନିର୍ମଳ ଧାରାସମା ।୮୨।

ସତ୍ୟବାଦୀର ଆଚାର୍ଯ୍ୟ ନୀଳକଣ୍ଠ ଜଣେ ସଂସ୍କୃତି ପ୍ରାଣ କବି । ପ୍ରଜ୍ଞା ଓ ପ୍ରତିଭାର ଏକ ମୂର୍ତ୍ତିମାନ ପ୍ରତୀକ । ସେ ଅନୁଭୂତିର ଏକ ନିର୍ଝର ଓ ବିଦ୍‌ବତ୍ତାର ସମୁଦ୍ର । ମୌଳିକ କବିତା ରଚନା ଓ ଅନୁବାଦ ଘେନି ତାଙ୍କ କାବ୍ୟସାଧନା ପୁଷ୍କଳ । 'ପ୍ରଣୟିନୀ' ନୀଳକଣ୍ଠଙ୍କର ବି.ଏ. ପଢ଼ିଲା ବେଳର ରଚନା, କିନ୍ତୁ ପରବର୍ତ୍ତୀ କାଳରେ ପ୍ରକାଶିତ ମୂଳକାବ୍ୟର କଥାଂଶର ସେପରି କିଛି ସଂପ୍ରସାରଣ ବା ତହିଁରେ କିଛି ନୂତନ ସଂଯୋଜନା ଅନୁବାଦ କେବଳ ଏଥିରେ କରାଯାଇ ନାହିଁ । କେହି ରାଜକୁମାରୀ କିଶୋର ଜୀବନରେକୌଣସି ରାଜକୁମାରଙ୍କ ପ୍ରତି ବାଗ୍‌ଦତ୍ତା ଥାଇ ସୁଦ୍ଧା ପରିଣତ ବୟସରେ ବିବାହ ବିମୁଖା ହୋଇ ନାରୀଜାତିର ଅଭ୍ୟୁଦୟ ପାଇଁ ରଚନାତ୍ମକ କାମରେ ଆତ୍ମନିୟୋଗ କରିବା ଏବଂ ନାରୀଙ୍କ ପାଇଁ ବିଶ୍ୱବିଦ୍ୟାଳୟ ସ୍ଥାପନ କରି ତାହାର ପରିଚାଳନାରେ ମନୋନିବେଶ କରିବା ଇତ୍ୟାଦି କଥାନ୍ୟାସର ଧାରାସହ ଅନୁଦିତ କାବ୍ୟଟି ବିଶ୍ୱସ୍ତ ।୮୩।

ପୁଣି ଏଥିପାଇଁ ପ୍ରଣୟୀ ରାଜକୁମାର ବେଶରେ ପୁଷ୍ପେକୀଟ ପ୍ରବେଶ କଲାପରି ପୁରୁଷଙ୍କ ପାଇଁ ନିଷିଦ୍ଧ ବିଶ୍ୱବିଦ୍ୟାଳୟରେ ଶିକ୍ଷାର୍ଥୀ ହେବାର ସୌଭାଗ୍ୟ ଲାଭ କରି ପରେ ଚିହ୍ନା ପଡ଼ିବା ଓ ସେହି କାରଣରୁ ଜୀବନକୁ ବିପନ୍ନ କରିବା ଘଟଣାର କ୍ରମ ଏଥିରେ ଅନୁରୂପଭାବରେ ପ୍ରକାଶିତ । ରାଜକୁମାର ଓ ବନ୍ଧୁଗଣ ବିପନ୍ନ; ଏତିକି ବେଳେ ରାଜ ସୈନ୍ୟଦଳ ସହ କୁମାରଙ୍କର ସାହା ହେଲେ; ସେହିପରି ରାଜଜେମାଙ୍କୁମଧ୍ୟ ପିତା ଓ ଭ୍ରାତା ସାହାଯ୍ୟ କଲେ । ଦୁଇ ପକ୍ଷର ରାଜକୁମାରଙ୍କ ମଧ୍ୟରେ ପଚାଶଜଣ ସୈନ୍ୟ ବିଶିଷ୍ଟ ସେନାବଳର ଯୁଦ୍ଧ ହେଲା । ଯୁଦ୍ଧରେ ଜେମାମଣିଙ୍କ ପ୍ରତିପକ୍ଷ ପରାଜିତ ଓ ଆହତ ହେଲେ । ବିଶ୍ୱବିଦ୍ୟାଳୟ ଏକ ଚିକିତ୍ସାଳୟରେ ପରିଣତ ହେଲା । ଆହତ ରାଜକୁମାର ଚିକିତ୍ସା ନିକେତନରେ ଜେମାମଣିଙ୍କ ହୃଦୟ ଜୟକଲେ ।[୮୪]

ପ୍ରାରମ୍ଭ ଓ ପ୍ରାନ୍ତ ଭାଷଣକୁ ନେଇ କଥା ଭାଗର ସଂରକ୍ଷା ଅନୂଦିତ କାବ୍ୟଟିରେ ବିଶ୍ୱସ୍ତ ଭାବେ ଏହିପରି କରାଯାଇଛି । ମାତ୍ର ଚରିତ୍ରର ନାମକରଣ ଓ ସ୍ଥାନିକ ଆରୋପଣରେ କିମ୍ବା ପ୍ରାସଙ୍ଗିକ ଦୃଷ୍ଟିଦାନରେ ଅନୁବାଦକ ପରିବର୍ତ୍ତନକୁ ବରଣ କରିଛନ୍ତି । ନୀଳକଣ୍ଠଙ୍କ କାବ୍ୟରେ ରାଜକୁମାରୀ ଇଡ଼ା, ଜେମାମଣି ଭାବରେ ନାମିତ ହୋଇଛନ୍ତି । ସେହିପରି ପ୍ରିନ୍‌ସ, ସ୍ୱଭାବରେ ଏବଂ ସାଇରିଲ ଓ ଫ୍ଲୋରିୟାନ ବିଶ୍ୱବିଦ୍ୟାଳୟ ଶିକ୍ଷୟତ୍ରୀ ତଥା ଜେମାଙ୍କର ସଖିଦ୍ୱୟ ତଥା ସାଇକି ଓ ବ୍ଲାନିଚି ଶବ୍ଦଟିର ମର୍ମପ୍ରତି ସଚେତନ ଥିବା ଜଣାଯାଉଛି । ପୁଣି ମହାଶ୍ୱେତାବା ବ୍ଲାନିଚିଙ୍କ କନ୍ୟା ମେଲିସାଙ୍କୁ ମଧୁମତୀ ନାମରେ ନାମିତ କରାଯାଇଛି ଏବଂ ବିଶ୍ୱବିଦ୍ୟାଳୟଟିକୁ ନାଳନ୍ଦାରୂପେ ନାମିତ କରାଯାଇ ଆର୍ଯ୍ୟଭିତ୍ତିର ମାୟା ସୃଷ୍ଟି କରାଯାଇଛି । ନୀଳକଣ୍ଠଙ୍କ ନାଳନ୍ଦା ଓ ଟେନିସନଙ୍କର ବିଶ୍ୱବିଦ୍ୟାଳୟର ବର୍ଣ୍ଣନାକୁ ମିଳେଇ ପଢ଼ିଲେ କବିତାର ତାରତମ୍ୟ ଲକ୍ଷ୍ୟ କରିହୁଏ । ପାଶ୍ଚାତ୍ୟ କବି ମନୀଷୀ Lord Alfred Tennyson ତାଙ୍କର ଅନନ୍ୟ କୃତି Princess-Canto IIରେ ପ୍ରକାଶ କରିଛନ୍ତି :-

All round with Laurel, issued in a court,
Compact with Lucid Marbles, boss'd with lengths
Of classic frieze, with ample awnings gay.
Betwixt the pillars and with great urns of flowers
The muses and the graces group'd the threes
Enring'd a billowing fountain in the midst.[୮୫]

କବି ମନୀଷୀ ନୀଳକଣ୍ଠ ପ୍ରଣୟିନୀ କାବ୍ୟର ଦ୍ୱିତୀୟ ସର୍ଗରେ ପ୍ରକାଶ କରିଛନ୍ତି :-

ଆର୍ଯ୍ୟକଳା ଅଳଂକାରେ ସୁନ୍ଦର ଖୋଦନେ,
ରମ୍ୟସ୍ତଂଭଚୟ, ଚାରୁଚଂନ୍ଦ୍ରାତପ ଶୋଭେ
ଶିରୋଦେଶେ ସେସ୍ତଂଭର ରତନ ଖଚିତ

ମର୍ମ୍ମର କୁସୁମ କୁଂଡେ ଲଳିତ ଲଳିତା
ଅତୁଳ ଅପସରୀ ପୁଞ୍ଜ ମର୍ମର ବିଗ୍ରହ
ବିଶ୍ୱକର୍ମା କଉଶଳ ଖ୍ୟାତି ପରାଭବି
ରୁଚିର ବିଧାନେ ଘେରି ସୁରମ୍ୟ ସରଣୀ
ପ୍ରାଙ୍ଗଣର ମଧ୍ୟଭାଗେ ମୃଦୁଳ କ ଧ୍ୱନି
ଚାମର ସୁଷମା ଜିଣି ବିମଳ ଝରଣା
ଖେଳୁଥିଲା ବିଚିମାଳେତହିଁ ।୮୬।

ପୁନଶ୍ଚ ଶବ୍ଦଚୟନ, ଚିତ୍ର ବିନ୍ୟାସ ଓ ମିଥର ଉଲ୍ଲେଖରେ ବେଶ ଆନୁଗତ୍ୟ ପ୍ରକାଶ ପାଇଛି । ଉଭୟଙ୍କର କେତୋଟି ପଙ୍‌କ୍ତିକୁ ତୁଳନା କରି ଦେଖିଲେ ଏହାର ସତ୍ୟତା ଉପଲବ୍‌ଧ କରିହୁଏ ।୮୭।

ଅତ୍ୟାଧୁନିକ କବିତା କ୍ଷେତ୍ରରେ କବି ଗୁରୁପ୍ରସାଦ ମହାନ୍ତିଙ୍କରକାବ୍ୟଚେତନା ଏକଯୁଗାନ୍ତକାରୀ ନୂତନତା ସୃଷ୍ଟି କରିଛି ତାଙ୍କ କାବ୍ୟ ପୁରୁଷରଦେହ ଓ ମନ ଅତ୍ୟାଧୁନିକ ଜଟିଳ ଜୀବନଯାତ୍ରାର ବୌଦ୍ଧିକ ବିଶ୍ଲେଷଣରେ ପରିପୂର୍ଣ୍ଣ । ସମଗ୍ର ପୃଥିବୀ ପରିପ୍ରେକ୍ଷୀରେ ଓଡ଼ିଆ ଜୀବନ ଓ ଅନୁଭୂତିର ସ୍ଥାନ, ମୂଲ୍ୟ ନିର୍ଣ୍ଣୟ କରିବାରେ ତାଙ୍କ କାବ୍ୟ ଚେତନା ଅତ୍ୟନ୍ତ ସାହସିକତା ପ୍ରଦର୍ଶନ କରିଛି ତାଙ୍କ କବିତାର ବିଷୟବସ୍ତୁ ଉପସ୍ଥାପନା ଓ ନୂତନ କାବ୍ୟ ଶୈଳୀ ପ୍ରବର୍ତ୍ତନରେ ଯଥେଷ୍ଟ କଳା ନୈପୁଣ୍ୟ ପରିଲକ୍ଷିତ ହୁଏ ।୮୮।

କାବ୍ୟଭାଷାର ସ୍ୱଚ୍ଛତା ଓ ପରିଚ୍ଛନ୍ନତା ତାଙ୍କ କବିତାକଳାର ମୌଳିକ ସ୍ୱାକ୍ଷର । ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତି ବା ଅନୁଭୂତିକୁ ବିଭିନ୍ନ ଓ ପରସ୍ପର ବିରୋଧୀ ଦୃଷ୍ଟିକୋଣରୁ ଏକ ସମୟରେ ଦେଖିବା ଏବଂ ଅନ୍ୟାନ୍ୟ ଅନେକ ଅନୁଭୂତି ସହିତ ଏହାକୁ ଜଡ଼ିତ କରି ଏହାର ସତ୍ୟ ଉଦ୍‌ଘାଟନ କରିବା କବି ଗୁରୁପ୍ରସାଦଙ୍କ କାବ୍ୟ ଶୈଳୀର ବିଶେଷତ୍ୱ ।କବି ଗୁରୁପ୍ରସାଦଙ୍କ କାବ୍ୟ ଶୈଳୀ ଏକାନ୍ତଭାବରେ ମେଟାଫିଜିକାଲ୍ । କବିଙ୍କ ଉପରେ ପାଶ୍ଚାତ୍ୟ କବି ମନୀଷୀ ଟି.ଏସ୍.ଇଲିୟଟ୍‌ଙ୍କ ପ୍ରଭାବ ଅନସ୍ୱୀକାର୍ଯ୍ୟ । 'ସମୁଦ୍ର ସ୍ନାନ' କବିତା ସଂକଳନରେ ସ୍ଥାନିତ 'କାଳପୁରୁଷ' କବିତା ଉପରେ ଇଲିୟଟ୍‌ଙ୍କ 'Westland'ର ପ୍ରଭାବ ପରିଦୃଷ୍ଟ ହୁଏ । କବି ଇଲିୟଟଙ୍କ 'The Westland'ର 'The Burial of the Dead'କବିତାରେ ପ୍ରକାଶ କରିଛନ୍ତି :-

April is the cruellest month breeding
Lilacs out of the dead land, mixing
Memory and desire, stirring
dull roots with spring rain. ।୮୯।

ଉଭୟ ଇଲିୟଟ୍ ଓ ଗୁରୁପ୍ରସାଦ ମହାନ୍ତିଙ୍କର 'The WestLand' ଏବଂ 'କାଳପୁରୁଷ'ର ପ୍ରାରମ୍ଭିକ ପଂକ୍ତି ଗୁଡ଼ିକର ତୁଳନାତ୍ମକ ବିଚାର କଲେ ଏଲୀୟଟୀୟ

କାବ୍ୟଧାରା କିଭଳି ଭାବେ 'କାଳପୁରୁଷ'ର କାବ୍ୟ ପୁରୁଷକୁ ପ୍ରଭାବିତ କରିଛି ତାହା ସହଜରେ ଅନୁମାନ କରିହୁଏ। କବି ଗୁରୁପ୍ରସାଦ 'ସମୁଦ୍ରସ୍ନାନ' କବିତା ସଂକଳନରେ ସ୍ଥାନିତ 'କାଳପୁରୁଷ'ରେ ପ୍ରକାଶ କରିଛନ୍ତି:-

ବର୍ଷାଋତୁ ନିଷ୍ଠୁର ନିର୍ମମ, ଫୁଟାଇ ରଙ୍ଗଣି ଫୁଲ ଖତ କୁଢ଼
କାନ୍ଥ ବାଡ଼ ମୂଳେ, ହାଡରେ ଥରାଇରସ, ମାଟି ତଳେ ଚେର ମୂଳଟାଣି
ବର୍ଷା ପଡ଼େ ବର୍ଷାପଡ଼େ ଝରି, ଥରାଇ ମୁମୂର୍ଷୁ ଆତ୍ମା ଥୁଣ୍ଟାଗଛ
ଶିଅମୂଳେ ମୂଳେ, ବର୍ଷା ପଡ଼େ ଝରିଝରି ଅସରନ୍ତି ବର୍ଷା ପଡ଼େ ଝରି।୯୦।

'ୱେଷ୍ଟଲ୍ୟାଣ୍ଡ' ନୃତତ୍ତ୍ୱ ଜଗତରୁ ପରିପୋଷକ ରୂପକ ମାନଙ୍କ ଅନ୍ୱେଷଣ ବା ଯାତ୍ରା ହେଉଛି ଏକ ସମୟଜୟୀ ଓ କାଳଜୟୀ ନୃତାତ୍ତ୍ୱିକ ବିଷୟତତ୍ତ୍ୱ। ଏହାର ବହୁଳ ଜ୍ୟୋତିତା ଯେ କୌଣସି ଆଧୁନିକ କବିର ଆଗ୍ରହ ଉତ୍ପାଦନ କରିବା ସ୍ୱାଭାବିକ। ଏହି ଅନ୍ୱେଷଣ ପ୍ରତୀକ ଆଧୁନିକ ମନୁଷ୍ୟର ପରିସ୍ଥିତିକୁ ନିଦା ଭାବରେ ଉପସ୍ଥାପନ କରିବାରେ କ୍ଷମ। ବାଇବେଲ ପରିସ୍ତ୍ରି ୟୁରୋପୀୟ ମନକୁ ନୃତତ୍ତ୍ୱ ଯାହା, ଭାରତୀୟ ଓଡ଼ିଆ ମନକୁ ଭାଗବତ ତାହା।୯୧।

ଗୁରୁପ୍ରସାଦଙ୍କ 'ଅକ୍ରୁର ଉବାଚ' ଏଲିୟଟଙ୍କ 'ଏ ସଙ୍ଗ ଅଫ୍ ସାଇମନ' କବିତା ଦ୍ୱାରା ପ୍ରଭାବିତ। 'ଏ ସଙ୍ଗଅଫ ସାଇମନ୍'ର କାବ୍ୟ ନାୟକ 'ସିମିୟନ' ବାଇବେଲର ଏକ ଚରିତ୍ର। ଯୀଶୁଙ୍କ ଧରାବତରଣରେ ସେ ଆନନ୍ଦାତିଶଯ୍ୟରେ ମଗ୍ନ ଠିକ୍ ଅକ୍ରୁର ଭଳି। କିନ୍ତୁ ସମାନ୍ତରାଳ ଭାବରେ ଏକ ଦୁଃଖ ଓ ବିଷାଦବୋଧ ବୃଦ୍ଧ ସିମିୟନଙ୍କ ଅନ୍ତର ଆତ୍ମାକୁ ଆଲୋଡ଼ିତ କରିଛି। କାରଣ ଏ ଅନାଗତ ଭବିଷ୍ୟତର ଦୁଃଖ ବେଦନା ଓ ବିଷାଦବୋଧକୁ ସେ ଅନ୍ତର୍ଦୃଷ୍ଟିରେ ଦର୍ଶନ କରିପାରୁଛନ୍ତି।୯୨।

ଏ ଦୁଃଖ ବିଷାଦବୋଧକୁ ପାଶ୍ଚାତ୍ୟ କବି ମନୀଷୀ T.S. Eliot 'A song of Simeon' କବିତାରେ ପ୍ରକାଶ କରିଛନ୍ତି :-

Grant me thy peace
(And a sword shall pierce thy heart; thine also)
I am tired with my ownlife and the lives of those after me
I am dying with my own death and the deaths of those after me.
Let the servant depart
Having seen the salvaticn.।୯୩।

ଗୁରୁପ୍ରସାଦଙ୍କ 'ଅକ୍ରୁର' ସମାନ୍ତରାଳ ଭାବେ ଜୀବନ କ୍ଳାନ୍ତ। କାରଣ ସିମିୟନଙ୍କଭଳି ସେ ମଧ୍ୟ ଦିବ୍ୟଦୃଷ୍ଟିରେ ଦେଖି ପାରୁଛନ୍ତି କୃଷ୍ଣଙ୍କ ମୃତ୍ୟୁ। ଭାଗବତର ଅକ୍ରୁର ଠାରୁ ଗୁରୁପ୍ରସାଦଙ୍କ ଅକ୍ରୁର ସଂପୂର୍ଣ୍ଣ ଭାବରେ ଭିନ୍ନ। ପୃଥିବୀରୁ ଦୟା, କ୍ଷମା, କରୁଣା ଓ ନ୍ୟାୟବୋଧର ଦୟନୀୟ ଅନ୍ତର୍ହିତ 'ଅକ୍ରୁର ଉବାଚ'ର କାବ୍ୟପୁରୁଷ ଅନୁଭବ କରିଛି।

କବି ଗୁରୁପ୍ରସାଦ 'ସମୁଦ୍ରସ୍ନାନ' କବିତା ସଂକଳନରେ ସ୍ଥାନିତ 'ଅକ୍ରୁର ଉବାଚ' କବିତାରେ ପ୍ରକାଶ କରିଛନ୍ତି :-

ମହାପ୍ରଭୁ ମୁକ୍ତି ଦିଅ - ଏହିଯାତ୍ରା ଶୁଭ ହେଉ ତୁମରି ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ
ତୁମରି ସଂହାର ଡେଇଁ
ବହୁତ ବହୁତ କ୍ଲାନ୍ତି, ପୁନରୁକ୍ତି ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ରକୂଳରୁ ।୯୪।

'ୱେଷ୍ଟଲ୍ୟାଣ୍ଡ'ର ସମଧର୍ମୀ କେତୋଟି ଅନୁଭୂତିକୁ ଚେଷ୍ଟାକୃତ ଭାବେ ଓଡ଼ିଶାର ଜଳବାୟୁରେ ପରୀକ୍ଷା କରାଯାଇ ଥିବାରୁ ଆମର ସଂସ୍କୃତିର ରୂପରେଖ ସଫଳ ଭାବରେ ଫୁଟିପାରି ନାହିଁ । 'ୱେଷ୍ଟଲ୍ୟାଣ୍ଡ'ର କାବ୍ୟିକ ଦିଗ ନିର୍ଦ୍ଦେଶନା ମଧ୍ୟ 'କାଳପୁରୁଷ'ରେ ଦେଖିବାକୁ ମିଳେ । ଉଭୟ କବିତାର କୌଣସି କୌଣସି ଅଂଶ ଓ ପଙ୍‌କ୍ତି ଗୁଡ଼ିକ ମଧ୍ୟରେ ପାରସ୍ପରିକ ସାମଞ୍ଜସ୍ୟ ମଧ୍ୟ ଅତିମାତ୍ରାରେ ପରିଲକ୍ଷିତ । ଏପରିକି Death by water ଅଂଶର ନାବିକ ଫ୍ଲେବାସ୍‌ର ମୃତ୍ୟୁ ଓ 'କାଳପୁରୁଷ'ର ତୃତୀୟ ଅଂଶରେସୂଚିତ 'ରମୁ'ର ମୃତ୍ୟୁ ବର୍ଣ୍ଣନା କବି T.S. Eliot ତାଙ୍କ ଅନବଦ୍ୟ କୃତି 'The Westland' ର 'Death by Water' କବିତାରେ ପ୍ରକାଶ କରିଛନ୍ତି:-

O you who turn the wheel and
Look to wind ward
Consider phlebas, who was once handsome
and tall as you.।୯୫।

କବି ଗୁରୁପ୍ରସାଦ ମହାନ୍ତି 'ସମୁଦ୍ର ସ୍ନାନ'କବିତା ସଂକଳନରେ ସ୍ଥାନିତ 'କାଳପୁରୁଷ' କବିତାରେ ପ୍ରକାଶ କରିଛନ୍ତି:-

ତୁମେ ସବୁ ଯେତେ ଅଛ ରମୁର ଦୋସ୍ତ ଓ ୟାର
ତୁମେ ସବୁ ଯେତେ ଅଛ ସାନବଡ଼, ସରୁମୋଟା
ଟୋକା ଆଉ ବୁଢ଼ା
ତୁମେସବୁ ଜାଣିଥିବ ରମୁ ଥିଲା ତୁମ ପରି ଛାଁଟକାଟ୍
ସିଧା ଓ ସଳଖ
ରମୁଥିଲା ତୁମ ପରିମୁଲାଏମ୍ ଚିକ୍‌କଣ ଓ ଗୋଲଗାଲ
ଲମ୍ବା ଓ ଚଉଡ଼ା ।୯୬।

କବି ଗୁରୁପ୍ରସାଦ ପାଶ୍ଚାତ୍ୟ କବି T.S. Eliot ଙ୍କ 'The Westland' ଦ୍ୱାରା ପ୍ରଭାବିତ ହୋଇ 'କାଳପୁରୁଷ' ରଚନା କରିଥିଲେ ମଧ୍ୟ ଅନୁକରଣରେ ମୌଳିକତା, ଆହରଣରେ ଚତୁରତା, ଆରୋପଣରେ ନୂତନତା ଓ ଯଥାର୍ଥତା କବି ଗୁରୁପ୍ରସାଦଙ୍କ କବିତାର ବୈଶିଷ୍ଟ୍ୟ ।

ଆଧୁନିକ ଓଡ଼ିଆ କବିତାକୁ ନୂତନ ଚେତନାରେ ଋଦ୍ଧିମନ୍ତ କରିଥିବା କବି ମାନଙ୍କ ମଧ୍ୟରେ ସୀତାକାନ୍ତ ଅନ୍ୟତମ। କବିଙ୍କ ଲେଖନୀ ନିସୃତ କବିତାସଂକଳନ ଗୁଡ଼ିକ ଓଡ଼ିଆ କାବ୍ୟକୁଞ୍ଜବନରେ ପାରିଜାତ ସମ। ସରଳ ଶବ୍ଦ ମାଧ୍ୟମରେ ଜଟିଳ ଜୀବନ ଯନ୍ତ୍ରଣାକୁ କବି ସରସ ସୁନ୍ଦର ଭାବରେ କବିତାରେ ପ୍ରକାଶ କରିଛନ୍ତି। ଅନ୍ତରଙ୍ଗ ଅନୁଭବ ଅନନ୍ତ ଆକର୍ଷଣ କବିତା ଗୁଡ଼ିକୁ କରିଛି ରସୋତ୍ତୀର୍ଣ୍ଣ। କାବ୍ୟ-ପୁରୁଷର ବାସ୍ତବତାକୁ ବ୍ୟାଖ୍ୟା କରିବାକୁ ଯାଇ ସେ ଲେଖିଛନ୍ତି-ବହି ରଙ୍ଗର ଚକମକ ପୃଥିବୀଠୁ ନିଜକୁ ଅଲଗେଇ ଆଣି ଆତ୍ମନିମଜ୍ଜନ ପରେ ପୁନରପି ବାହାରକୁ ନୂଆ ଆଖିନେଇ ଅନେଇବାର ଚେଷ୍ଟା। ରାଜାପୁଅ ଗୌତମ ଦେଖିଥିବା ପୃଥ୍ୱୀ ଓ ବୁଦ୍ଧଦେବ ଦେଖି ଥିବା ପୃଥ୍ୱୀଭିତରେ ଫରକ ସହ ଏହା ପ୍ରାୟ ସମାନ୍ତର କବିସତ୍ତାର ଏଇ ପରିଚୟ ବେଶ୍ ନିଖୁଣ।୯୭।

'ଅଷ୍ଟପଦୀ' କବି ସୀତାକାନ୍ତ ମହାପାତ୍ରଙ୍କ ଦ୍ୱିତୀୟ କବିତା ଗ୍ରନ୍ଥ। 'ଅଷ୍ଟପଦୀ' କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ ଦୀର୍ଘ ଓ ପରୀକ୍ଷାମୂଳକ। ସୀତାକାନ୍ତଙ୍କ କବିତାରେ ସୁନ୍ଦର ଚେତନାର ପ୍ରସାରିତ ବଳୟ ରହିଛି। 'ଦୀପ୍ତି ଓ ଦ୍ୟୁତି'ର କବିତା ଗୁଡ଼ିକ ଆପାତଃ ପରସ୍ପର ସହିତ ସଂପର୍କ ରହିତ। କିନ୍ତୁ ସେ କବିତା ଗୁଡ଼ିକ ଜୀବନ ପ୍ରତିଏକ ନିର୍ଦ୍ଦିଷ୍ଟ କାବ୍ୟ ପ୍ରତିକ୍ରିୟାରୁ ଉଦ୍ଭବ ଓ ସେହି ଦୃଷ୍ଟିରୁ ସେଗୁଡ଼ିକ ପରସ୍ପର ସହିତ ସଂପର୍କିତ। 'ଅଷ୍ଟପଦୀ'ର ମୂଳରେ ସେହି ଏକା କାବ୍ୟ ପ୍ରତିକ୍ରିୟା ଲକ୍ଷଣୀୟ।୯୮।

ଓଡ଼ିଆ କବିତାରେ ଗୁରୁପ୍ରସାଦ ମହାନ୍ତିଙ୍କ ସହିତ ସୀତାକାନ୍ତଙ୍କୁ ତୁଳନା କରାଯାଇପାରେ। ଉଭୟ ଆଧୁନିକ ଚେତନାର ବାହକ। ବିଶେଷ କରି ଗୁରୁପ୍ରସାଦଙ୍କର 'କାଳପୁରୁଷ' କୁ 'ଅଷ୍ଟପଦୀ'ର ପୂର୍ବସୂରୀ ଭାବରେ ଗ୍ରହଣ କରାଯାଇପାରେ। 'କାଳପୁରୁଷ' ର କାବ୍ୟ ଗଢ଼ଣରେ ପୁରାଣ ଅନ୍ତର୍ନିହିତ ଓ କବିତାର ଶେଷ ଆଡକୁ କବିତାର ମୂଳକଥା ଭାଗବତ ସୂଚନାରେ ପ୍ରକାଶିତ।୯୯।

କବି ସୀତାକାନ୍ତ ପାଶ୍ଚାତ୍ୟ କବି ମନୀଷୀ T.S. Eliot ଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ। 'ଅଷ୍ଟପଦୀ' କବିତା ସଂକଳନରେ ସ୍ଥାନିତ 'ମାଟି ଓ ମଣିଷ' ଶୀର୍ଷକର 'ପ୍ରେତାତ୍ମାର ଶୋଭାଯାତ୍ରା' କବିତା 'The Wastland' ର ' A Game of Chessର ପ୍ରଭାବ ସୁସ୍ପଷ୍ଟ। କବିତାର ଆଲୋଚନା କଲେ ସହଜରେ ହୃଦୟଙ୍ଗମ କରିହୁଏ। କବି T.S. Eliot 'The Wastland' ର A Game of Chess କବିତାରେ ପ୍ରକାଶ କରିଛନ୍ତି:-

My nerves are bad to night. Yes bad stay with me.
Speak to me. Why do you never speak speak.
I think we are in rats alley
Where the dead men lost their bones.
What is that noise ?

The wind under the door

What is thatnoise now? What is the wind doing?

Nothing again nothing. ।୧୦୦।

. କବି ସୀତାକାନ୍ତ T.S. Eliot ଙ୍କ ସ୍ୱରରେ ସ୍ୱର ମିଳେଇ 'ଅଷ୍ଟପଦୀ' କବିତାସଂକଳନର 'ମାଟିର ମଣିଷ' ଶୀର୍ଷକର 'ପ୍ରେତାତ୍ମାର ଶୋଭାଯାତ୍ରା' କବିତାରେ ପ୍ରକାଶ କରିଛନ୍ତି;-

ଆଜି ଏ ରାତ୍ରିର ଏଇ ଶବାଧାର ପାଶେ
ସଂକୁଚିତ କାୟା ମୋର ଘେରି ଜମି ଆସେ
ଜାତିସ୍ମର ଅବଚେତନରେ
ସମସ୍ତ କଲ୍ମଷ ଲୁହ, ବେଦନା, କଳୁଷ
ହେଇଟି ଆସୁଛି ଭୟ ଭିତରେ ଓ ବାହାରେଘୋଟୁଛି
ସ୍ନାୟୁ ଆଉ ଧମନୀରେ, ରକ୍ତ କଣିକାରେ

x x x x x x

କିଏ ତମେ ? କିଏ ତମେ ? କାହିଁକି ଡାକୁଛ ମତେ ?
କେଉଁଠି କି କ'ଣ ପାଇଁ ? ମତେ ଏବା ମାଡୁଅଛି ଡର
ଧାହାରେ ମଳିନ ଜହ୍ନ, ରଜନୀର ଅନ୍ତିମ ପ୍ରହର ।

x x x x x x

ମତେ ଲାଗେ ଭାରି ଏକା ଏକା
କଥା କହ କଥା କହ, ତୁଣ୍ଡ ଖୋଲି... ।୧୦୧।

ଆଧୁନିକ ଓଡ଼ିଆ କବିତାଇଂରାଜୀ ସାହିତ୍ୟଦ୍ୱାରା ପ୍ରଭାବିତ ହେଲେ ହେଁ ନିଜସ୍ୱ ପରମ୍ପରା ବଜାୟ ରଖିଛି । ଗ୍ରାମିଣ ଶବ୍ଦ ଓ ଲୋକ କଥିତ ଶବ୍ଦ ବ୍ୟବହାର କରି କବିତାକୁ କରିଛି ରସୋତ୍ତୀର୍ଣ୍ଣ । ପ୍ରତ୍ୟେକ କବି ପରମ୍ପରା ପ୍ରତି ସଚେତନ ଓ ପ୍ରଭାବିତ । ପରମ୍ପରାପ୍ରତି ସଚେତନତା ଓ ବର୍ତ୍ତମାନ ପ୍ରତି ଅଙ୍ଗୀକାରବଦ୍ଧତା ସ୍ରଷ୍ଟାର ସୃଷ୍ଟିକୁସୁସମୃଦ୍ଧ କରିଛି । ସମାଜ ଓ ମଣିଷ ପ୍ରତି ଲେଖକର ଦାୟିତ୍ୱ ଏକ ଉଜ୍ଜ୍ୱଳ ଆଲେଖ୍ୟ । ପାଶ୍ଚାତ୍ୟ କବି ମନୀଷୀ ଦାର୍ଶନିକ T.S. Eliot ଯଥାର୍ଥରେ ପ୍ରକାଶ କରିଛନ୍ତି :-

No author can claim himself to be absolutely original. The past tradition and present development are bound to influence him when he sits down to write.

ସଙ୍କେତ ସୂଚୀ:-

୧: ଆଧୁନିକତା ଓ ଆଧୁନିକ ସାହିତ୍ୟ : ପୃଷ୍ଠା :୧
ପ୍ରଥମ ସଂସ୍କରଣ : ୧୯୭୬, ଡ.ନରେନ୍ଦ୍ରନାଥ ମିଶ୍ର
୨: ତତ୍ରୈବ : ପୃଷ୍ଠା : ୩
୩: ତତ୍ରୈବ : ପୃଷ୍ଠା : ୪
୪: ତତ୍ରୈବ : ପୃଷ୍ଠା : ୪
୫: ଆଧୁନିକତାର ଉଦ୍ଭବ ଓ ନୂତନ ସାହିତ୍ୟର ଭିତ୍ତିପ୍ରସ୍ତ : ପୃଷ୍ଠା : ୧୩୦୨
ଝଙ୍କାର, ମକର : ୧୪୦୬ସାଲ : ଜାନୁଆରୀ ୨୦୦୦, ରମାକାନ୍ତ ରାଉତ ।
୬: Major Barbara : Page : 216
୭: Twentieth Century English Literature : Page : 7
Published : 1965, A.C. Ward
୮: ଆଧୁନିକ ସାହିତ୍ୟର କେତୋଟି ଦିଗ : ପୃଷ୍ଠା : ୧୮
ପ୍ରଥମ ସଂସ୍କରଣ : ୧୯୮୩, ସଚ୍ଚିଦାନନ୍ଦ ରାଉତରାୟ
୯: ତତ୍ରୈବ : ପୃଷ୍ଠା : ୧୮
୧୦: The Literary Modernism : Page : 69
Published : 1964, Irving Howe
୧୧: In Introduction to the Idea of the modern - Literary Modern
Page : 13, Published : 1967, Irving Howe
୧୨: Beyond all this fiddle : Page : 63
Published : Alvarew
୧୩: ଆଧୁନିକତାର ଉଦ୍ଭବ ଓ ନୂତନ ସାହିତ୍ୟର ଭିତ୍ତିପ୍ରସ୍ଥ : ପୃଷ୍ଠା : ୧୩୦୩,
ଝଙ୍କାର, ଜାନୁଆରୀ : ୨୦୦୬, ରମାକାନ୍ତ ରାଉତ ।
୧୪: Sirt and Clinth Brooks : A short history of Literary Criticism
Page : 63, Published : 1954, William, K. Wim
୧୫: Modernism : Vol : 8, Page : 8
Britanica - 1995, University of Chicago
୧୬: The Tradition of the New : Page : 18
Published : 1961, Herld Rojenburg
୧୭: TheTraditionof the New : Page : 8
Published : 1975, Harlex Rojenburg
୧୮: Letter to Young Painter : Page : 13
Published : 1967, Herbert Read
୧୯: The Painter of Modern Life : Page : 91
Published : 1962, Charles Bodlewar

୨୦: ତତ୍ରୈବ
୨୧: Struggle of the Modern : Page : 103
Published : 1963, StphenSpender
୨୨: Lecture on modern Elements of Literature : Page : 102
Published : 1957, Matthew Arnold
୨୩: The Pelican Guide to English Literature Modern Age
Page : 3, Published : BoilsFord, Cyril Connolly
୨୪: ଆଧୁନିକ ଓଡ଼ିଆ କବିତା ଉପରେ ଟି.ଏସ୍. ଇଲିୟଟ୍‌ଙ୍କ ପ୍ରଭାବ : ପୃଷ୍ଠା : ୨୫
ଶାରଦୀୟ ସଂଖ୍ୟା : ସହକାର : ୨୦୦୪, ଡ. ବୈଷ୍ଣବ ଚରଣ ସାମଲ
୨୫: Gerontion The waste Land and Other Poems : Page : 31
Published : 1954, T.S. Eliot
୨୬: Second Coming : Modern Poets one : Page : 27,
Published : 1972, W.B. Yeats
୨୭: ଆଧୁନିକ କବିତାର ରୂପରେଖ : ପୃଷ୍ଠା : ୫
ପ୍ରଥମ ପ୍ରକାଶ : ୧୯୬୨, ଉମାଚରଣ ପୂଜାରୀ
୨୮: ତତ୍ରୈବ : ପୃଷ୍ଠା : ୩୪
୨୯: କବିତାର କଥା : ପୃଷ୍ଠା : ୩୦
ପ୍ରଥମ ସଂସ୍କରଣ : ୧୯୮୨, ଗିରିବାଳା ମହାନ୍ତି
୩୦: କାବ୍ୟ ପ୍ରକରଣ : ପୃଷ୍ଠା : ୧୮୦
ପ୍ରଥମ ସଂସ୍କରଣ : ୧୯୯୩, ଡ. ନିତ୍ୟାନନ୍ଦ ଶତପଥୀ
୩୧: ସାଂପ୍ରତିକ ସାହିତ୍ୟ : ପୃଷ୍ଠା : ୧୦୧
ତୃତୀୟ ସଂସ୍କରଣ : ୧୯୯୭, ଡ. ବିଭୂତି ପଟ୍ଟନାୟକ
୩୨: ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ : ପୃଷ୍ଠା : ୩୩୮
ଦ୍ୱିତୀୟ ସଂସ୍କରଣ : ୧୯୯୩, ଡ. ଦାଶରଥି ଦାସ
୩୩: କାବ୍ୟ ପ୍ରକରଣ : ପୃଷ୍ଠା : ୨୪୩
ପ୍ରଥମ ସଂସ୍କରଣ : ୧୯୯୩, ଡ. ନିତ୍ୟାନନ୍ଦ ଶତପଥୀ
୩୪: କବି ଇଲିୟଟ : ଜନ୍ମ ଶତବାର୍ଷିକୀର ସ୍ମରଣିକା : ପୃଷ୍ଠା : ୧୦୭
ଏଷଣା ପ୍ରବନ୍ଧାବଳୀ : ନଅ ଓଡ଼ିଆ, ଗବେଷଣା ପରିଷଦ : ଡ ଭଗବାନ ଜୟସିଂହ
୩୫: ମଚ୍ଛିରାଉତ ରାୟ : ଗ୍ରନ୍ଥାବଳୀ : ପ୍ରତିମା ନାଟକ : ପୃଷ୍ଠା : ୭୯୪
ପ୍ରଥମ ଖଣ୍ଡ, ପ୍ରଥମ ସଂସ୍କରଣ : ୨୦୦୧
୩୬: ତତ୍ରୈବ : ପୃଷ୍ଠା : ୯୬୬
୩୭: ସମୁଦ୍ର ସ୍ନାନ : ପୃଷ୍ଠା : ୧୬
ପ୍ରଥମ ପ୍ରକାଶ : ୧୯୭୦, ଗୁରୁ ପ୍ରସାଦ ମହାନ୍ତି

୩୮: ତତ୍ରୈବ : ପୃଷ୍ଠା : ୧୭

୩୯: A critical History of English Literature : Page : 1160, Volume:IV, FirshtIndian Reprint : 1979, David Daiches

୪୦: କବି ସଚ୍ଚିଦାନନ୍ଦ ଓ ଗୁରୁପ୍ରସାଦ : ପୃଷ୍ଠା : ୨
ପ୍ରଥମ ପ୍ରକାଶ : ୧୯୮୫, ଡ. ପ୍ରଫୁଲ୍ଲ କୁମାର ରଥ

୪୧: ସମୁଦ୍ର ସ୍ନାନ : କାଳପୁରୁଷ : ପୃଷ୍ଠା : ୪୯
ପ୍ରଥମ ପ୍ରକାଶ : ୧୯୭୦, ଗୁରୁପ୍ରସାଦ ମହାନ୍ତି

୪୨: ଦେହ ଓ ଅଦେହର କବି ଗୁରୁପ୍ରସାଦ : ପୃଷ୍ଠା : ୫୨
ଇସ୍ତାହାର : ଆଧୁନିକ ଓଡ଼ିଆ କବିତା ବିଶେଷାଙ୍କ
ପ୍ରକାଶନ ମସିହା : ୧୯୭୯, ସୌରୀନ୍ଦ୍ର ବାରିକ

୪୩: ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା:କ
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ ।

୪୪: ତତ୍ରୈବ : ପୃଷ୍ଠା : ୧

୪୫: ତତ୍ରୈବ : ପୃଷ୍ଠା : ୮୯

୪୫: ତତ୍ରୈବ : ପୃଷ୍ଠା : ୯୫

୪୬: ତତ୍ରୈବ : ପୃଷ୍ଠା : ୯୬

୪୭: Metamorphoses : Page : 192, Book IV, Selected Works Published : 1939, Ovid

୪୮: ରାଧାନାଥ ଗ୍ରନ୍ଥାବଳୀ : କେଦାର ଗୌରୀ : ପୃଷ୍ଠା : ୨୫
ପ୍ରଥମ ସଂସ୍କରଣ : ୧୯୯୪, ରାଧାନାଥ ରାୟ

୪୯: Metamorphoses : Page : 192, Book IV. Selected Works Published : 1939, Ovid

୫୦: ରାଧାନାଥ ଗ୍ରନ୍ଥାବଳୀ : କେଦାର ଗୌରୀ : ପୃଷ୍ଠାଂ : ୨୫
ପ୍ରଥମ ସଂସ୍କରଣ : ୧୯୯୪, ରାଧାନାଥ ରାୟ

୫୧: ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୯୭
ପ୍ରଥମ ପ୍ରକାଶ : ୧୯୮୩, ଡଃ କ୍ଷେତ୍ରବାସୀ ନାୟକ

୫୨: Metamorphoses : Page : 193
Selected Works : Published : 1939, Ovid

୫୩: ରାଧାନାଥ ରାୟ ଗ୍ରନ୍ଥାବଳୀ : କେଦାର ଗୌରୀ : ପୃଷ୍ଠା : ୨୫
ପ୍ରଥମ ସଂସ୍କରଣ : ୧୯୯୪, ରାଧାନାଥ ରାୟ

୫୪: Metamorphoses : Page : 192. Book - IV
Selected works : Published : 1939, Ovid

୫୫: ରାଧାନାଥ ଗ୍ରନ୍ଥାବଳୀ : କେଦାର ଗୌରୀ : ପୃଷ୍ଠା : ୨୫
ପ୍ରଥମ ସଂସ୍କରଣ : ୧୯୯୪, ରାଧାନାଥ ରାୟ

୫୬: ସମୀକ୍ଷା ସମ୍ଭାର : ପୃଷ୍ଠା : ୨୦
ପ୍ରଥମ ପ୍ରକାଶ : ୨୦୦୦, ନାରାୟଣ ପଣ୍ଡା
୫୭: ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୭୦
ପ୍ରଥମ ପ୍ରକାଶ : ୧୯୮୩
୫୮: ତତ୍ରୈବ
୫୯: ମଧୁସୂଦନ ଗ୍ରନ୍ଥାବଳୀ : ନଦୀପ୍ରତି . ପୃଷ୍ଠା : ୧୧
ପ୍ରଥମ ସଂସ୍କରଣ : ୧୯୯୩, ମଧୁସୂଦନ ରାଓ
୬୦: The Brook : Page : 69
Published : 1946, Alfred Lord Tennyson
୬୧: ମଧୁସୂଦନ ଗ୍ରନ୍ଥାବଳୀ : ପୃଷ୍ଠା : ୧୧
ପ୍ରଥମ ସଂସ୍କରଣ : ୧୯୯୩, ମଧୁସୂଦନ ରାଓ
୬୨: Poems of Tennyson : Page : 52
Published : 1959, Alfred Lord Tennyson
୬୩: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା:୧୭୨
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୬୪: Poems of Tennyson : The Brook : Page : 72
Published : 1959, Alfred Lord Tennyson
୬୫: ମଧୁସୂଦନ ଗ୍ରନ୍ଥାବଳୀ : ପୃଷ୍ଠା : ୧୧
ପ୍ରଥମ ସଂସ୍କରଣ : ୧୯୯୩, ଡ. କ୍ଷେତ୍ରବାସୀ ନାୟକ
୬୬: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୭୩
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୬୭: ମଧୁସୂଦନ ଗ୍ରନ୍ଥାବଳୀ : ପୃଷ୍ଠା : ୩୪
ପ୍ରଥମ ସଂସ୍କରଣ : ୧୯୯୩, ମଧୁସୂଦନ ରାଓ
୬୮: Selected Poems : Page : 59, Published : 1969, P.B. Shelley
୬୯: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୭୪
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୭୦: Poetical Works : Page : 29
Published : 1969, John Milton
୭୧: ମଧୁସୂଦନ ଗ୍ରନ୍ଥାବଳୀ : ପୃଷ୍ଠା : ୫୫
ପ୍ରଥମ ସଂସ୍କରଣ : ୧୯୯୩, ମଧୁସୂଦନ ରାଓ
୭୨: Selected Poems : Page : 103,
Published : 1953, William Wordsworth
୭୩: ମଧୁସୂଦନ ଗ୍ରନ୍ଥାବଳୀ : ପୃଷ୍ଠା : ୪୯
ପ୍ରଥମ ପ୍ରକାଶ : ୧୯୯୩, ମଧୁସୂଦନ ରାଓ

୭୪: ଆଧୁନିକ ଓଡ଼ିଆ କାବ୍ୟ - ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୮୭
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୭୫: Collected Works : Page : 16, Published : 1952,
Edited by : Arthur Friedman
୭୬: ନନ୍ଦକିଶୋର ଗ୍ରନ୍ଥାବଳୀ : ପୃଷ୍ଠା : ୯୨
ପ୍ରଥମ ସଂସ୍କରଣ : ୧୯୫୫, ନନ୍ଦକିଶୋର ବଳ
୭୭: ପଲ୍ଲୀ କବି ନନ୍ଦକିଶୋରଙ୍କ ବିଷୟରେ ପଦେ : ପୃଷ୍ଠା:୬୧୨
ଉତ୍କଳ ସାହିତ୍ୟ, ୩୯ଶ ଭାଗ, ୧୨ଶ ସଂସ୍କରଣ - ୧୨୪୩ ସାଲ,
ଗୋପାଳପ୍ରସାଦ ସିଂହ
୭୮: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୮୯
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୭୯: ତତ୍ରୈବ
୮୦: Shakespeare Complete Works : Page : 409
Published : 1943, Edited : W.J. Craig
୮୧: ନନ୍ଦକିଶୋର ଗ୍ରନ୍ଥାବଳୀ : ପୃଷ୍ଠା : ୧୦୪
ପ୍ରଥମ ସଂସ୍କରଣ : ୧୯୫୫, ନନ୍ଦକିଶୋର ବଳ
୮୨: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୧୯୩
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୮୩: ତତ୍ରୈବ : ପୃଷ୍ଠା : ୧୯୪
୮୪: Poems of Tennyson : Page : 69
Published : 1946, Alfred Lord Tennyson
୮୫: ନୀଳକଣ୍ଠ ଗ୍ରନ୍ଥାବଳୀ : ପୃଷ୍ଠା:୬୮
ପ୍ରଥମ ପ୍ରକାଶ : ୧୯୬୩, ନୀଳକଣ୍ଠ ଦାସ
୮୬: ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ପୃଷ୍ଠା : ୮୪
ପ୍ରଥମ ପ୍ରକାଶ : ୧୯୮୩, ଡ. କ୍ଷେତ୍ରବାସୀ ନାୟକ
୮୭: କବି ମାନସ ଅତୀତ ଓ ସାଂପ୍ରତିକ : ପୃଷ୍ଠା : ୧୨୩
ପ୍ରଥମ ପ୍ରକାଶ : ୧୯୯୩, ଡ. ନୃସିଂହ ଚରଣ ଷଡଙ୍ଗୀ
୮୮: Selected Poems : Page : 51
Published : 1962. T.S. Eliot
୮୯: ସମୁଦ୍ର ସ୍ନାନ : ପୃଷ୍ଠା : ୩୮
ପ୍ରଥମ ପ୍ରକାଶ : ୧୯୭୦, ଗୁରୁପ୍ରସାଦ ମହାନ୍ତି
୯୦: ଗୁରୁପ୍ରସାଦଙ୍କ କାବ୍ୟକୃତି : ପୃଷ୍ଠା : ୪୫
ପ୍ରଥମ ପ୍ରକାଶ : ୧୯୭୯, ବିନୋଦ ବିହାରୀ ପଣ୍ଡା

୯୧: ଆଧୁନିକ ଓଡ଼ିଆ କବିତା ଓ ମିଥ୍ ପ୍ରସଙ୍ଗ : ପୃଷ୍ଠା : ୧୮୦
ପ୍ରଥମ ସଂସ୍କରଣ : ୧୯୮୭, ଡ. ଗିରୀଶ ଚନ୍ଦ୍ର ମିଶ୍ର

୯୨: Selected Poems : A song of Simeon : Page : 100
Published : 1962, T.S. Eliot

୯୩: ସମୁଦ୍ର ସ୍ନାନ : ପୃଷ୍ଠା : ୫୪
ପ୍ରଥମ ପ୍ରକାଶ : ୧୯୭୦, ଗୁରୁପ୍ରସାଦ ମହାନ୍ତି

୯୪: ଓ୍ୱେଷ୍ଟଲ୍ୟାଣ୍ଡ ଓ କାଳପୁରୁଷ : ପୃଷ୍ଠା : ୨୬୬
ଜୁନ୍ : ୧୯୮୫, ଝଙ୍କାର : ବସନ୍ତ କୁମାର ମହଂତ

୯୫: Selected Poems : Death by Water : Page : 63
Published : 1962. T.S. Eliot

୯୬: ସମୁଦ୍ର ସ୍ନାନ : ପୃଷ୍ଠା : ୪୫
ପ୍ରଥମ ପ୍ରକାଶ : ୧୯୭୦, ଗୁରୁପ୍ରସାଦ ମହାନ୍ତି

୯୭: ଶବ୍ଦ, ସ୍ମୃତି ଓ ସଂପର୍କ : କବି ସୀତାକାନ୍ତ : ପୃଷ୍ଠା : ୪୨
ପ୍ରଥମ ପ୍ରକାଶ : ୨୦୦୭, ଡ. ଦାଶରଥି ଦାସ, ଡ. ବିଜୟାନନ୍ଦ ସିଂହ

୯୮: ସୂର୍ଯ୍ୟସ୍ନାତ : ପୃଷ୍ଠା : ୧୨୬
ପ୍ରଥମ ପ୍ରକାଶ : ୧୯୯୫, ଯତୀନ୍ଦ୍ର ମୋହନ ମହାନ୍ତି

୯୯: ଅଷ୍ଟପଦୀ : ଭୂମିକା : ଗ
ପ୍ରଥମ ପ୍ରକାଶ : ୧୯୬୭, ଡ. ଯତୀନ୍ଦ୍ର ମୋହନ ମହାନ୍ତି

୧୦୦: Selected Poems : A Game of Chess : Page : 55
Published : 1962, T.S. Eliot

୧୦୧: ଅଷ୍ଟପଦୀ : ପୃଷ୍ଠା : ୨୩
ପ୍ରଥମ ପ୍ରକାଶ : ୧୯୬୭, ସୀତାକାନ୍ତ ମହାପାତ୍ର



# ସ୍ରଷ୍ଟାଙ୍କ ଜୀବନୀ ଓ ସୃଷ୍ଟି ସମ୍ଭାର

## (ଜନ୍ମ ଓ ଜୀବନୀ)

କୌଣସି ସ୍ରଷ୍ଟାର ସୃଷ୍ଟି ସମ୍ଭାର ଉପରେ ଆଲୋଚନା କରିବାକୁ ଗଲାବେଳେ କିମ୍ବା ତହିଁରେ ନିହିତ ଦର୍ଶନ ଉପରେ କୌଣସି ଟୀକ୍‌କା ଟୀପ୍‌ପଣୀ ଦେବାକୁ ହେଲେ, ସ୍ରଷ୍ଟାଙ୍କ ପରିବେଶ, ପରିସ୍ଥିତି ଓ ପାରିପାର୍ଶ୍ୱିକ ଅବସ୍ଥା ସଂପର୍କରେ ପରିଚିତ ହେବାକୁ ପଡ଼ିବ । ସୃଷ୍ଟି ସମ୍ଭାର ଭିତରେ ଏହି ସବୁ ପରିବେଶ ଓ ପରିସ୍ଥିତିର ପ୍ରତିଫଳନ ଘଟିବା ଏକ ସୁନିଶ୍ଚିତ ବ୍ୟାପାର । ଇଂରାଜୀରେ କୁହାଯାଇଛି 'Unless we understand the creater, we can not understand his creation'. ତେଣୁ ସ୍ରଷ୍ଟାର ଜନ୍ମ ଓ ଜୀବନୀ ତଥା ବ୍ୟକ୍ତିଗତ ଜୀବନ ଇତିହାସ ସଂପର୍କରେ ଏକ ସ୍ଥୂଳ ଧାରଣା ସର୍ବପ୍ରଥମେ ଆକଳନ କରିବା ଆବଶ୍ୟକ ହୁଏ ।

କବି ସୌରୀନ୍ଦ୍ର ବାରିକ୍ ଆଧୁନିକ ସାହିତ୍ୟ ଜଗତରେ ବେଶ ଜଣାଶୁଣା ନାଁ ଟିଏ । ଜଗତ ତାଙ୍କୁ ଜଣେ ସାରସ୍ୱତ ସାଧକ ଭାବରେ ଯେତିକି ନିବିଡ଼ କରିପାରିଛି, ବୋଧ ହୁଏ ବ୍ୟକ୍ତିଗତ ଜୀବନ ଚଳନି ଦୃଷ୍ଟିରୁ ସେତିକି ଆପଣେଇ ପାରିନାହିଁ । ସୁତରାଂ କବି ଶ୍ରୀଯୁକ୍ତ ବାରିକଙ୍କ ପାରିବାରିକ ଜୀବନ ସହିତ ଅତି ନିକଟତର ହେବା ପାଇଁ ଏହା ଏକ ପ୍ରୟାସ ମାତ୍ର ।

(କ) ଜନ୍ମ : ୧୯୩୮ ମସିହା ଅକ୍ଟୋବର ୩ ତାରିଖ ମୟୁରଭଞ୍ଜ ଜିଲ୍ଲାର ସଦର ମହକୁମା ବାରିପଦାର ମାଟିକୁ ପୂତ ପବିତ୍ରମୟ କରି ଗଢ଼ିତୋଳିଥିଲା ଯେଉଁ ପବିତ୍ର ଆତ୍ମାଟି ସେ ଆଉ କେହି ନୁହେଁ, ସେ ହେଉଛନ୍ତି ଆଧୁନିକ ସାହିତ୍ୟର ଜଣେ ଅପ୍ରତିଦ୍ୱନ୍ଦୀ କବି ଶ୍ରୀ ସୌରୀନ୍ଦ୍ର ବାରିକ । ପିତା ଦୈତାରି ବାରିକ ଓ ମାତା ଶଙ୍କରୀ ବାରିକଙ୍କ କୋଳ ସେ ଦିନ ମୁଖରୀତ ହୋଇଉଠିଲା, ଏହି ସୁଯୋଗ୍ୟ ସନ୍ତାନଙ୍କ କୁଆଁ ରାବରେ । ମୟୁରଭଞ୍ଜ ମାଟିରେ ନବ ପୁଲକ ସଂଞ୍ଚାର ହେଲା । ପିତା ଦୈତାରି ବାରିକ ବାରିପଦା ଉଚ୍ଚବିଦ୍ୟାଳୟର ଜଣେ ଆଦର୍ଶ ଛାତ୍ରବତ୍ସଳ ଶିକ୍ଷକ । ଶିକ୍ଷକତା ସହିତ ମାନବୀୟ ନୈତିକ ମୂଲ୍ୟବୋଧର ବିଭୂତିର ଶ୍ରୀ ମଣ୍ଡନ କରି ସେ ମୟୁରଭଞ୍ଜ ଜିଲ୍ଲାରେ ଖ୍ୟାତି ଅର୍ଜନ କରିଥାନ୍ତି । ବୃତ୍ତିଗତ ଜୀବନର ପାରମ୍ପରିକତାକୁ ରକ୍ଷାକରି ଦୈତାରି ବାବୁ

ରାଇରଂଗପୁର ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କରୁଥାନ୍ତି। ଏହିଭଳି ମୁହୂର୍ତ୍ତରେ ପୁତ୍ର ସୌରୀନ୍ଦ୍ରଙ୍କୁ କୋଳରେ ପାଇ ସେ ବେଶ ଆନନ୍ଦିତ।

(ଖ) ବାଲ୍ୟ ଜୀବନ : କବିଙ୍କର ଶୈଶବ ଓ କୈଶୋର କଟିଥିଲା ରାଇରଂଗପୁର ଓ ବାରିପଦାରେ। ସେ ସେହି ରାଇରଂଗପୁର ପ୍ରାଇମେରୀ ସ୍କୁଲରେ ମଧ୍ୟ ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ। ଖଡ଼ି ଛୁଆଁ ଠାରୁ ଆରମ୍ଭ କରି ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ା ସେଇଠି। ସେଠି ଯେତେବେଳେ ସେ ଦ୍ୱିତୀୟ ଶ୍ରେଣୀରେ ଛାତ୍ର, ସେତେବେଳେ ତାଙ୍କୁ ବୃତ୍ତି ପାଇଁ ପରୀକ୍ଷା ଦେବାକୁ ଅନୁମତି ମିଳିଥିଲା। ଏଥିରେ ସେ ବେଶ୍ ଆନନ୍ଦିତ ହୋଇଉଠିଲେ। ମାତ୍ର ବିଧିର ବିଧାନ ବଡ଼ ବିଚିତ୍ର। ସେ ବୃତ୍ତି ପରୀକ୍ଷା ଦେଲେ ସତ ମାତ୍ର ରାଇରଂଗପୁରରେ ନୁହେଁ, ସୁଦୂର ବହଳଦା ଗ୍ରାମରେ ଥିବା ଅନ୍ୟ ଏକ ହାଇସ୍କୁଲରେ। କାରଣ ନିୟମ ଥିଲା ଯେଉଁ ସ୍କୁଲରେ ପିତା ଶିକ୍ଷକ, ସେ ସ୍କୁଲରେ ତାଙ୍କ ପୁଅ କିମ୍ବା ତାଙ୍କ ସହ ପାରିବାରିକ ସଂପର୍କ ଥିବା କୌଣସି ବ୍ୟକ୍ତି ପରୀକ୍ଷା ଦେଇ ପାରିବେ ନାହିଁ। ଏହି ନିୟମରେ ଦୈତାରି ସାର୍ ଅଟଳ ରହିଲେ। ପିତାଙ୍କ ଜିଦ୍, ସେ ବହଳଦା ହାଇସ୍କୁଲରେ ପରୀକ୍ଷା ଦେଲେ ଓ ସଫଳତା ଲାଭକଲେ ମଧ୍ୟ। ବୃତ୍ତି ପରୀକ୍ଷା ଦେଇ ବୃତ୍ତି ପାଇବା ସୌରୀନ୍ଦ୍ର ବାରିକଙ୍କ ଜୀବନର ଏକ ଅଭୁଲା ସ୍ମୃତି ଓ ସ୍ମରଣୀୟ ଘଟଣା।

(ଗ) ଛାତ୍ର ଜୀବନ : ରାଇରଂଗପୁରରେ ପ୍ରାଥମିକ ଶିକ୍ଷା ଶେଷକରି ସେ ଆସିଲେ ବାରିପଦା ହାଇସ୍କୁଲକୁ। ପିତାଙ୍କ ତତ୍ତ୍ୱାବଧାନରେ ଆରମ୍ଭ ହେଲା ପାଠପଢ଼ା। ହାଇସ୍କୁଲର ଛାତ୍ର ଥିଲାବେଳେ ବିଶେଷ କରି ଅଷ୍ଟମ ଶ୍ରେଣୀ ଅଧ୍ୟୟନ ବେଳେ ତାଙ୍କର ଏକ ବହି ସହିତ ପରିଚୟ ହୁଏ, ଯା'ର ନାଁଟି ଥିଲା 'ଫୁଲ ଚାଙ୍ଗୁଡ଼ି'। ଏହି ବହିଟି ତାଙ୍କୁ ଦେଇଥିଲେ ତାଙ୍କ ସାହିତ୍ୟ ଶିକ୍ଷକ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଷଡ଼ଙ୍ଗୀ। ଏହି ବହିଟି ପାଠକଲା ପରେ ସାହିତ୍ୟ ସଂପର୍କରେ ସେ ଅଶେଷ ପ୍ରେରଣା ଲାଭକଲେ। ଏହା ପୂର୍ବରୁ ଶିଶୁ ସୁଲଭ ଅବବୋଧ ଭିତରେ ସେ ସାହିତ୍ୟକୁ ଡ଼ିଟେକ୍‌ଟିଭ ଭଳି ଭାବୁଥିଲେ। ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ ବେଳେ ବାରିପଦାରୁ ପ୍ରକାଶିତ ସାହିତ୍ୟ ପତ୍ରିକା 'ଚନ୍ଦ୍ରିକା'ର (ସଂପାଦକ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ମହାପାତ୍ର) ସଂସ୍ପର୍ଶରେ ଆସି ଲେଖା ଲେଖିକରିବାର ସ୍ୱପ୍ନ ତାଙ୍କ ମନରେ ଜାଗ୍ରତ ହୋଇଥିଲା। ତେବେ କେଉଁ ବିଭାଗରେ ଲେଖିବେ ଗଳ୍ପ ବା କବିତା, ଏହି ଉଭୟ କଥା ଚିନ୍ତା କରି ପ୍ରଥମେ ସୃଷ୍ଟି କଲେ ଗୋଟିଏ ଗଳ୍ପ, ଯାର ଶୀର୍ଷକ ଥିଲା 'ଆଶାୟୀ'। ଏହି ଗଳ୍ପଟି ପ୍ରଥମେ ପ୍ରକାଶ ପାଇବା ପରେ ତାଙ୍କ ସାହିତ୍ୟିକ ଜୀବନର ଆରମ୍ଭ ହୋଇଥିଲା। 'ଆଶାୟୀ' ଗଳ୍ପଟି 'ଚନ୍ଦ୍ରିକା' ପତ୍ରିକାରେ ପ୍ରାକଶ ପାଇଲା ପରେ ସେ ନିଜେ ଯେତିକି ଆନନ୍ଦିତ ହୋଇଛନ୍ତି, ତା' ଠାରୁ ଢ଼େର ବେଶି ଆନନ୍ଦିତ ହୋଇଛନ୍ତି ତାଙ୍କ ପିତା ଦୈତାରି ବାରିକ୍। ସେ ପୁତ୍ରକୁ ପ୍ରେରଣା ଦେଲେ ନୂଆ କିଛି ସୃଷ୍ଟି କରିବା ପାଇଁ। ଦୈତାରି ବାବୁ କେବଳ ଜଣେ ଜନ୍ମଦାତା ନଥିଲେ, ସେ ଥିଲେ ଏକାଧାରାରେ ଜଣେ ପ୍ରେରଣାଦାୟୀ ଶିକ୍ଷକ ଓ ଦିଗ୍‌ଦର୍ଶକ। ସର୍ବୋପରି ପିତା ହିଁ ମନ୍ତ୍ରଦାତା, ଜନ୍ମଦାତା, ଗୁରୁ ସବୁକିଛି।

ସମସ୍ତେ କହନ୍ତି କବିତା ହେଉଛି ସ୍ରଷ୍ଟା ଜୀବନର ଆଦ୍ୟ ଝଙ୍କାର । କିନ୍ତୁ ସୌରୀନ୍ଦ୍ର ଥିଲେ ଏହାର ବ୍ୟତିକ୍ରମ । 'ଗଳ୍ପ'ରୁ ହିଁ ତାଙ୍କ ସ୍ରଷ୍ଟା ଜୀବନର ଆରମ୍ଭ ଯେମିତି ଏକ ବୈଚିତ୍ର୍ୟ ।

ସୌରୀନ୍ଦ୍ର ବାରିପଦା ହାଇସ୍କୁଲରୁ କୃତିତ୍ୱର ସହ ୧୯୫୫ ମସିହାରେ ଉତ୍ତୀର୍ଣ୍ଣ ହୋଇ ଆଇ.ଏସ.ସି ପଢ଼ିବା ପାଇଁ ଆସନ୍ତି ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ । ବାପାଙ୍କର ଏକାନ୍ତ ଇଚ୍ଛା ପୁଅ ବିଜ୍ଞାନ ପଢ଼ି ଜଣେ ଡାକ୍ତର ହେଉ । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଥିଲା ଭିନ୍ନ । ଆଇ.ଏସ.ସି. ପରେ ବିଜ୍ଞାନ ପ୍ରତି ବୀତସ୍ପୃହ ହୋଇ ସୌରୀନ୍ଦ୍ର କଳା ବିଭାଗର ଛାତ୍ର ଭାବରେ ରେଭେନ୍‌ସା ମହାବିଦ୍ୟାଳୟରୁ ୧୯୫୭ ଠାରୁ ୧୯୬୧ ମଧ୍ୟରେ ସ୍ନାତକୋତ୍ତର ଶିକ୍ଷା ଇଂରାଜୀ ଭାଷା ସାହିତ୍ୟରେ ସମାପନ କଲେ ।

(ଘ) କର୍ମମୟ ଜୀବନ : ଶିକ୍ଷା ସମାପ୍ତି ପରେ ସେ ସେହି ବର୍ଷ ଯୋଗ ଦିଅନ୍ତି ଇଂରାଜୀ ଭାଷା ସାହିତ୍ୟ ବିଭାଗର ଅଧ୍ୟାପକ ଭାବେ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ, ବାରିପଦାରେ । ସେହିଠାରୁ ଆରମ୍ଭ ହୁଏ କବିଙ୍କର କର୍ମମୟ ଜୀବନର ଆଦ୍ୟ ପାହାଚ । ବାରିପଦାରୁ ସୁନ୍ଦରଗଡ଼, ସମ୍ବଲପୁର, ଭଦ୍ରକ, କଟକ, ଅନୁଗୁଳ ଆଦି କଲେଜରେ ଅଧ୍ୟାପନା କରି ଶେଷରେ ଭୁବନେଶ୍ୱରରୁ ଅବସର ନିଅନ୍ତି ଓଡ଼ିଆ ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ନିର୍ଦ୍ଦେଶକ ଭାବେ । ବୃତ୍ତିଗତ କର୍ମମୟ ଜୀବନର ଅବସାନ ଘଟେ ଏଇଠି । ପ୍ରଚୁର ସ୍ନେହ ଓ ଶ୍ରଦ୍ଧା ପାଇଛନ୍ତି ଚାକିରୀ ଜୀବନରେ । ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ଅଧ୍ୟାପନା କରି ସେ ସଂଗ୍ରହ କରନ୍ତି ଅନେକ ଅନୁଭୂତି ଓ ନିତ୍ୟ ନୂତନ ଅଭିଜ୍ଞତା । ସ୍ନେହ ଶ୍ରଦ୍ଧା ଦେଇ ସବୁକୁ ଆଦର କରି ନିଅନ୍ତି, ଆପଣେଇ ନିଅନ୍ତି । ହସ ଖୁସିର ମଣିଷ; କେଉଁଥିକି ବାରଣନାହିଁ । କିନ୍ତୁ ନିଜ ସଂପର୍କରେ ସେ ଭାରି ସଚେତନ । ହାଇସ୍କୁଲ ଠାରୁ କଲେଜ ଜୀବନ ପର୍ଯ୍ୟନ୍ତ, ସାହିତ୍ୟ ସୃଷ୍ଟି ପାଇଁ ସେ ପାଇଛନ୍ତି ଉପଯୁକ୍ତ ଖୋରାକ । ସ୍ୱାଧୀନଚେତା ମଣିଷଟିଏ । ଖୁବ୍ ଉଦାର, ସରଳ ଓ ଶୃଙ୍ଖଳିତ । ଅନ୍ଧାନୁକରଣ ଠାରୁ ଦୂରରେ ରହି ସତ୍ୟାନୁସନ୍ଧାନ ପାଇଁ ସତତ ବ୍ୟଗ୍ର । ଆତ୍ମାବିଷ୍କାରର, ପରମ୍ପରା ଓ ସଂସ୍କୃତିର ଅପୂର୍ବ ସମନ୍ୱୟ ଘଟିଛି ତାଙ୍କ ବ୍ୟକ୍ତିତ୍ୱରେ । ଜୀବନରେ କବିଟିଏ ହେବାର ଆଶା କବିଙ୍କର ସ୍ୱପ୍ନ ଭଳିଥିଲା । ବିଭିନ୍ନ ପରିବେଶ ଓ ପରିସ୍ଥିତି ତାଙ୍କୁ କବି ମଣିଷଟିଏ ହେବାପାଇଁ ପ୍ରେରଣା ଦେଇଛି । ରାଇରଂଗପୁର ଓ ବାରିପଦାର ସ୍ମୃତି ତାଙ୍କ ପାଇଁ ନିଶ୍ଚିତ୍ ଭାବେ ବିସ୍ମୟକର ତଥା ଅବିସ୍ମରଣୀୟ । ତା' ଛଡା ନିଜ ଗାଁ ଅମରଦା ମଧ୍ୟ ବେଶ୍ ଆକର୍ଷଣୀୟ । ଗାଁ ସହିତ ଯଦିଓ ତାଙ୍କର ସଂପର୍କ ଖୁବ୍ କମ୍, ତଥାପି ମଝିରେ ମଝିରେ ବିଶେଷ କରି ପାରିବାରିକ କାର୍ଯ୍ୟରେ ହେଉ ଅଥବା କୌଣସି ପର୍ବ ପର୍ବାଣିରେ ହେଉ, ସେ ଯାଆନ୍ତି ଗାଁକୁ । କାରଣ ଗାଁରେ ଜୀବନର ସ୍ୱାଦ ଭିନ୍ନ ପ୍ରକାରର । ଗାଁର ମିଠା ମିଠା ସ୍ମୃତି ସତେ ଯେମିତି ତାଙ୍କ ପାଇଁ ଯନ୍ତ୍ରଣା ହୋଇ ରହିଯାଇଅଛି । ଗାଁର ପ୍ରଭାବ ଅଳ୍ପ ହୋଇପାରେ ସତ, କିନ୍ତୁ ତାର ଗଭୀରତା ଅନେକ କିଛି । ଗାଁର ଘଞ୍ଚବଣ, ବାଘ, ଭାଲୁ ସତେ ଯେମିତି ତାଙ୍କର ସହଚର ଥିଲେ । ଗାଁ

ପୋଖରୀ ହୀରାସାଗର ତାଙ୍କ ସ୍ମୃତିର ଝଲକ ଓ କବିତାର ପୃଷ୍ଠଭୂମି । କବିତା ଲେଖିବାର ପହିଲି ଉଦ୍ୟମ ଏହି ହିରାସାଗରକୁ ନେଇ । ପ୍ରଥମ ପାହାଚର ଏହି ପ୍ରୟାସ ନାଁ ହେଲା ଗଦ୍ୟ ନା ହେଲା ପଦ୍ୟ । ତେବେ ଏହାହିଁ ତାଙ୍କର ପ୍ରଥମ କବିତା ଏବଂ ଏବେ ଏହା ଦୁଷ୍ପ୍ରାପ୍ୟ । ଏହିଠାରୁ ହିଁ କବିତା ଲେଖିବାର ପରିବେଶ ସୃଷ୍ଟି ହୋଇଛି ।

(ଙ) ପାରିବାରିକ ଜୀବନ : ଯୌଥ ପରିବାର ଭିତରେ ଜୀବନ କଟାଇ ତାର ସ୍ନେହ ମମତା ଆଜିର ନିଃସଙ୍ଗ ପରିବାରଠାରୁ କେତେଭଲ କବି ମର୍ମେ ମର୍ମେ ଉପଲବ୍ଧି କରିଛନ୍ତି । ଗାଁର ଜଣେ ସଂସ୍କୃତ ଶିକ୍ଷକଠାରୁ କବି ସାହିତ୍ୟ ବିଷୟରେ ଯଥେଷ୍ଟ ଜ୍ଞାନ ଆହରଣ କରିଥିଲେ । ସଂସ୍କୃତ ପଣ୍ଡିତଙ୍କ ପୁଅ ଈଶ୍ୱର ମିଶ୍ର ଜଣେ ଶିକ୍ଷକ ବି ଥିଲେ । ଯାହାଙ୍କ ଠାରୁ କବି, ସଚ୍ଚିଦାନନ୍ଦ ରାଉତରାଏ ସଂପର୍କରେ ଅନେକ କଥା ଜାଣିଥିଲେ । ସେଦିନ ଯେଉଁ କଥାଗୁଡାକୁ କବି ସାଧାରଣ ମନେ କରୁଥିଲେ, ଆଜି ତାହା ତାଙ୍କ ପାଇଁ ଅସାଧାରଣ ହୋଇ ପଡିଛି । ସାଧାରଣ ଘଟଣା ସହିତ ଆଜିର ଏହି ଅସାଧାରଣ ଚିତ୍ତବୃତ୍ତି ଖୁବ୍ ଗଭୀର ଭାବେ କବିଙ୍କ ହୃଦୟରେ ରେଖାପାତ କରିଛି । ଏହି ଚେଷ୍ଟା ଋଦ୍ଧିମନ୍ତ ଓ ସତ୍ୟଶୀଳ ହୋଇ ଉଠିଛି । ବାରିପଦାର ଶିକ୍ଷା, ସାଂସ୍କୃତିକ, ସାମାଜିକ ପରିବେଶ କବିଙ୍କ ଚେତନାକୁ ଖୁବ୍ ଋଦ୍ଧିମନ୍ତ କରିତୋଳିଥିଲା । କବିଙ୍କ ଜନ୍ମ, ଶିକ୍ଷା, ଦୀକ୍ଷା ସବୁକିଛି ସଂଘଟିତ ହୋଇଥିଲା ବାରିପଦାରେ । ଗୋଟିଏ ଶିକ୍ଷକ ମଧ୍ୟବିତ୍ତ ତଥା ଯୌଥ ପରିବାରରୁ କବିଙ୍କର ଆବିର୍ଭାବ । ସମଗ୍ର ପରିବାରଟି ଗୋଟିଏ ଆଦର୍ଶ ଉପରେ ବଞ୍ଚିରହିଥିଲା । ଏଇଟା ବା ଏସବୁ 'ମୋର' ନୁହେଁ ବରଂ 'ଆମର' ଏହି ନୀତିର ଆଦର୍ଶ ଉପରେ କବିଙ୍କ ଜୀବନର ଭିତ୍ତିଭୂମି । ଯେଉଁ ପରିବାରରେ ଅହଂ ନାହିଁ କି, ଅହଂକାର ନାହିଁ, ସେଇଠୁ ଆସେ ଜୀବନର ମୂଳମନ୍ତ୍ର । କବିଙ୍କ ଶିକ୍ଷାର ଯେଉଁଠି ବିଧିବଦ୍ଧ ଆରମ୍ଭ, ଚାକିରି ମଧ୍ୟ ସେଇଠୁ ଆରମ୍ଭ । ଗୋଟିଏ ପଟେ ବାରିପଦାର ମାଟିଗୋଡ଼ି ପାଣିପବନ ଅନ୍ୟପଟେ ସାଂସ୍କୃତିକ ପରମ୍ପରା କବିଙ୍କୁ କରିଥିଲା ଓତଃପ୍ରୋତ ଭାବେ ଜଡ଼ିତ । ବାରିପଦା ସହ କବିଙ୍କର ଅନ୍ତରଂଗ ସଂପର୍କ ଖୁବ୍ ନିବିଡ଼ ଓ ଗଭୀର । ସାହିତ୍ୟିକ ଜୀବନ ଓ ବାସ୍ତବ ଜୀବନର ତାହାଥିଲା ପ୍ରାଣକେନ୍ଦ୍ର । ରାଇରଂଗପୁରରୁ ଗାଁ, ପୁଣି ଗାଡ଼ିରେ ଧାଁ-ଦଉଡ଼, ବାମନ ଘାଟୀରେ ମଟର ଯାତ୍ରା, ଛୋଟ ରେଳଗାଡ଼ିରେ ପୁଣି ବାରିପଦାକୁ ଆଗମନ, ଏସବୁ ଥିଲା ସେଦିନ କବିଙ୍କ ପାଇଁ ମଜାଦାର ସ୍ମୃତି ଆଉ ସ୍ୱପ୍ନର ବେନ ।

(ଚ) ସାହିତ୍ୟିକ ଜୀବନର ଆଦ୍ୟସ୍ଫୁରଣ : ୧୯୫୫ ମସିହାରକଥା ।କବି ଥିଲେ ଇଣ୍ଟର ମେଡିଏଟ୍ ଶ୍ରେଣୀର ବିଜ୍ଞାନ ଛାତ୍ର । ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ ପଦାର୍ଥ ବିଜ୍ଞାନ ବିଭାଗର ପ୍ରଫେସର ଥାନ୍ତି, ଶ୍ରୀଯୁକ୍ତ କେ.ଏସ୍.ଆର. ମୂର୍ତ୍ତି । ବିଜ୍ଞାନ ଶ୍ରେଣୀରେ ସେ ତାଙ୍କଠାରୁ ଅନେକ ସାହିତ୍ୟିକଙ୍କ ବିଷୟରେ ସେମାନଙ୍କ କବିତା ସପକ୍ଷରେ କିଛି କିଛି ଧାରଣା ପାଇଥିଲେ । ଅବଶ୍ୟ ରେଭେନ୍ସା କଲେଜ ଥିଲାକବିଙ୍କ ସାହିତ୍ୟିକ ଜୀବନର ଉତ୍ତର ସୋପାନ । ଯେଉଁଠୁ ସେ କେବଳ କବିତା ସଂପର୍କରେ ଅଧିକ ସଚେତନ ହୋଇଥିଲେ । କବିତା ଲେଖିବାର ଆଗ୍ରହ ମଧ୍ୟ ତାଙ୍କର ଜାଗ୍ରତ ହୋଇଥିଲା ସେଇଠୁ ।

କବିଙ୍କ ଛାତ୍ର ଜୀବନରୁ କବିତାଲେଖା ଆରମ୍ଭ ହୋଇଥିଲା । ସେତେବେଳେ ସେ ବାରିପଦା କଲେଜର ଛାତ୍ର । ବାରିପଦା କଲେଜରୁ ପ୍ରକାଶ ପାଉଥିଲାବାର୍ଷିକ ମୁଖପତ୍ର 'ଭଞ୍ଜ-ଭାରତୀ' । ସେଥିରେ କବିଙ୍କର 'ଚିଲିକା' ଶୀର୍ଷକ ଏକ କବିତା ପ୍ରକାଶ ପାଇଥିଲା । ଏହା ଥିଲାକବିଙ୍କ ପ୍ରଥମ ପ୍ରକାଶିତ କବିତା । ସେ କବିତାଟି ଆଜି ଦୁଷ୍ପ୍ରାପ୍ୟ । କବିଙ୍କର ଏଯାବତ୍ ପ୍ରକାଶିତ କବିତା ସଂକଳନ ମାନଙ୍କରେ ସେ କବିତାଟିର ଚିହ୍ନ ବର୍ଣ୍ଣନାହିଁ । ତଥାପି ସେ କବିତାଟି ଅବିସ୍ମରଣୀୟ । କବି ସୌରୀନ୍ଦ୍ର କହନ୍ତି - ସେ କବିତାର ପଂକ୍ତିଗୁଡ଼ିକ ଭୁଲି ହେବ ନାହିଁ ଯଥା :-

ଚିଲିକାର ତୀରେ ତୀରେ
ପାହାଡ଼ର ଧାରେ ଧାରେ
ସରୀସୃପ ପରି
ଯାତ୍ରୀ ଗାଡ଼ି ଯାଉଥିଲାଗଡ଼ି
ଅଂଗେ ଧରି ଅଗଣିତ ଯାତ୍ରୀ
ଦ୍ୱିତୀୟ ଶ୍ରେଣୀ ଡବାରୁ
ମଣିଷର ବିରାଟ ଗଣ୍ଡି ମଧ୍ୟରୁ
ମୁଁ ବିଜ୍ଞାନର ଛାତ୍ର
ଦେଖୁଥିଲି ଚିଲିକାର ରୂପ ॥(୧)

ଅନ୍ୟଙ୍କୁ ଅନୁକରଣ କରି ନିଜକୁ ପ୍ରକାଶ କରିବାର ଯେଉଁ ବାସ୍ନା ତାହା କବିତାର ଛତ୍ରେ ଛତ୍ରେ ପ୍ରତିଫଳିତ । ଇଏତ ଥିଲା ବାରିପଦାର ଛାତ୍ର ବେଳର କବିତା ଲେଖିବାର ଆଗ୍ରହ ଓ ଉତ୍କଣ୍ଠା । କିନ୍ତୁ ବାରିପଦାରୁ ଯେତେବେଳେ ସେ ଆସି ପହଞ୍ଚନ୍ତି ରେଭେନ୍‌ସା କଲେଜରେ ପଢ଼ିବାପାଇଁ, ସେତେବେଳେ ସେ ଖୋଜି ପାଇଲେ ଆଧୁନିକ କାବ୍ୟ ଜଗତର ଜୀବନ ଜିଜ୍ଞାସା । ଏହିଠାରେ ତାଙ୍କ କବି ଜୀବନର ବାସ୍ତବ ଭିତ୍ତିଭୂମି ଗଢ଼ାହେଲା ଏବଂ ତାଙ୍କ ଚେତନାର ଗଭୀର ପରିବ୍ୟାପ୍ତି ହେଲା । କବିତା ଜଗତକୁ ବୃତ୍ତର ଭାବେ ପ୍ରବେଶ କରିବାପାଇଁ ମୋଟାମୋଟି ଭାବେ ଗୋଟିଏ ପରିବେଶ ସୃଷ୍ଟି ହୋଇ ସାରିଥିଲା । ଯଦିଓ ସେତେବେଳକୁ ସେ ଥିଲେ ଜଣେ ବିଜ୍ଞାନର ଛାତ୍ର । ଲେଖାଲେଖି ପ୍ରତି ଏତେଟା ଗୁରୁତ୍ୱ ସେଦେଇନଥିଲେ ମଧ୍ୟ ସାହିତ୍ୟ ଓ ସାହିତ୍ୟିକଙ୍କ ବିଷୟରେ ଗୋଟିଏ ପ୍ରକାର ଧାରଣା ତାଙ୍କର ଆସିଯାଇଥିଲା । କାରଣ ଶୈଶବରୁ ବାପାଙ୍କ ଠାରୁ ଶୁଣିଥିଲେ ପ୍ରାଚୀନ ଛାନ୍ଦ,ଚୌପଦୀ ଓ ଚର୍ଡିଶାଗୀତ । କବିସୂର୍ଯ୍ୟ ବଳଦେବ ରଥ ଭକ୍ତ କବି ବନମାଳୀଙ୍କ ଠାରୁ ଆରମ୍ଭ କରି ଦୀନକୃଷ୍ଣ, ଅଭିମନ୍ୟୁ ଓ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଯେତେ ସବୁ କାବ୍ୟ ସାହିତ୍ୟ ସେ ସମୟରେ ରଚନା ହୋଇଥିଲା, ପ୍ରାୟ ସେସବୁ ସହିତ କବି ସୌରୀନ୍ଦ୍ର ଅଳ୍ପ ବହୁତେ ପରିଚିତ ହୋଇସାରିଥିଲେ । ପଢ଼ିବା ପ୍ରତି ତାଙ୍କର ଥିଲା ପ୍ରବଳ ଆଗ୍ରହ । ଏପରିକି ସେ ଯେ କୌଣସିକାବ୍ୟ କବିତା ପଢୁଥିଲେ ତାର ଲେଖକ ଓ ବିଷୟବସ୍ତୁ ଗୁଡ଼ିକ ଟିପି ରଖୁଥିଲେ । ବିଶେଷ କରି ତାଙ୍କ ପ୍ରିୟ ଗାଁର ଶିକ୍ଷକ ଶ୍ରୀଯୁକ୍ତ

ଈଶ୍ୱର ମିଶ୍ରଙ୍କ ଠାରୁ କେତେକ ଆଧୁନିକ ଓଡ଼ିଆ କବିତା ବିଷୟରେ ସମ୍ୟକ ଧାରଣା ପାଇଥିଲେ, ବଂଗଳା ଓ ଇଂରାଜୀ ଆଧୁନିକ କବିତା ବିଷୟରେ ଅଳ୍ପ ବହୁତ ଧାରଣା ମଧ୍ୟ ପାଇଥିଲେ । ବଂଗଳା ଭାଷା ହିଁ ପ୍ରଥମେ ସେ ତାଙ୍କଠାରୁ ଶିଖିବା ଆରମ୍ଭ କରିଥିଲେ । ସେତେବେଳେ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଯେଉଁମାନେ ଲେଖୁଥିଲେ ସେମାନଙ୍କ କବିତାରୁ କିଛି କିଛି ଚିତ୍ରକଳ୍ପୀୟ ଶୈଳୀ ସଂପର୍କରେ ମଧ୍ୟ ସେ ଧାରଣା ଦେଇଥିଲେ । ଯେମିତିକି 'ଓଟ କୁଜ ପରି ପାହାଡ଼', 'ସିମେଣ୍ଟ କାରଖାନାର କୁଲି ପରି ଆକାଶ ବିବର୍ଣ୍ଣ', 'ଅଧାପୋଡ଼ା ସିଗାରେଟ୍ ପରି ଜୀବନ' ଇତ୍ୟାଦି ଇତ୍ୟାଦି । ମୋଟା ମୋଟି ଫକୀର ମୋହନ, ରାଧାନାଥ, ମଧୁସୂଦନ ଓ ଗଙ୍ଗାଧରଙ୍କ ଠାରୁ ଆରମ୍ଭ କରି ପରବର୍ତ୍ତୀ କବି ସଚି ରାଉତରାୟଙ୍କ ସମୟ ବେଳକୁ କବିତା ସଂପର୍କରେ କବିତାର ପ୍ରତିବିମ୍ବ ଓ ପ୍ରତିଛବି କ'ଣ ସେ ବିଷୟରେ ସଚେତନ ହୋଇସାରିଥିଲେ । ମଝିରେ ମଝିରେ ମଧ୍ୟ ପିତାଙ୍କ ଠାରୁ ଓଡ଼ିଆ ଓ ଇଂରାଜୀ କବିତା ଶୁଣି ବେଶି ପ୍ରଭାବିତ ହୋଇ ଥିଲେ ।

ବୋଧହୁଏ ସାହିତ୍ୟର ନିର୍ଦ୍ଦିଷ୍ଟ ସଂଜ୍ଞା ଖୋଜୁ ଖୋଜୁ ସେ ଆସି ପହଞ୍ଚିଲେ ରେଭେନ୍‌ସା କଲେଜରେ ଜଣେ ସାଧାରଣ ଛାତ୍ର ଭାବେ । ସେତେବେଳେ ଇଂରାଜୀ ଭାଷାର ଅଧ୍ୟାପକ ଥିଲେ ଯତୀନ୍ଦ୍ର ମୋହନ ମହାନ୍ତି । ତାଙ୍କ ସହିତ ପରିଚୟରୁ ଖୋଜି ପାଇଲେ କାବ୍ୟ କବିତାର ନିର୍ଦ୍ଦିଷ୍ଟ ସଂଜ୍ଞା ଏବଂ ତା ଭିତରୁ ପାଇଲେ ନିଜକୁ ନିଜ ଭାବରେଗଢ଼ି ତୋଳିବାର ସଂକଳ୍ପ । ରେଭେନ୍‌ସା କଲେଜର ଐତିହ୍ୟ ଓ ସାଂସ୍କୃତିକ ପରମ୍ପରା ଭିତରେ କବି ନିଜକୁ ନିଜେ ପ୍ରସ୍ତୁତ କରିବାପାଇଁ ଖୋଜୁଥିଲେ ଉପାୟ ! ଆଉ ସେହି ବୃହତ୍ ପରିବେଶ ଭିତରେ ଥିଲେ ତାଙ୍କର ଆଦର୍ଶ ଗୁରୁ ଅଧ୍ୟାପକ ଶ୍ରୀଯୁକ୍ତ ବିଧୁଭୂଷଣ ଦାସ, ଯିଏ କି ଇଂରାଜୀ ସାହିତ୍ୟର ପ୍ରଫେସର; ଡ. ରାଧାନାଥ ରଥ, ମନସ୍ତତ୍ତ୍ୱ ବିଭାଗର ପ୍ରଫେସର ଅଧ୍ୟାପକ ଗୁରୁ ଯତୀନ୍ଦ୍ର ମୋହନ ମହାନ୍ତି ଏବଂ କବିଙ୍କ ପ୍ରିୟ ବନ୍ଧୁ ସତ୍ୟନାରାୟଣ ମହାନ୍ତି । ଯେଉଁ ମାନଙ୍କର ସାହାଯ୍ୟ ସହଯୋଗ ଓ ସହାନୁଭୂତିର ବଶବର୍ତ୍ତୀ ହୋଇ କାବ୍ୟ ଜଗତ ସହ ପରିଚିତ ହୋଇ ସେ ଆସିଲେ ଓଡ଼ିଆ କବିତା କ୍ଷେତ୍ରକୁ ।

କବି ସୌରୀନ୍ଦ୍ର ଲେଖା ଲେଖି ଆରମ୍ଭ କଲାବେଳକୁ ଓଡ଼ିଆ କ୍ଷେତ୍ରରେ ଛୁଟିଥିଲା ପରିବର୍ତ୍ତନର ସ୍ୱର । କବିତା କ୍ଷେତ୍ରରେ ପରୀକ୍ଷା ନିରୀକ୍ଷାର ଧାରା ଆରମ୍ଭ ହୋଇ ଉଠିଥିଲା । ଏହି ନୂତନ ଚେତନା ତୀବ୍ରତର ହୋଇ ଉଠିଥିଲା । ଏକ ନୂତନ ଚେତନାର ଆଗ୍ରହକୁ ସେତେବେଳେ ସୃଷ୍ଟି ହୋଇଥିଲା ଏକ ବୈପ୍ଳବିକ ସ୍ୱରର ଅଭ୍ୟୁଦୟ । ସମଗ୍ର ବିଶ୍ୱସାହିତ୍ୟରେ ସେତେବେଳେ ଏଇ ପରୀକ୍ଷା ଧର୍ମୀଚେତନାର ସୁଅ ଛୁଟିଥିଲା । ଅନ୍ୟ ଭାବରେ କହିବାକୁ ଗଲେ ଆଧୁନିକ ଓଡ଼ିଆ କବିତା ପାଶ୍ଚାତ୍ୟର ଅନୁକରଣରେ ପୁରୁଣା ମରହଟ୍ଟୀ ପଣକୁ ଛାଡ଼ି ନୂଆଭାବରେ ନିଜକୁ ପ୍ରତିଷ୍ଠା କରିବାର ପ୍ରବଳ ଆଶା ଆକାଂକ୍ଷା ଜାଗ୍ରତ କରିଥିଲା, ଯାହାର ଚଳନ୍ତି ନାମଥିଲା ଆଧୁନିକ; ଅର୍ଥାତ୍ ପାଶ୍ଚାତ୍ୟ ସାହିତ୍ୟର ଚିନ୍ତାଓ ଚେତନାର ନିଛକ ଅନୁକରଣ ପ୍ରତିଛବି । ଏହି ନୂତନ ଚେତନାକୁ କେହି ଅନ୍ଧାନୁକରଣ ବୋଲି କଟାକ୍ଷ କରୁଥିଲେ ବି, ସେତେବେଳେ ସଚେତନ ଶିଳ୍ପୀଟିଏ ପାଇଁ ତାହା ଥିଲା ଆତ୍ମା

ବିସ୍ତାରର ଦ୍ୟୋତକ ଆଉ କିଛି ପରମ୍ପରା ସହ ଆଧୁନିକତାର ମଧୁର ସମନ୍ୱୟ । ଏହି ସମୟ ଠିକ୍ ଯେମିତି ଚେତନାର ବନ୍ଦ ଝରକା ଖୋଲିଯିବାବେଳେ ପାଶ୍ଚାତ୍ୟର ଆବହାଓ୍ୱା ବହୁଥିଲା । ସ୍ୱାଧୀନ ହେବାର କାମନା ଉଗ୍ର ହୋଇଉଠୁଥିଲା । ଅବଶ୍ୟ ଏ ସ୍ୱାଧୀନତା ଉଚ୍ଛୃଙ୍ଖଳତା ନୁହେଁ, ଅଧିକ ଶୃଙ୍ଖଳିତ ହେବାର କାମନା । ଏହି ଶୃଙ୍ଖଳିତ ଅବବୋଧରେ ଚେତନା ଭିତରେକଳା ଓ ସାହିତ୍ୟ ପ୍ରଭାବିତ ହେଲା । ଶୃଙ୍ଖଳାବୋଧ ସହ ମୁକ୍ତି ଚେତନାକୁ ନେଇ । ଜ୍ଞାନ ଗରିମାର ପ୍ରଚଣ୍ଡ ସହାୟତାରେ ଜୀବନ ହେଲା ବୁଦ୍ଧିମନ୍ତ । ପୁଣି ଏ ଜୀବନ ମଣିଷକୁ ବୁଝି ପ୍ରକାଶ କରିବା ପାଇଁ ଚେଷ୍ଟାକଲା ନିଜକୁ ନିଜସ୍ୱ ଢ଼ଙ୍ଗରେ । ମୋଟା ମୋଟି ଭାବେ ଏହାଥିଲା ମାନସିକ ବିପ୍ଲବର ଯୁଗ । ମୁକ୍ତି ଓ ସମନ୍ୱୟର ଯୁଗ । ନିଜକୁ ନିଜ ଭାବରେ ପ୍ରକାଶିତ କରିବାର ଢ଼ଙ୍ଗରୁ ନିଜସ୍ୱ ଅହଂର ପ୍ରତିଷ୍ଠାର ଯୁଗ । ଉପଯୁକ୍ତ ସ୍ଥିତି ଓ ସ୍ୱରକୁ ଆଧାର କରି ସେତେବେଳକୁ ପ୍ରତିଷ୍ଠିତ ହୋଇସାରିଲେଣି କବି ସଚ୍ଚିଦାନନ୍ଦ ରାଉତରାୟ । ପରେକବି ଭାନୁଜୀ ରାଓ, ଗୁରୁପ୍ରସାଦ ମହାନ୍ତି ଓ ବିନୋଦ ନାୟକ ପ୍ରମୁଖ କବିତା ଜଗତକୁ ପ୍ରବେଶ ଓ ପ୍ରତିଷ୍ଠା ଅର୍ଜନର ଭୂମିକା ଗ୍ରହଣ କଲେଣି ।

ଆଧୁନିକ ଓଡ଼ିଆ କବିତାର କ୍ଷେତ୍ର ପ୍ରସ୍ତୁତି ଚାଲିଥିଲା ବେଳେ କବି ଥିଲେ ରେଭେନ୍‌ସା କଲେଜର ଛାତ୍ର । ସେଇଠୁ ଆରମ୍ଭ କଲେ କବିତା ଲେଖିବାର ପ୍ରକ୍ରିୟା । ତାଙ୍କ ପ୍ରିୟ ଗୁରୁ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ସଂପାଦନାରେ ସେତେବେଳେ ପ୍ରକାଶ ପାଇଥିଲା 'ପ୍ରଜ୍ଞା' ନାମକ ଏକ ପତ୍ରିକା । ସେଇ ପତ୍ରିକାର ପ୍ରଥମ ସଂଖ୍ୟାରେ ପ୍ରକାଶ ପାଇଲା କବିଙ୍କ 'ଗୋଟିଏ ଜହ୍ନରାତି' ଶୀର୍ଷକ କବିତା ।(୨)

ଏହି କବିତା ପ୍ରକାଶ ପାଇଲା ପରେ ବୋଧହୁଏ କବିଙ୍କର ବିଧିବଦ୍ଧ ଭାବେ ଆଧୁନିକ କବିତା କ୍ଷେତ୍ରରେ ପ୍ରବେଶ ହୋଇଥିଲା କହିଲେ ସତ୍ୟର ଅପଲାପ ହେବନାହିଁ । ପରେ ପରେ ଆଉ ପଛକୁ ଫେରି ଚାହିଁ ନାହାନ୍ତି ସେ । ମାଡ଼ି ଚାଲିଛନ୍ତି ଆଗକୁ ଆଗକୁ । ପୁଣି ଗୋଟେ ପରେ ଗୋଟେ କବିତା ଲେଖି ଚାଲିଛନ୍ତି । ଚିତ୍ରକଳ୍ପୀୟ ଶୈଳୀରେ କବି ଗୁରୁ ଏଲିୟଟଙ୍କୁ ଅନୁକରଣକରି ଲେଖିବାର ମୋଡ଼ ପ୍ରଥମ କରି ତାଙ୍କ ପାଖରେ ଦେଖିବାକୁ ମିଳିଲା ସେଇ କବିତାରୁ । କବିତାର ଆରମ୍ଭ ଥିଲା ଏପରି - 'ଜହ୍ନ ଆଲୁଅରେ' / ଏ ରାତି ଆଉ ଏଇ ଆକାଶ / ଦିଶୁଥିଲା ଧୂଳି ଧୂସରିତ / ସିମେଣ୍ଟ କାରଖାନାର କୁଲି ପରି / ଆଉ ଏ ଅଧା ଛାଇଆଲୁଅରେ ଫିକା / ବିବର୍ଣ୍ଣ ଦିଶୁଥିଲା / ବିବର୍ଣ୍ଣ ଦିଶେ ଯେମିତି ପେଡ଼ି କିମ୍ବା ଖଟର କୌଣସି ଅଂଶ / ଓଡ଼ିଆ ଘରଣୀର ଚୂନ ହାତର ସ୍ପର୍ଶପାଇ ।(୩)

ଏଇ କବିତା ପ୍ରକାଶ ପାଇବା କବିଙ୍କ ଜୀବନରେ ସେତେବେଳେ ଏକ ସ୍ମରଣୀୟ ଘଟଣା ଥିଲା । କବିଙ୍କ ପ୍ରିୟବନ୍ଧୁ ସତ୍ୟନାରାୟଣ ମହାନ୍ତି କବିଙ୍କ ଅଜ୍ଞାତରେ ତାଙ୍କର 'ସଂଧ୍ୟାହତ' ଶୀର୍ଷକ ଏକ କବିତାକୁ ଆକାଶବାଣୀ କେନ୍ଦ୍ରକୁ ପାଠ କରିବା ପାଇଁ ପଠାଇ ଦେଇଥିଲେ । ସେତେବେଳେ ଆକାଶବାଣୀରେ କାବ୍ୟ କବିତାପାଠ ପାଇଁ ଯୁବ କବିମାନଙ୍କୁ ବିଶେଷ କରି ଅଗ୍ରାଧିକାର ଦିଆଯାଉଥିଲା ଏବଂ ଯେଉଁ ବିଭାଗରେ କବିତାପାଠ ହେଉଥିଲା ସେହି ବିଭାଗର ନାମ 'ପୁଷ୍ପଗିରି' ।

ଆକାଶବାଣୀରଏହି 'ପୁଷ୍ପଗିରି' ବିଭାଗରେ ସେତେବେଳେ କବିତାଟି ପାଠ କରିଥିଲେ, କବିଙ୍କଗୁରୁ ପ୍ରଫେସର ରାଧାନାଥ ରଥ; ଯାହା ପରେ କବି ଅନେକ ବର୍ଷ ପରେ ଜାଣିଥିଲେ । ଏହି କବିତାଟି କବିଙ୍କର ରେଭେନ୍‌ସା କଲେଜର ଛାତ୍ର ଥିବାବେଳର ଲେଖା । ବିଶେଷ କରି କନିକା ଲାଇବ୍ରେରୀରେ ପଢ଼ାପଢ଼ି ସମୟରେ ଏହି କବିତାଟିର ସୃଷ୍ଟି ହୋଇଥିଲା । ତା' ପରେ ବଢ଼ି ଚାଲିଲା ଆଗ୍ରହ ପରେ ଆଗ୍ରହ; ଗୋଟିଏ ପରେ ଗୋଟିଏ କବିତାର ସୃଷ୍ଟି ।

ଛାତ୍ର ଜୀବନରେ ସୌରୀନ୍ଦ୍ରଙ୍କ ସଂଗୀତ ଓ ଚିତ୍ରକଳା ପ୍ରତି ଗଭୀର ଆକର୍ଷଣ ଥିଲା । ଆକାଶବାଣୀ ରେଡ଼ିଓରୁ ହେଉ ଅବା ସିନେମାର ଆଧୁନିକ ଗୀତ ହେଉ, କବିଙ୍କର ଏସବୁ ଶୁଣିବାପାଇଁ ଥିଲା ଅହେତୁକ ଆକର୍ଷଣ । ତାଙ୍କର ସ୍ମରଣ ଶକ୍ତି ଏତେ ପ୍ରଖର ଥିଲା ଯେ ସିନେମାର ଗୀତଗୁଡ଼ିକ ଧାରାବାହିକ ଭାବେ କେବଳ ମନେ ରଖିପାରୁନଥିଲେ, ସେଗୁଡ଼ିକ ସ୍ୱର ଲୟ ତାଳଦେଇ ଅନର୍ଗଳ ଭାବେ ଗାଇ ପାରୁଥିଲେ । ଠିକ୍ ସେମିତି ଚିତ୍ରକଳା ବା Painting ପ୍ରତି ତାଙ୍କର ଥିଲା ଗଭୀର ଅନୁରାଗ । ସେ ମୋନାଲିସା ହୁଅନ୍ତୁ ଅବା ପିକାଶୋ ହୁଅନ୍ତୁ, ଏ ସବୁଙ୍କର ନାମ ଯେତେବେଳେ ଶୁଣୁଥିଲେ ସେ ବିଷୟରେ ଅଧିକ ତଥ୍ୟ ଜାଣିବା ପାଇଁ ବହି ସଂଗ୍ରହ କରି ପଢ଼ି ନେଉଥିଲେ ।

ତାଙ୍କ ଛାତ୍ର ଜୀବନ ବେଳର ଆଉ ଏକ କଥା । ଛାନ୍ଦ ଗୀତରେ ତାଙ୍କର ଏପରି ପ୍ରବେଶଥିଲା ଯେ ସେ ସମୟରେ ରାଇରଂଗପୁର ସହରରେ ମୋହନ ଗୋସ୍ୱାମୀଙ୍କ ନିର୍ଦ୍ଦେଶରେଏକ ନାଟକର ଆୟୋଜନ କରାଯାଇଥିଲା । ସେହି ନାଟକଟିର ଅଭିନୟ ସମୟରେ ଯେଉଁ ସଂଗୀତ ବା ଛାନ୍ଦ ଗୁଡ଼ିକଗାନ କରାଯାଉଥିଲା ସେଗୁଡ଼ିକ ସଂପର୍କରେ ସେ ଥିଲେ ଖୁବ୍ ସଚେତନ । ଏପରିକି ଛାନ୍ଦ ପୂର୍ବରୁ ଗାନ କରାଯାଇଥିବା ଗୋଟିଏ ସଂଗୀତର ସ୍ୱର, ଲୟ, ତାଳ, ଭୁଲ ହେବାରୁ ସେ ନିଜ ପିତାଙ୍କ ପାଖରେ ଏକଥା ପ୍ରକାଶ କରିଥିଲେ । ନିଜ ପିତା ମଧ୍ୟ ସଂଗେ ସଂଗେ ମୋହନ ଗୋସ୍ୱାମୀଙ୍କ ଦୃଷ୍ଟି ଆକର୍ଷଣ କରାଇ ତାହା ସଂଶୋଧନ କରାଇ ନେଇଥିଲେ । ଏ ସବୁର ଗଭୀର ଅନୁଭୂତି ଓ ତାର ପ୍ରଭାବ କବିଙ୍କ ଭବିଷ୍ୟତର ପଥକୁ ଯେ ଉଜ୍ଜ୍ୱଳ କରିଥିଲା, ଏହା ନିଶ୍ଚିତ ଓ ନିଃସନ୍ଦେହ ।

ଛାତ୍ର ଜୀବନରେ ରେଭେନ୍‌ସା କଲେଜର ଛାତ୍ରାବାସ ମଧ୍ୟ ତାଙ୍କୁ କମ୍ ସ୍ମରଣୀୟ କରି ରଖିନାହିଁ । ପାଠପଢ଼ା ସାଙ୍ଗକୁ କବିତା ଲେଖିବା, କବିତା ସଂପର୍କରେ ନୂଆ ନୂଆ ତଥ୍ୟଗତ ଆଲୋଚନା କରିବା, ଏସବୁ ଥିଲା ତାଙ୍କର ନିତିଦିନିଆ ବ୍ୟାପାର । ସ୍ନାତକ ଶ୍ରେଣୀର ଛାତ୍ର ଥିଲାବେଳେ କବିଙ୍କ ଉପର ଶ୍ରେଣୀରେ ପାଠ ପଢୁଥିବା, ବିଶେଷ କରି ରବି ପଟ୍ଟନାୟକ, ଯତୀନ୍ଦ୍ର ମୋହନ ପଟ୍ଟନାୟକ ଓ ଧୀରେନ ପଟ୍ଟନାୟକଙ୍କ ସହ କବିତା ସଂପର୍କରେ ବିଶଦ ଆଲୋଚନା, ସେତେବେଳର ସାହିତ୍ୟିକ ପାଣିପାଗ ସଂପର୍କରେ ଗଭୀର ମନୋନିବେଶ ଓ ବିଭିନ୍ନ ସାହିତ୍ୟ ସଭା ସମିତିରେ ଯୋଗଦାନ କବିଙ୍କ ପକ୍ଷରେ ବିଶେଷ ସହାୟକ ହୋଇଥିଲା ।

୧୯୬୧ ମସିହାରେ ପ୍ରଥମ କରିସେ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ ବାରିପଦାରେ ଅଧ୍ୟାପକ ଭାବେ ଯୋଗଦାନ କରିବାକୁ ଯାଆନ୍ତି । ଆନନ୍ଦ ଉଲ୍ଲାସରେ ପ୍ରାଣଭରି ଉଠେ । ଯେଉଁ କଲେଜରେ ଅତୀତରେ ସେ ଜଣେ ଛାତ୍ର ଥିଲେ ପୁଣି ସେହି କଲେଜକୁ ସେ ଆସିଛନ୍ତି ଅଧ୍ୟାପକ ଭାବେ ଶିକ୍ଷାଦାର୍ନ କରିବାପାଇଁ - ଏହା ନିଶ୍ଚିତ ଭାବେ ଆନନ୍ଦ ଦାୟକ କଥା । ବାରିପଦା ମୟୁରଭଂଜ ଜିଲ୍ଲାର ସଦର ମହକୁମା ଯୋଗୁଁ ତାର ସାମାଜିକ ଓ ସାଂସ୍କୃତିକ ଚେତନା ଥିଲା ଖୁବ୍ ଉଚ୍ଚରେ ଏବଂ ଏହା ଥିଲା ଐତିହାସିକ ଓ ସାଂସ୍କୃତିକ ପୀଠର ସମନ୍ୱୟ ସ୍ଥଳୀ । ସେଠି ପ୍ରାୟ ଅଧିକାଂଶ ଥିଲେ ଉଚ୍ଚ ଶିକ୍ଷିତ ଓ ସଂସ୍କୃତି ସଂପନ୍ନ । ସେହିଭଳି ଏକ ପରିବେଶ ଭିତରେ ସେ ଅଧ୍ୟାପକ ଭାବେ ଯୋଗ ଦିଅନ୍ତି । ସେତେବେଳେ ସେଠାରେ ଯେଉଁମାନେ ଅଧ୍ୟାପନା ଦାୟିତ୍ୱରେ ଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଅଧ୍ୟାପକ ହୃଦାନନ୍ଦ ରାୟ, କବି ଅଧ୍ୟାପକ ବେଣୁଧର ରାଉତ, ଅଧ୍ୟାପକ ବଂଶୀଧର ମହାନ୍ତି ଓ ବିଚିତ୍ରାନନ୍ଦ ମହାନ୍ତି । କବି ଓ ଗୀତିକାର ଜୀବନାନନ୍ଦ ପାଣିଙ୍କ ସହ ମଧ୍ୟ ସଂପର୍କ ସ୍ଥାପିତ ହୋଇଥିଲା ଏଇଠି । ଏମାନଙ୍କ ସଂସ୍ପର୍ଶରେ ଆସି କବି ଅଧିକ ପ୍ରଭାବିତ କେବଳ ହୋଇ ନଥିଲେ, ଗଭୀର ଭାବେ ଆଧୁନିକ ଓଡ଼ିଆ କବିତା ପ୍ରତି ମଧ୍ୟ ସଚେତନ ହୋଇ ପଡିଥିଲେ । ଫଳରେ ଗୋଟିଏ ପରେ ଗୋଟିଏ ମାନସ ସନ୍ତାନର ସୃଷ୍ଟିକରି ସେ ଆଗେଇ ଚାଲିଥିଲେ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରକୁ । ଆଉ ପଛକୁ ଫେରି ଚାହିଁବାର ବେଳ ନାହିଁ । କବିତା ଲେଖିଛନ୍ତି, ପଢ଼ିଛନ୍ତି, ପଢ଼େଇଛନ୍ତି, ଆମକୁ ଶୁଣେଇଛନ୍ତି ଏବଂ ସର୍ବୋପରି କବିତାକୁ ବଞ୍ଚେଇ ଚାଲିଛନ୍ତି । ତାଙ୍କ କାବ୍ୟ ଜଗତର ପ୍ରଥମ ଅର୍ଘ୍ୟ ଭାବେ ୧୯୭୫ରେ ପ୍ରକାଶ ପାଏ 'ସାମାନ୍ୟ କଥନ' ଅନେକ ପ୍ରତିଶ୍ରୁତି-ପୂର୍ଣ୍ଣ ଆଶା ଓ ଆକାଂକ୍ଷାକୁ ନେଇ । ତା' ପରେ ଉପଭାରତ (୧୯୮୧), ଆକାଶ ପରିନିବିଡ଼ (୧୯୮୫), ଗୁଣ୍ଣୁଗୁଣ୍ଣୁ ଚିତ୍ରପଟ (୧୯୮୬), ଲୁହଠୁ ବି ଅନ୍ତରଂଗ (୧୯୮୯), ଅନୁଭାରତ (୧୯୯୦), ଆମ ଦୁହେଁ (୧୯୯୧), ଚହଲା ଛାଇରେ ଘଡ଼ିଏ (୧୯୯୫), ପଢ଼ ବା ନ ପଢ଼ (୧୯୯୭), ହଳଦୀ ବସନ୍ତ (୧୯୯୯), ଆମ ଦିହିଙ୍କ କଥା (୨୦୦୧) ଓ ଯେତେସବୁ ବୀଥିକୁ ନେଇ (୨୦୦୩) ତାଙ୍କର ଏଯାବତ୍ ପ୍ରକାଶିତ କବିତା ସଂକଳନ । ଜାତିର ଜନକ ମହାତ୍ମାଗାନ୍ଧୀ ଓ ତାଙ୍କ ଜୀବନ ଓ ଦର୍ଶନକୁ ନେଇ କବିଙ୍କର ଅନ୍ୟତମ କାବ୍ୟକୃତି 'ଭାରି ମନେପଡ଼େ'. ଏବେ ପ୍ରକାଶ ନୂତନ ଭାବେ ପ୍ରକାଶିତ ।

କବି ସୌରୀନ୍ଦ୍ର ବାରିକଙ୍କ ଜୀବନୀ ଓ ଜୀବିକାର ବୃତ୍ତ ସହ ପରିଚିତ ହେଲା ପରେ ଏବେ ତାଙ୍କ କାବ୍ୟ ସଂପର୍କରେ ଜାଣିବା ଆବଶ୍ୟକ ଓ ସହଜ ହୋଇପଡ଼େ । ସ୍ରଷ୍ଟାର ପ୍ରକୃତ ପରିଚୟ ମିଳେ ତାହାର ସୃଷ୍ଟି ସଂପଦରୁ । କବି ସୌରୀନ୍ଦ୍ରଙ୍କ ବାସ୍ତବ ପରିଚୟ ପାଇଁ ଆବଶ୍ୟକ ହୁଏ ତାଙ୍କ କାବ୍ୟ ସଂସାରର ଅବଲୋକନ, ଆଲୋଚନା ଓ ସମୀକ୍ଷଣ । ଏହି ସମୀକ୍ଷଣ ଓ ଆଲୋଚନା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନବପଥର, ନବୀନ ସୃଜନୀର ସାରଗର୍ଭକ ସାରସ୍ୱତ ସଂପଦ ହୋଇ ରହିବ ।

(ବ୍ୟକ୍ତି ଓ ବ୍ୟକ୍ତିତ୍ୱ)

(କ) ବ୍ୟକ୍ତି :-

କବି ଶ୍ରୀଯୁକ୍ତ ସୌରୀନ୍ଦ୍ର ବାରିକ

ପତ୍ନୀ - ରମା

ପୁତ୍ର ବିଧାନ ଚନ୍ଦ୍ର, କନ୍ୟା - ଶୂନ୍ୟା

ଏହି ଛୋଟ ସଂସାରଟିକୁ ନେଇ କବି ସୌରୀନ୍ଦ୍ର ବାରିକ ନିଜକୁ ବୈକୁଣ୍ଠାଧିପତି ବୋଲାଇଥିଲେ । ପରସ୍ପର ସ୍ନେହ ଶ୍ରଦ୍ଧାରେ ମମତାମୟୀ ପତ୍ନୀ ରମା ପରିବାରଟିକୁ ବାନ୍ଧି ରଖିଥିଲେ । ନିଜର ଅତି ପ୍ରିୟ ଭାବରେ ପୋଷା କୁକୁରଟିଏ ଥିଲା କବିଙ୍କର ସାଥି । ଆସବାବ ଭିତରେ ଅତି ଆଦରଣୀୟ ଥିଲା କାଗଜ, କଲମ ଓ ବହି ସାଙ୍ଗକୁ ନିଜ ପିଲାଦିନର ପୁରୁଣା ସାଇକଲଟି । ନିଷ୍କପଟ ବ୍ୟବହାର ଓ ଆତ୍ମୀୟତା ତାଙ୍କର ଅଳଙ୍କାର । ବେଶଭୂଷାରେ ସରଳତା, ଚାକଚକ୍ୟର ଜୀବନ ଧାରରୁ ଅନେକ ଦୂରରେ ଥାଇ ସେ ଜଣାଯାନ୍ତି ଅତି ବିନୟୀ ।

(ଖ) ବ୍ୟକ୍ତିତ୍ୱ :

ଦୀର୍ଘ ଦିନର ଅଧ୍ୟାପନା ଜୀବନରୁ ଅବସର ମିଳିବା ପରେ ସେ ଚୁପ୍‌ଚାପ୍, ମାତ୍ର ଅସହାୟତାରେ ଜର୍ଜରିତ ନୁହନ୍ତି । ବହିପତ୍ର ଘଡ଼ାପଢ଼ି, ଲେଖକମାନଙ୍କ ସହ ମିଳାମିଶା, ତରୁଣମାନଙ୍କ ସହ ଭାବ ବିନିମୟ ଓ ସାହିତ୍ୟ ସାଧନାରେ ସେ ବିତାଇ ଦିଅନ୍ତି ତାଙ୍କର ସମୟ । ନିଜ ବିଷୟରେ ସେ ଆଦୌ ବିଚଳିତ ନୁହନ୍ତି ।

ବିଳମ୍ବରେ କବିତା ଜଗତକୁ ପ୍ରବେଶ କରିଥିଲେ କବି ସୌରୀନ୍ଦ୍ର, ମାତ୍ର କବିତା ତାଙ୍କୁ ଖୁବ୍ ଶୀଘ୍ର ଆପଣେଇ ନେଲା । ସାହିତ୍ୟ ଆଶା କଲା ତାଙ୍କ ଶବ୍ଦ-ଖେଳର ଏକାଧିକ ମହିମା ମଣ୍ଡିତ ଉପହାର । ସେ ନିମଗ୍ନ ହେଲେ ସାଧନାରେ, ସିଦ୍ଧି ଲଭିଲେ ଜଣେ ପ୍ରଖ୍ୟାତ କବି ଭାବରେ । ଆଲୋଚନା ଓ ଅନୁବାଦ ଭଳି କଳା ତାଙ୍କୁ ମଧ୍ୟ ପର କରିପାରିନାହିଁ । ସେ ଦିଗରେ ମଧ୍ୟ କବି ସୌରୀନ୍ଦ୍ର ଜଣେ ଧୂରୀଣ ସ୍ରଷ୍ଟା । 'ଏଡ୍‌ମାଣ୍ଡ ବାର୍କ' ଙ୍କ ସୃଜନଶୀଳ ସମାଲୋଚନା ପ୍ରବନ୍ଧ 'ମହାନ ଓ ସୁନ୍ଦର ଧାରଣାର ମୂଳଉତ୍ସ' ପୁସ୍ତକର ଅନୁବାଦ କରିଛନ୍ତି ସେ । ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଉପରେ ଇଂରାଜୀ ମନୋଗ୍ରାଫ ଲେଖିଛନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ । ଭାରତର ବିଭିନ୍ନ ଭାଷାରେ ଅନୁଦିତ ହୋଇ ତାଙ୍କର କବିତା; ଦେଶର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ତାଙ୍କର ଲେଖା, ଅନୁବାଦ ଓ ପୁସ୍ତକ ସମୀକ୍ଷା ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ସମେତ 'ଧରିତ୍ରୀ' ସମ୍ମାନ ମଧ୍ୟ ପାଇଅଛନ୍ତି । ଏହା ବ୍ୟତୀତ ସେ ଓଡ଼ିଆ କବିତାରେ ଜଣେ ନୀରବ ତପସ୍ୱୀ ହିସାବରେ ଏକାଧିକ ଅନୁଷ୍ଠାନ ତରଫରୁ ସମ୍ମାନିତ ହୋଇଛନ୍ତି ମାତ୍ର ଏସବୁ ପ୍ରତି ଆପାତତଃ ନିର୍ଲିପ୍ତ କବି ବିଶ୍ୱାସ ରଖନ୍ତି ସାହିତ୍ୟର ସାର୍ବଜନୀନ ଆବେଦନରେ ଓ ସାହିତ୍ୟିକର ଆଚାରନିଷ୍ଠ

ଆନ୍ତରିକତାରେ । ସେ ଗୋଷ୍ଠୀରେ ନଥାଇ ସଦା ସର୍ବଦା ଥାଆନ୍ତି ସୃଷ୍ଟିରେ, ବିଜ୍ଞାପନରେ ନଥାଇ ଥାଆନ୍ତି ମନ୍ତ୍ରଗାନରେ ।

ଆମର ପରମ୍ପରା, ସଂସ୍କୃତି ଏବଂ ମହାଭାରତୀୟ ଚିରନ୍ତନତାର ବିବିଧ ମୂଲ୍ୟବୋଧ ତାଙ୍କର ସୃଷ୍ଟି ସମ୍ଭାରରେ ଉଜ୍ଜ୍ୱଳ । ଭାରତୀୟ ପ୍ରାଚୀନ ଚରିତ୍ରମାନଙ୍କର ଅନୁଶୀଳନ ଏବଂ ବର୍ତ୍ତମାନର ସମାଜ-ସ୍ଥିତିରେ ସେମାନଙ୍କୁ ଆରୋପ କରି ସେ ମହାଭାରତୀୟ ଚେତନାର ଚିରନ୍ତନତାକୁ ସୃଜନଶୀଳ ପ୍ରବାହରେ ପରିଣତ କରିଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ସୌରୀନ୍ଦ୍ରଙ୍କ ରଚନାରେ ଅତ୍ୟନ୍ତ ନିରୀହ, ସରଳ, ଅକପଟ ଓ ଆତ୍ମୀୟ ପ୍ରସଙ୍ଗ ଗୁଡ଼ିକପ୍ରତିଫଳିତ ହୋଇଛି । ନିବିଡ଼ ମାତ୍ରାରେ ତଲ୍ଲୀନତା ସାଙ୍ଗକୁ ଅଭିବ୍ୟକ୍ତିରେ ପ୍ରତ୍ୟକ୍ଷପଣ ଏସବୁ କବିତାର ବିଶେଷ ଗୁଣ । ସାଧାରଣ ପଦାର୍ଥ ଏପରିକି ଅତ୍ୟନ୍ତ ନଗଣ୍ୟ ମନେହେଉଥିବା ଚିନ୍ତାକୁ ନେଇ ସୌରୀନ୍ଦ୍ର ଯେଉଁ କବିତା ଲେଖିଛନ୍ତି, ସେ ସବୁ ପାଠକ ଆଗରେ ଏକ ବିକଳ୍ପ ବିଶ୍ୱ ନିର୍ମାଣ କରିଥାଏ । ସାଧାରଣ ପଦାର୍ଥ ମାନଙ୍କରେ ପ୍ରାଣ ଖଞ୍ଜି ଓ ଆତ୍ମୀୟତା ଆରୋପ କରି ସେ ପାଠକ ପାଇଁ ଏକ ବିସ୍ମୟକର ଅନୁଭବ ଆଣି ଦେଇଥାନ୍ତି । ସାମ୍ପ୍ରତିକସାହିତ୍ୟର ଅଧିକାଂଶ ସ୍ରଷ୍ଟା ଅନୁଭବ - ଆବେଗକୁ ନିଜ ଭିତରେ ଆବଦ୍ଧ କରି ରଖିଥିଲାବେଳେ ସୌରୀନ୍ଦ୍ର ନିଜଠାରୁ ମୁକ୍ତ ହୋଇ ବସ୍ତୁ ଭିତରେ ବିଚିତ୍ର ବିଶ୍ୱର ଆବିଷ୍କାର କରିଥାନ୍ତି । କହିବାକୁଗଲେ, ସେ ସମକାଳୀନତାର ପ୍ରାଣ ପ୍ରାଚୁର୍ଯ୍ୟରେ ପ୍ରଲୁବ୍ଧ ମାନସିକତା ନେଇ ଦୈନନ୍ଦିନ ଜୀବନର ଚାରି ପାଖରେ ପରିଦୃଷ୍ଟ ପଦାର୍ଥମାନଙ୍କୁ କବିତାର ସିଂହାସନରେ ପ୍ରତିଷ୍ଠିତ କରିପାରନ୍ତି । ପରିବେଶର ସାଧାରଣୀକରଣ, ନିହାତି ଗତାନୁଗତିକ ପ୍ରସଙ୍ଗ ଓ ପଦାର୍ଥ ଭିତରେ ପରିବର୍ତ୍ତିତ ପୃଥିବୀର ଲାଳନ ପାଳନ ସାଙ୍ଗକୁ ଗଭୀର ସମ୍ବେଦନା ଏବଂ ପ୍ରତ୍ୟକ୍ଷ ଭାଷା ପ୍ରୟୋଗ ସୌରୀନ୍ଦ୍ରଙ୍କ କବିତାର ବୈଶିଷ୍ଟ୍ୟ ହୋଇ ଆମ ସମୟରେ ତାଙ୍କୁ ଭିନ୍ନ ମର୍ଯ୍ୟାଦା ଦେଇଛି ।

(ଗ) ଅନ୍ତରଙ୍ଗ ଆଳାପ :

ଆଧୁନିକ ସାହିତ୍ୟର ସାରସ୍ୱତ ସାଧକ ଜଣେ ପ୍ରତିଷ୍ଠିତ କବି ସୌରୀନ୍ଦ୍ର ବାରିକଙ୍କୁ ସାକ୍ଷାତ କରି, ମୁଁ ଭାବୁଛି ସାହିତ୍ୟ କ୍ଷେତ୍ରରେ ଯଥାର୍ଥ ଗବେଷଣାର ପଥ ଅନୁସରଣ କରିଛି । ବ୍ୟକ୍ତିଗତ ଜୀବନର ସାଇତା ଅନୁଭୂତିକୁ ତାଙ୍କ ହୃଦୟ ବଗିଚାରୁ ଚୟନକରି ପାଠକ ମାନଙ୍କ ଆଗରେ ଉପସ୍ଥାପନ କରି ମୁଁ ନିଜକୁ ସାର୍ଥକ ମନେକରୁଛି । କବିଙ୍କ ସାହିତ୍ୟ ସଂପର୍କରେ ଦୃଢ଼ ଗମ୍ଭୀର ଶବ୍ଦଚାତୁରୀର ବାଗାଡ଼ମ୍ବର ପ୍ରଦର୍ଶନ କରାଇବା ଅପେକ୍ଷା, ସମାଜରେ ଓ ପାଠକମାନଙ୍କ ପାଖରେ କବିଙ୍କୁ ଅଧିକ ପରିଚିତ କରିପାରିଛି ।

ଯେଉଁ ଶୁଭ ମୁହୂର୍ତ୍ତରେ କବିଙ୍କ ସହ ସାକ୍ଷାତ ଆଲୋଚନା ହୋଇଥିଲା, ସେହି ମୁହୂର୍ତ୍ତକରେ ସତେ ଯେମିତି ମୁଁ ତାଙ୍କର ଆପଣାର ହୋଇଉଠିଥିଲି । ତାଙ୍କର ଅନ୍ତର ତଳର ମରମ ନିଗାଡ଼ି ଦେଇଥିଲି, ମେଦ, ମାଂସ ଓ ରକ୍ତ ଭିତରେ ଥିବା ଜୀବନୀଶକ୍ତିର ପରିଚୟ ପାଇଥିଲି । ମୁଁ ତାଙ୍କୁ ଯେପରି ଜାଣିଥିଲି, ତା'ଠାରୁ ଆହୁରି ନିବିଡ଼ କରାଇ ଆପଣମାନଙ୍କ ପାଖରେ ତାଙ୍କୁ ପହଞ୍ଚାଇବାର ଚେଷ୍ଟା କରୁଛି ।

ପ୍ରଶ୍ନ ଆମର ଓ ଉତ୍ତର ତାଙ୍କର, ଏପରି ଏକ ପରିବେଶରେ ପାଠକମାନଙ୍କୁ ଉପସ୍ଥିତ କରାଇ, ମୁଁ ଗବେଷଣାର ଏକ ଭିନ୍ନ ଦିଗ ଉନ୍ମୋଚନ କରିବାକୁ ପଦକ୍ଷେପ ନେଇଛି ।

ପ୍ରଶ୍ନ:- ଆପଣଙ୍କ ଜନ୍ମ, ଜନ୍ମମାଟି ଓ ପରିବାର ସଂପର୍କରେ କିଛି କୁହନ୍ତୁ ?

ଉତ୍ତର : ମୋର ଜନ୍ମ ୧୯୩୮ ମସିହା ଅକ୍ଟୋବର ୩ ତାରିଖରେ । ମୋ ଗାଁ ନାଁଟି ବା ଆପଣଙ୍କ ପ୍ରଶ୍ନ ଅନୁସାରେ ଜନ୍ମମାଟିର ନାଁ ହେଉଛି ଅମରଦା । କିନ୍ତୁ ଜନ୍ମ ହେଉଛି ମୟୁରଭଞ୍ଜ ଜିଲ୍ଲାର ସଦର ମହକୁମା ବାରିପଦାରେ । ଗାଁକୁ ସବୁବେଳେ ଛୁଟି ସମୟରେ, କିମ୍ବା ଅନ୍ୟାନ୍ୟ ସାମାଜିକ କାର୍ଯ୍ୟ କଳାପରେ ମୁଁ ଯାଏ । ସମସ୍ତ ପର୍ବ ପର୍ବାଣି ଆମେ ଗାଁରେ ପାଳନ କରୁ । ଗାଁରେ ଜୀବନର ସ୍ୱାଦ ଭିନ୍ନ ପ୍ରକାର । ତାର ମିଠା ଅଲଗା । ଏ ମିଠା ମୋ ପାଇଁ ଅଧିକ, କାରଣ ମୋ ପାଖରେ ଏହା ସବୁଦିନିଆଁ ନୁହେଁ । ତେଣୁ ଆଜି ମୋ ପାଇଁ ଗାଁ ମିଠା ସ୍ମୃତି ଯନ୍ତ୍ରଣା ହୋଇଯାଇଛି ।

ପ୍ରଶ୍ନ :- ଆପଣଙ୍କ ଶୈଶବ ଓ କୈଶୋର କିପରି କଟିଛି କୁହନ୍ତୁ ?

ଉ:- ମୋର ଶୈଶବ ଓ କୈଶୋର ବାରିପଦା ଓ ରାଇରଂଗପୁରରେ କଟିଛି । ରାଇରଂଗପୁର ଗୋଟିଏ ଛୋଟ ସହର । ସହର ଖାଲି ଥିଲା ନାଁ କୁ । ସେଇଠି ମୋ ବାପା ଥିଲେ ହାଇସ୍କୁଲର ପ୍ରଧାନ ଶିକ୍ଷକ । ରାଇରଂଗପୁରରେ ମୋର ଖଡ଼ି ଛୁଆଁ ପୁଣି ୪ର୍ଥ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ା । ରାଇରଂଗପୁରର ସ୍ମୃତି ଖାଲି ଖୁସି ଆଉ ମଜା ସହ ବିସ୍ମୟକର । ମିଲିଟାରୀ ଗାଡ଼ିର ଧାଁ ଦଉଡ଼, ସୈନ୍ୟମାନଙ୍କ ପାଖରୁ ବିସ୍କୁଟ ପାଇବା, ରାଇରଂଗପୁରର ମକର, ବାମନ ଘାଟିରେ ମଟର ଯାତ୍ରା, ଛୋଟ ରେଳଗାଡ଼ିରେ ବାରିପଦା ଆସିବା ସବୁ ଭାରି ମଜାଦାର ।

ପ୍ରଶ୍ନ :- ଗାଁ ବା ପଲ୍ଲୀ ପ୍ରକୃତିର ପ୍ରଭାବରେ ଆପଣ କେତେ ଦୂର ପ୍ରଭାବିତ ?

ଉ :- ପୂର୍ବରୁ କହିଛି ଗାଁରେ ମୋର ରହଣି ଅଳ୍ପ । ସେହି ଦୃଷ୍ଟିରୁ ଗାଁର ପ୍ରଭାବ ମୋ ଉପରେ ଖୁବ୍ ଅଳ୍ପ । ଏହା ଅଳ୍ପ ହେଲେ ବି ଭାରି ଗଭୀର । ଆମ ଗଡଜାତି ଗାଁକୁ ଲାଗିଥିଲା ଘଞ୍ଚ ବଣ । ଭାଲୁ ପ୍ରଚୁର, ବାଘ ବି ଥିଲେ । ଆମ ଗାଁ ପୋଖରୀ ଭାରି ବଡ଼ । ଆଖି ପାଏନି ଗୋଟିଏ ମୁଣ୍ଡରୁ ଆଉ ଗୋଟିଏ ମୁଣ୍ଡକୁ । ତା ପାଖକୁ ଲାଗି ଆଉ ଗୋଟିଏ ବଡ଼ ପୋଖରୀ । ତା'ର ନାମ ହୀରାସାଗର । ଦଳ, ଘାସ ଏମିତି ଛାଇଯାଇଛି ଯେ ତା ଉପରେ ଗାଇ ଚରନ୍ତି । ଅଥଚ ତଳେ ପାଣି । ମେଟ୍ରିକ୍ ପଢୁଥିବା ବେଳେ ସେହି ହୀରାସାଗର ଉପରେ ଗୋଟିଏ ଲମ୍ବା କବିତା ଲେଖିଥିଲି । ତାହା ମୋର ଲେଖିବା ପାଇଁ ପହିଲିଚେଷ୍ଟା । ଏବେ ଭାବୁଛି ତା ନା ହୋଇଥିଲା ଗଦ୍ୟ ନା ପଦ୍ୟ । କିଛି ହୋଇ ନଥିଲା । ଆମ ଗାଁ ଟିର ସମସ୍ତେ ଗୋଟିଏ ପରିବାରର । ସେମାନଙ୍କ ଭିତରୁ କେତେଜଣ ବ୍ୟକ୍ତି ମୋତେ ପ୍ରଭାବିତ କରିଥିଲେ । ତାଙ୍କ ଭିତରୁ ଜଣେ ସଂସ୍କୃତ ପଣ୍ଡିତ, ଅନ୍ୟ ଜଣେ ପଣ୍ଡିତଙ୍କ ପୁଅ ଯିଏକି ଜଣେ ଶିକ୍ଷକ । ପଣ୍ଡିତଙ୍କ ପାଖରୁ କେତେ ଗପ ଗାଁ ବିଷୟରେ

ଶୁଣିଛି ମାତ୍ର ତାଙ୍କ ପୁଅ ଈଶ୍ୱର ମିଶ୍ର ମୋତେ ପ୍ରଥମେ ସଚ୍ଚି ରାଉତରାୟଙ୍କ ସଂପର୍କରେ କହିଥିଲେ । ଏହିପରି ଯାହା ସାଧାରଣ ଭାବରେ ମୋର ସଂପର୍କ ଅଛି, ସେହି ଗାଁ ମୋତେ ମୋ ମନକୁ, ମୋ ଅଜ୍ଞାତରେ ପ୍ରଭାବିତ କରିଥିଲା । ମାତ୍ର ମୋର ଚେତନାକୁ ଋଦ୍ଧିମନ୍ତ କରିଥିଲା ବାରିପଦା ।

ପ୍ରଶ୍ନ :- ନିଜ ଭିତରେ ଥିବାସାହିତ୍ୟିକଟିକୁ ଆପଣ କେବେ ଓ କେଉଁ ପରିସ୍ଥିତିରେ ଖୋଜି ପାଇଥିଲେ ?

ଉ:- ମୋ ଭିତରେ ସାହିତ୍ୟିକକୁ ମୁଁ ଉପଲବ୍ଧ କଲି ବହୁ ବିଳମ୍ବରେ । କଲେଜରେ ପଢ଼ିବା ବେଳେ । କାରଣ ସାହିତ୍ୟ, ସାହିତ୍ୟିକ ଏବଂ ମୋ ଲେଖାଲେଖି ବିଷୟରେ ମୁଁ ବିଜ୍ଞାନର ଛାତ୍ର ଭାବେ ଆଦୌ ଗୁରୁତ୍ୱ ଦେଇ ନଥିଲି । ସାହିତ୍ୟ ଲେଖା କ'ଣ ଅବା ସାହିତ୍ୟିକ କିଏ, ସେ ବିଷୟ ମୋତେ ଜଣା ନଥିଲା । ସାହିତ୍ୟିକ କିପରି, ମୁଁ ଭାବୁଥିଲି ପୁରୁଣା ବଡ଼ ବଡ଼ ଲେଖକ । ଯେମିତି ଫକୀରମୋହନ, ରାଧାନାଥ ଏବଂ ଆହୁରି ପୁରୁଣା ଯେତେସବୁ ବଡ଼ ବଡ଼ ଲେଖକ । ଆଉ ମୋ ଚିହ୍ନା ଲେଖକ କାହ୍ନୁଚରଣ ଏବଂ ସଚ୍ଚି ରାଉତରାୟ । ଏହି ପ୍ରସଙ୍ଗରେ ବାରିପଦାରୁ ପ୍ରକାଶିତ 'ଚନ୍ଦ୍ରିକା' ପତ୍ରିକାରେ ପ୍ରଭାବ ଭୁଲିବାର ନୁହେଁ । ସ୍କୁଲ ପଢ଼ିଲା ବେଳେ ମୋ ପାଇଁ ସାହିତ୍ୟ ତ ଯେତେ ସବୁ ଡ଼ିଟେକ୍ଟିଭ ବହି । ସାହିତ୍ୟର ସଂଜ୍ଞା ପାଇଲି ବହୁତ ଡେରିରେ । ନିଜ ଭିତରର ସାହିତ୍ୟିକକୁ ଚିହ୍ନିଲି ଠିକ୍ ନୁହେଁ, ମୋତେ ଚିହ୍ନାଇ ଦେଲେ ମୋର ଗୁରୁ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି ଏବଂ ବନ୍ଧୁ ସତ୍ୟନାରାୟଣ ମହାନ୍ତି । ସତ୍ୟନାରାୟଣ ମୋର ପ୍ରଥମ କବିତାକୁ ରେଡ଼ିଓକୁ ପଠାଇଥିଲେ, ମୋତେ ନକହି । ଆଉ ସାର୍ ସେହି କବିତାକୁ ପ୍ରଥମେ 'ପ୍ରଜ୍ଞା' ପତ୍ରିକାରେ ପ୍ରକାଶିତ କରିଥିଲେ । ଏହାପରେ ମୁଁ ସଚେତନ ହେଲି ସାହିତ୍ୟ ବିଷୟରେ, ମୋ ନିଜ ସଂପର୍କରେ ।

ପ୍ରଶ୍ନ :- ଆପଣ ପ୍ରଥମେ କିପରି ଲେଖିଲେ ?

ଉ:- ଆଧୁନିକ କବିତା ଲେଖିବା ପାଇଁ ଚେଷ୍ଟା କରିବାର ମଜାରୁ ହିଁ ଲେଖା ପ୍ରଥମ କବିତା । ପ୍ରସିଦ୍ଧ ଗାଳ୍ପିକ ରବି ପଟ୍ଟନାୟକ ମଜା ମଜା କବିତା ଲେଖୁଥିଲେ, ଏକାଙ୍କିକା ବି । ତାଙ୍କ ସହ ପଢ଼ି ନିହାତି ହାଲୁକା ଭାବରେ କଟକରେ ବି.ଏ ପଢ଼ିବା ବେଳେ ଲେଖା ଲେଖି କରୁଥିଲି । ସେଗୁଡ଼ିକୁ ଲେଖିବାରେ ହିଁ ତାର ସମାପ୍ତି । ମୋ ପାଖରେ ତାର କୌଣସି ଗୁରୁତ୍ୱ ନଥିଲା, ମାତ୍ର ସେହି କବିତା ଗୁଡ଼ିକ ମୋ ଅଜାଣତରେ ମୋ କବି ଚେତନାକୁ ଓ ଲେଖିବାର ଦିଗକୁ ଶାଣିତ କରିଥିଲା ।

ପ୍ରଶ୍ନ:- ଆପଣଙ୍କ କଲେଜ ଜୀବନ ଓ ଚାକିରୀ ଜୀବନ ସଂପର୍କରେ କିଛି କୁହନ୍ତୁ ?

ଉ:- କଲେଜ ଜୀବନ ଭାରି ମଜାଳିଆ ଜୀବନ । ବାରିପଦାରେ ଇଣ୍ଟରମିଡ଼ିଏଟ୍ ପଢୁଥିବା ବେଳେ ଫିଜିକ୍ସ ଅଧ୍ୟାପକ କେ.ଏସ୍.ଆର. ମୂର୍ତ୍ତି ମୋତେ କେତେକ

ସାହିତ୍ୟିକଙ୍କ କଥା କହୁଥିଲେ । ରେଭେନ୍ସାରେ ହିଁ ମୋର ସାହିତ୍ୟ ତଥା କବିତା ସଂପର୍କରେ ସଚେତନତା ବଢ଼ିଲା । କବିତା ଲେଖିବାପାଇଁ ଆଗ୍ରହ ବଢ଼ିଲା । ସର୍ବୋପରି ଆଧୁନିକ ସାହିତ୍ୟିକ ଜଟିଳ ଜଗତର ଭିତରକୁ ମାର୍ଗଟି ମିଳିଗଲା । ରେଭେନ୍ସା କଲେଜ ଜୀବନ ମୋର ଚେତନାକୁ ବ୍ୟାପକ କଲା । ନିଜକୁ ମଧ୍ୟ ଚିହ୍ନାଇବାରେ ସାହାଯ୍ୟ କଲା ।

ଚାକିରୀ ଆରମ୍ଭ ହୁଏ ଏମ.ପି.ସି. କଲେଜର ୧୯୬୧ ସାଲରେ । ସେତେବେଳେ କଲେଜର ପରିବେଶ, ବାର୍ଷିକ ସାଂସ୍କୃତିକ ପରମ୍ପରା ସର୍ବୋପରି ଲେଖକ ବେଣୁଧର ରାଉତ, ମହାପାତ୍ର ନୀଳମଣି ସାହୁ, ହୃଦାନନ୍ଦ ରାୟ ଏବଂ ଜୀବନାନନ୍ଦ ପାଣିଙ୍କ ସାନ୍ନିଧ୍ୟ ମୋତେ ବହୁ ଭାବରେ କେବଳ ସାହାଯ୍ୟ କରିନି, ମୋ ଲେଖାକୁ ମାର୍ଜିତ କରିବାରେ ସାହାଯ୍ୟ କରିଛି । ବାରିପଦାର ସାଂସ୍କୃତିକ ପରମ୍ପରା-ଶିଳ୍ପୀଟିଏକୁ ସାଦରେ ଗ୍ରହଣ କରିବା, ଉତ୍ସାହିତ କରିବା, ଏପରିକି ତାକୁ ନିବିଡ଼ ଭାବରେ ଭଲପାଇବା - ମୋତେ ଉଦ୍‌ବୁଦ୍ଧ କରିଛି । ପ୍ରଗଲ୍‌ଭ କରିଛି । ସବା ଉପରେ ମୋ ବାପାଙ୍କର ଆଶୀର୍ବାଦ, ସାହାଯ୍ୟ ଉତ୍ସାହ ଏପରିକି ଆଦେଶ ମୋ ଲେଖାରେ ନୂଆ ଦିଗନ୍ତ ଦେଖାଇଛି । ବାପାତ ପ୍ରଥମେ ମୋତେ ଓଡ଼ିଆରେ ସମାଲୋଚନା ଲେଖିବାକୁ ବାଧ୍ୟ କରିଥିଲେ ।

ପ୍ରଶ୍ନ:- ଚାକିରୀ କାଳ ଭିତରେ ଆପଣ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଭ୍ରମଣ କରିଛନ୍ତି । ସେ ସବୁ ସ୍ଥାନରେ ଅବସ୍ଥାନ ସମୟରେ ସେଠାକାର ବାତାବରଣ ଓ ଜୀବନଧାରାରେ କିପରି ଭାବରେ ପ୍ରଭାବିତ ହୋଇଛନ୍ତି ?

ଉ:- ଚାକିରୀ ଆରମ୍ଭ ହୁଏ ଏମ.ପି.ସି. କଲେଜ, ବାରିପଦାରେ । ସେଠାରୁ ମୁଁ ସୁନ୍ଦରଗଡ଼, ସମ୍ବଲପୁର, ଭଦ୍ରକ, ଭୁବନେଶ୍ୱର, କଟକ, ଅନୁଗୁଳ ପ୍ରଭୃତି ସହରକୁ ଯାଏ କର୍ମମୟ ଜୀବନ ପାଇଁ । ଚାକିରୀ ସରିଲା ଭୁବନେଶ୍ୱରରେ । ଏ ସବୁ ସ୍ଥାନରେ ମୁଁ ପ୍ରଚୁର ସ୍ନେହ ଶ୍ରଦ୍ଧା ପାଇଅଛି । ସବୁସ୍ଥାନ ମୋ ଲେଖାକୁ ପ୍ରଭାବିତ କରିଛନ୍ତି । ସବୁଠାରୁ ଅଧିକ ପ୍ରାଣବନ୍ତ ପରିବେଶ ମୁଁ ପାଇଥିଲି ଭଦ୍ରକରେ ଥିଲାବେଳେ । ସେଠାକାର ସାହିତ୍ୟିକ ବାତାବରଣ ସାହିତ୍ୟ ପାଇଁ ସାଧାରଣ ବ୍ୟକ୍ତିଙ୍କର ଆନ୍ତରିକତା, ସାହିତ୍ୟ ଅନୁଷ୍ଠାନ ଏବଂ କବି ପ୍ରତି ସମସ୍ତଙ୍କର ଶ୍ରଦ୍ଧା ମୋତେ ଅଭିଭୂତ କରିଥିଲା । ସେହିପରି ସମ୍ବଲପୁର । ସେଠାରେ କେତେକତରୁଣ ଲେଖକଙ୍କର ଉଦ୍ୟମ ମୋତେ ବେଶ୍ ପ୍ରଭାବିତ କରିଥିଲା ।

ପ୍ରଶ୍ନ:- କବିତା ଲେଖା ଆରମ୍ଭ କଲାବେଳେ ଓଡ଼ିଆ କବିତାର ସ୍ଥିତି ଓ ପ୍ରମୁଖ କାବ୍ୟସ୍ୱରକ'ଣ ଥିଲା ?

ଉ:- ମୁଁ ଲେଖାଲେଖି ଆରମ୍ଭ କଲାବେଳକୁ ଓଡ଼ିଆ ସାହିତ୍ୟରେ ପରିବର୍ତ୍ତନର ସୁଅ ଛୁଟିଥିଲା । ପରୀକ୍ଷା କରିବାର ନିଶା ଘାରିଥିଲା । ସାହିତ୍ୟର ସବୁ ସବୁ କ୍ଷେତ୍ରରେ ନୂତନତା ପାଇଁ ଆଗ୍ରହ ସୃଷ୍ଟି ହୋଇଥିଲା । ଗୋଟିଏ ବୈପ୍ଲବିକ ଚେତନାର ଅଭ୍ୟୁଦୟ ଘଟିଥିଲା । ସାରା ବିଶ୍ୱରେ ଆଧୁନିକ ସାହିତ୍ୟ ନାମରେ ହେଉଥିବା ବିଭିନ୍ନ ପରୀକ୍ଷା ନିରୀକ୍ଷା ପ୍ରତି ସଚେତନତା ଦେଖାଦେଇଥିଲା । ଗୋଟିଏ କଥାରେ ଆମ ସାହିତ୍ୟ

ଚେତନାରେ ବ୍ୟାପକତା ଉଦାରତା ଦେଖା ଦେବା ସଂଗେ ସଂଗେ ମରହଟିପଣକୁ ଛାଡ଼ି ନୂଆ ଭାବରେ ନିଜକୁ ପ୍ରତିଷ୍ଠିତ କରିବାର ଇଚ୍ଛା ଦେଖାଦେଇଥିଲା । ଏହି ନୂଆ ଭାବଟିର ସାଧାରଣ ନାମ ଥିଲା 'ଆଧୁନିକ' ଏବଂଏହାର ଚଳନ୍ତି ଧାରାଟି ଥିଲା ପାଶ୍ଚାତ୍ୟ ସାହିତ୍ୟକୁ ଗ୍ରହଣ । ଏ ଗ୍ରହଣ ଅନେକ କ୍ଷେତ୍ରରେ ଅନ୍ଧାନୁକରଣ ହେଲାବେଳେ ସଚେତନ ଶିଳ୍ପୀଙ୍କ ପାଖରେ ଏହା ଥିଲା ଆତ୍ମାବିଷ୍କାରର ଦ୍ୟୋତକ ଏବଂ ପରମ୍ପରାସହ ଆଧୁନିକତାର ସମନ୍ୱୟର ପୂର୍ବ ମଧୁଲଗ୍ନ । ଏ ସମୟ ଥିଲା ଚେତନାରବନ୍ଦ ଝରକା ସବୁ ଖୋଲିଯିବାର ବେଳ । ସ୍ୱାଧୀନ ହେବାର କାମନା । ମାତ୍ର ସ୍ୱାଧୀନତା ଉଶୃଙ୍ଖଳତା ନୁହେଁ ।ଏହା ଅଧିକ ଶୃଙ୍ଖଳା ଦାବୀ କରେ । ଏପରି ଏକ ଭାବର ପ୍ରଭାବ ଫଳରେ କଳା ଓ ସାହିତ୍ୟରେ ଦେଖାଦେଲା ଶୃଙ୍ଖଳାବୋଧ ସହ ମୁକ୍ତି ଚେତନା । ଜ୍ଞାନର ସବୁ ଦିଗର ସାହାଯ୍ୟ ନେଇ ଜୀବନ ମଣିଷକୁ ବୁଝି ନିଜସ୍ୱ ଢ଼ଙ୍ଗରେ ପ୍ରକାଶ କରିବାର ଇଚ୍ଛା । ଏହା ଏକ ମାନସିକ ବିପ୍ଳବର ଯୁଗ । ମୁକ୍ତି ଏବଂ ସମନ୍ୱୟର ଯୁଗ ।

ପ୍ରଶ୍ନ:- ଭାରତର ସଂସ୍କୃତି, ପରମ୍ପରା, ପ୍ରାଚୀନ ଜୀବନ ଚର୍ଚ୍ଚା ତଥା ମହାଭାରତର ଚରିତ୍ରମାନଙ୍କୁ ନେଇ ଆପଣ କବିତା ଲେଖିଛନ୍ତି । ଏଥିରେ ଥିବାସୃଜନ ଅନୁପ୍ରେରଣା ଟି କ'ଣ ?

ଉ:- କବିତା ଗୋଟିଏ ସଚେତନ ମନର ଜୀବନ ଏବଂ ବାସ୍ତବତା ପ୍ରତି ସମ୍ବେଦନଶୀଳ ଅଥଚ ଜଟିଳ ପ୍ରତିକ୍ରିୟାରୁ ହିଁ ଜନ୍ମ ହୋଇଥାଏ । କବିର ସଚେତନ ମନଟିକୁ ଗଢ଼ିବାରେ ସାହାଯ୍ୟ କରିଥାଏ, ତାର ସଂସ୍କୃତି । ସଂସ୍କୃତି ତ ସାମଗ୍ରିକ ଜୀବନାନୁଭୂତିର ନିର୍ଯ୍ୟାସ । ଆମର ସଂସ୍କୃତି, ପରମ୍ପରା ଏବଂ ମୂଲ୍ୟବୋଧ ସହ ଓତଃପ୍ରୋତ ଭାବେ ଜଡ଼ିତ ମହାଭାରତ । ଏହା ଆମ ଚେତନାର ଅଂଶ । ଏହାର ଘଟଣା, ଏହାର ବିଭିନ୍ନ ଚରିତ୍ର, ଏଥିରେ ପ୍ରତିଫଳିତ ମଣିଷର ବିଭିନ୍ନ ପ୍ରତିକ୍ରିୟା ଏବଂ ମୂଲ୍ୟବୋଧ ମଣିଷର ରହସ୍ୟମୟତାକୁ ହିଁ ସୁଚାଇଥାଏ । ସେଥିପାଇଁ ଏଗୁଡ଼ିକ ସବୁକାଳରେ ସମକାଳୀନ । ଏ ଚରିତ୍ର ଆଉ ଘଟଣା ଭିତରେ ମୁଁ ମୋର ମୁଁ ତ୍ୱକୁ ଖୋଜିଛି । ଖୋଜିଛି ମଣିଷର ଜଟିଳତାକୁ । ମୋତେ ଲାଗିଛି ଏହା ଯେପରି ଜୀବନ ସଂପର୍କରେ କେବଳ ଚିରନ୍ତନ ପ୍ରଶ୍ନବାଚୀ, ସମସ୍ୟା, ସମାଧାନ ଉପରେ ଆଉ ଏକ ବିରାଟ ସତ୍ୟ-ଜୀବନ । କଳା ତ ରହସ୍ୟମୟୀ ଜୀବନକୁ ଆପଣାର କରିବାର ତପସ୍ୟା, ବାସ୍ତବତା ଆଗରେ ଏକ ବିକଳ୍ପ ବାସ୍ତବତାସୃଷ୍ଟି କରିବାର ବହପ । ଏହି ବହପ ହିଁ ସୃଜନଶୀଳତା । ଏହି ଦୃଷ୍ଟିରୁ ମହାଭାରତ ମୋ ପାଖରେ ଆକର୍ଷଣୀୟ ।

ପ୍ରଶ୍ନ:- 'ଆକାଶ ପରି ନିବିଡ' ବେଳକୁ ଆପଣଙ୍କର କାବ୍ୟ ସ୍ୱର ଭିନ୍ନ ରଚିର ଓ ଭିନ୍ନ ସ୍ୱାଦର ହେବାକୁ ଲାଗୁଛି । ଏହି କ୍ରମ ବିବର୍ତ୍ତନର ଅନ୍ତଃସ୍ୱର କ'ଣ ?

ଉ. ବଞ୍ଚିବାର ଗହନ ଅନୁଭୂତି ସହନଶୀଳତା ଆଣେ ଭାଟିରେ ପୋଡ଼ି ପୋଡ଼ି କଞ୍ଚା ଇଟା ଲାଲ ହେଲା ପରି, ଟାଣ ହେଲା ପରି ମନ ମଧ୍ୟ ଟାଣ ହୁଏ, ଭାବାବେଗର

ଶ୍ରାବଣୀ ଧାରା ସଂଯମିତ ହୁଏ । ଏହା ହିଁ ବିନୟ ଭାବ । କଳା ତ ଭାବରକଥା, ଏଥିରେ ଚାଲାକି ଚଳେନି । ଲୁଚକାଳି ଖେଳ ଚଳେନି । ମୋ କବିତାର ସବୁ ପରିବର୍ତ୍ତନକୁ ମୁଁ ମୋ ଅନୁଭବର ସତ୍ୟଶୀଳତା ବୋଲି ଭାବି ନିଏ । ଜୀବନକୁ ଯେଉଁ ଭାବରେ ବଞ୍ଚେ, ସେହିପରି ଲେଖେ । ଏହାର ସମୀକ୍ଷା କରେନି ।

ପ୍ରଶ୍ନ:- କବିତା ଭଳି ଏକ କୋମଳ ବିଭବକୁ ଛାଡ଼ି ଆପଣ ସିରିୟସ୍ ତତ୍ତ୍ୱାଶ୍ରୟୀ ସାହିତ୍ୟ ଚିନ୍ତନକୁ ମନବଳାଇଲେ କାହିଁକି ?

ଉ:- କବିତାରେ 'କୋମଳତା' ପୁଣି ସମାଲୋଚନାରେ ସିରିୟସ୍ କଥା ଠିକ୍ ବୁଝିପାରେନି । ସବୁ ପ୍ରକାର ଲେଖାରେ ମୁଁ କେବଳ ଆନ୍ତରିକତାକୁ ହିଁ ମାନିଥାଏ । ଏ ବିଷୟରେ ମୁଁ ବେଶ ସିରିୟସ୍ । ସମାଲୋଚନାରେ ଯେମିତି କବିତା ଲେଖାରେ ବି ଠିକ୍ ସେମିତି । 'ତତ୍ତ୍ୱାଶ୍ରୟୀ' ପ୍ରସଙ୍ଗରେ ଏତିକି କହିବି ଯେ ତତ୍ତ୍ୱ, କବିତା ଏବଂ ସମାଲୋଚନା କେହି କାହାର ଶତ୍ରୁ ନୁହନ୍ତି । ମୋ ପାଖରେ ସବୁ କୋଳାକୋଳି ।

ପ୍ରଶ୍ନ:- ଅବସର ଗ୍ରହଣ ପରେ ଆପଣଙ୍କର ସମୟ କିପରି ବିତୁଛି ?

ଉ:- ଅବସର ପରେ ହାତରେ ସମୟ ମିଳୁଛି । ସ୍ୱାଧୀନତା ଆସିଛି । ଲେଖାପଢ଼ା, ଗପସପ, ପୁଣି ଘରୋଇ ଖୁଟ୍ -ଖାଟ୍ ଭିତରେ ବେଶ୍ କଟି ଯାଉଛି ।

ପ୍ରଶ୍ନ:- କବି ଜୀବନରେ ଆପଣ କେଉଁ ମାନଙ୍କ ଦ୍ୱାରା ପ୍ରଭାବିତ ?

ଉ:- ପୂର୍ବରୁ କିଛି ଏ ବିଷୟରେ ସୂଚନା ଦେଇଥିଲି । ଏହା ବ୍ୟତୀତ ମୁଁ ଅନେକଙ୍କ ଦ୍ୱାରା ପ୍ରଭାବିତ । ଚିହ୍ନା, ଅଚିହ୍ନା ସମସ୍ତେ । ସ୍ତ୍ରୀ, କନ୍ୟା, ପୁତ୍ର, ଅନେକ ବନ୍ଧୁ, ବାନ୍ଧବୀ ମୋତେ ପ୍ରଭାବିତ କରିଛନ୍ତି । ଏ ପ୍ରସଙ୍ଗରେ ମୋ ବାପାଙ୍କ ପ୍ରଭାବ ନିଶ୍ଚିତ ଭାବରେ ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ । ମୋ ପାଖରୁ ବିଶେଷ କରି ମୋ କବିତା ପାଖରୁ ଏକ କୋସର ଦୂରତା ରକ୍ଷାକରି ସେ ମୋର ଅନ୍ତରଙ୍ଗ ପାଠକ, ସମାଲୋଚକ ଏବଂ କେବେ ପ୍ରଶଂସାକରିନଥିବା ପ୍ରଶଂସକ । ମୋର ଦୁଃଖ ରହିଗଲା ମୋର କବିତାବହି ପ୍ରକାଶ ପାଇବା ପୂର୍ବରୁ ସେ ଚାଲିଗଲେ । ଏପରିକି ତାଙ୍କର ଅନୁପସ୍ଥିତି, ତାଙ୍କର ଅଭାବ ବି ମୋ ପାଇଁ ପ୍ରଭାବଟିଏ ହୋଇ ରହିଗଲା ।

ପ୍ରଶ୍ନ:- କବିତା ଓ ସମାଲୋଚନା ବ୍ୟତୀତ ଆପଣ କଳା ଉପରେ କେତେକ ବିଶେଷ ଆଲୋଚନା କରିଛନ୍ତି । ଏଭଳି ଚିନ୍ତାଚେତନା ଆପଣଙ୍କୁ ପ୍ରଚୋଦିତ କିପରି କରିଛି ?

ଉ:- କବିତା ସଂପର୍କରେ ପଢୁ ପଢୁ କଳା (ଚିତ୍ରକଳା) ସଂପର୍କରେ ଆସିଲି । ଗୋଟିଏ ସମୟରେ ହୃଦୟଙ୍ଗମ କଲି ଯେ କବିତାକୁ ବୁଝିବାକୁ ହେଲେ କଳାକୁ ମଧ୍ୟ ବୁଝିବାକୁ ହେବ । ଏହା ବ୍ୟତୀତ ବିଂଶ ଶତାବ୍ଦୀରେ କବିତାରେ ଘଟିଥିବା ଅନେକ ବିପ୍ଳବ କଳାରୁ ହିଁ ଆରମ୍ଭ ହୋଇଥିଲା । ତେଣୁ ଚିତ୍ରକଳା ଏବଂ କବିତା ତ ସଂପର୍କିତ । ଚିତ୍ରକଳା ତ ନିରବ କବିତା । ଏହି ସଂପର୍କକୁ ବୁଝିବା ପାଇଁ ଏବଂ ସର୍ଜନଶୀଳତାକୁ ଅନୁଭବ କରିବା ପାଇଁ କଳାଜଗତକୁ ମୁଁ ଆସିଲି ।

ପ୍ରଶ୍ନ:- କିପରି ଓ କେଉଁ ପରିବେଶରେ ଆପଣ କବିତାଟିଏ ଲେଖି ବସନ୍ତି ଓ କେତେ ସମୟରେ ଶେଷ କରନ୍ତି ?

ଉ:- କିପରି ଅବସ୍ଥାରେ କବିତାଟିଏ ଆସେ କହି ପାରିବିନି । ମାତ୍ର କବିତାଟିଏ 'ମାଡ଼ିଲେ' ସବୁ ଅବସ୍ଥା କାବ୍ୟିକ ଅବସ୍ଥା ହୋଇଯାଏ । ମୁଁ ଆଉ ମୋର ହୋଇ ରହେ ନାହିଁ । ପରୀକ୍ଷା କେନ୍ଦ୍ର, ନିଛାଟିଆ ପଢ଼ାଘର, ଏପରିକି ଚଳନ୍ତି ଟ୍ରେନ୍ ମଧ୍ୟ କବିତାର ଏନ୍ତୁଡ଼ିଶାଳ ହୋଇଯାଏ । କବିତା ଲେଖିବାକୁ କେତେ ସମୟ ଲାଗେ ତାର କିଛି ଠିକ୍ ଠିକଣା ନାହିଁ । କେଉଁଠି ଗୋଟିଏ ଲେଖାରେ ସରିଗଲା ବେଳେ ଆଉ କେଉଁଟି ବି ଆଦୌ ନ-ସରି ଅଧା ରହିଯାଇଥାଏ ଅନେକ ଦିନ । ପରେ କେବେ ହଠାତ୍ ପୁଣି ବିନା କଷ୍ଟରେ ଆପେ ଆପେ ଲେଖି ହୋଇଯାଏ ।

ପ୍ରଶ୍ନ:- ଜଣେ ସାହିତ୍ୟିକର ଧର୍ମ କ'ଣ ହେବା ଉଚିତ୍ ?

ଉ:- ଜଣେ ସାହିତ୍ୟିକ ମୋ ମତରେ ସତ୍ୟଶୀଳ, ସମ୍ବେଦନଶୀଳ ଏବଂ ସ୍ୱାଭିମାନୀ ହେବା ଉଚିତ୍ ।

ପ୍ରଶ୍ନ:- ଆଜିକାଲିର ତରୁଣମାନଙ୍କ ଉପରେ ଆପଣ କ'ଣ ମତ ଦେବେ ?

ଉ:- ସେମାନେ ପ୍ରତିଭାଶାଳୀ ଓ ପ୍ରତିଭାଧର ।

ପ୍ରଶ୍ନ:- ଆପଣ ବିତାଇଥିବା ଜୀବନରେ ସନ୍ତୁଷ୍ଟ କି ?

ଉ:- ସନ୍ତୁଷ୍ଟ । ସନ୍ତୁଷ୍ଟ ମୋ ନିଜ ଭାବରେ ।

ପ୍ରଶ୍ନ:- ଆପଣଙ୍କର ଅବଶୋଷ କିଛି ଅଛିକି ?

ଉ:- କିଛି କହିବିନି । ଏହାର ଅର୍ଥ ନୁହେଁ ମୋର ଅବଶୋଷ ନାହିଁ । ଏବେ ବିମୋର ମନଲାଖି କବିତାଟିଏ ଲେଖିପାରିଲିନି । ପ୍ରତ୍ୟେକ କବିତା ମୋ ପାଖରେ ଗୋଟିଏ ସନ୍ତୋଷ ଏବଂ ଅବଶୋଷର ଉଦାହରଣ ।

ପ୍ରଶ୍ନ:- ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଆପଣକ'ଣ ପରାମର୍ଶ ଦେବେ ?

ଉ:- ଓଡ଼ିଆ ସାହିତ୍ୟ ପାଇଁ ଓଡ଼ିଆମାନଙ୍କର, ବିଶେଷ କରି ପାଠୁଆ ଓଡ଼ିଆମାନଙ୍କର ଆନ୍ତରିକତା, ଆଦର ଏବଂ ଗର୍ବ କରିବା ଉଚିତ୍ । ନିଜ ଭାଷା ପ୍ରତି ଅଧିକ ସଚେତନ ହେବା ଉଚିତ୍ ।

ପ୍ରଶ୍ନ:- କବି ଓ ଅଧ୍ୟାପକ- ଆପଣ କ'ଣ ହୋଇ ବଞ୍ଚିବାକୁ ପସନ୍ଦକରିବେ ?

ଉ:- କବି ! କାରଣ କବି ହେବାକୁ ମୁଁ ଭଲପାଏ ।

ପ୍ରଶ୍ନ:- ଆପଣ ଆପଣଙ୍କ ଗାଁକୁ ଫେରିଯିବାକୁ ପ୍ରସ୍ତୁତ କି ?

ଉ:- ନା । କାରଣ ଗାଁରେ ସମୟ କଟାଇବା ଲାଗି ଆଉ ପରିବେଶ ନାହିଁ । ତେବେ ବାରିପଦା ଫେରିଯିବା ପାଇଁ ବେଳେ ବେଳେ ଭାରି ଇଚ୍ଛାହୁଏ । ବାରିପଦା ମୋ ପାଇଁ ସ୍ମୃତି ଆଉ ସ୍ୱପ୍ନର ପ୍ରତୀକ । ଏଠି ଯେପରି କଟାଉଛି, ସେଠି ସେହିପରି କଟାଇବି । ବନ୍ଧୁ ମାନଙ୍କର ସ୍ମୃତିକୁ ପାକୁଳି ପାକୁଳି ।

ପ୍ରଶ୍ନ:- ଶେଷରେ ଆପଣଙ୍କ ଠାରୁ ଟିକିଏ ଆଶିର୍ବାଦ ଚାହୁଁଛି ?

ଉ:- ମୁଁ ଆଶିର୍ବାଦ କରୁଛି । ଆପଣଙ୍କ ଚଲାପଥ କୁସୁମିତ ହେଉ । ଆପଣଙ୍କର ଗବେଷଣାର ମାର୍ଗ ଏକ ଯୁଗାନ୍ତକାରୀ ପଦକ୍ଷେପ । ଏଭଳି କାର୍ଯ୍ୟ ସ୍ରଷ୍ଟାମାନଙ୍କୁ ପାଠକମାନଙ୍କ ହାତ ପାଆନ୍ତିରେ ଧରାଇଦେବ । ପାଠକମାନଙ୍କର ଅତି ଅନ୍ତରଙ୍ଗ କରାଇଦେବ । ପାଠକମାନେ ହଜିଲା ରତ୍ନକୁ ଫେରି ପାଇଲା ଭଳି ବୋଧ ହେବ, ଯଦି ବାସ୍ତବରେ ସେମାନଙ୍କର ସାହିତ୍ୟ ପ୍ରତି ଅନୁରାଗ ଥାଏ । ତେଣୁ ମୋର ସମସ୍ତ ପୁଣ୍ୟର ଫଳ ଆପଣମାନଙ୍କ ଭଳି ଗବେଷକମାନଙ୍କ ମସ୍ତକରେ ଆଶିର୍ବାଦ ହୋଇ ଝରିପଡୁ । ଏହା ହିଁ ପ୍ରଭୁଙ୍କ ନିକଟରେ ନିବେଦନ ।

ଗବେଷକ :- ନମସ୍କାର !

ଉ:-ନମସ୍କାର ।

## (କବି ସୌରୀନ୍ଦ୍ର ବାରିକଙ୍କ ସୃଷ୍ଟି ବିଭବ)

ଆଧୁନିକ ଓଡ଼ିଆ କାବ୍ୟ ଜଗତରେ କବି ସୌରୀନ୍ଦ୍ର ବାରିକ ସ୍ୱକୀୟ ବୈଶିଷ୍ଟ୍ୟରେ ପ୍ରଭାବଶାଳୀ । ତାଙ୍କ କାବ୍ୟଶ୍ରୀ ଶୁଭ୍ରଯଶର ଜ୍ୟୋତ୍ସ୍ନା ବିଚ୍ଛୁରିତ କରିବାରେ ସମର୍ଥ । କବି ଜଣେ ସମୟ ସଚେତନଶୀଳ ବାସ୍ତବବାଦୀ ଚିନ୍ତାଚେତନାର ବ୍ୟକ୍ତି । ତଥାପି ଅନେକତ୍ର ସେ ଜଣେ ରୋମାଣ୍ଟିକ୍ କବି ଭାବରେ ଆତ୍ମ ପରିଚୟ ଦେବାକୁ ସଙ୍କୋଚବୋଧ କରିନାହାନ୍ତି । ବେଳେବେଳେ ଆଧ୍ୟାତ୍ମ ସଚେତନ ହୋଇ ଏକ ଅଦୃଶ୍ୟ ଜଗତରସ୍ୱପ୍ନରେ ବିଭୋର ହୋଇଉଠିଛନ୍ତି । ବ୍ୟକ୍ତିଗତ ଅନୁଭୂତିର ପ୍ରାବଲ୍ୟ ତାଙ୍କ କାବ୍ୟ ବିଭାରେ ପରିସ୍ଫୁଟନ ହୋଇଅଛି । କରୁଣ ରସର ସ୍ୱର କେତେକ କବିତାକୁ ଭାବୋଦ୍ଦୀପକ କରାଇବାରେ ସମର୍ଥ ହୋଇଛି । ସ୍ୱପ୍ନରୁ ସଂପର୍କ, ସଂପର୍କରୁ ସ୍ୱୀକାରୋକ୍ତି, ସବୁଠି ନିର୍ବିତ୍ତତାର ସ୍ମୃତି, ସ୍ୱପ୍ନର ପୃଥିବୀ, ସତମିଛ ବିଞ୍ଚିବାର ଅଶ୍ଳୀଳ ଆନନ୍ଦକୁ ସତେ ଯେପରି, ସେ କବିତା ରାଜ୍ୟରେ ସାଉଁଟି ରଖିଥାନ୍ତି । ସତେ ଯେମିତି କବିତା ତାଙ୍କ ନିଃଶ୍ୱାସରେ ପ୍ରଶ୍ୱାସରେ ପ୍ରାଣ ସଞ୍ଜିବନୀ ରକ୍ତର ଚେତନାରେ ଲୋହିତ କଣିକା, ଦେହର ମାଂସପେଶୀରେ ମଜ୍ଜାଗତ ରସ ହୋଇ ସଦାକାଳେ କବିଙ୍କୁ ଚିରଞ୍ଜିବୀ କରି ରଖିଛି । ସ୍ନେହ କାଙ୍ଗାଳ କବିଟିଏ ସେ, ଆପଣେଇ ନେବାର ବ୍ୟାକୁଳତା ତାଙ୍କ ପ୍ରାଣରେ ପ୍ରାଣରେ ଉଦ୍‌ବେଳିତ ହୋଇ ଉଠୁଛି । ସେଇଥିପାଇଁ ସେ କହନ୍ତି:-

'ସ୍ନେହ କାଙ୍ଗାଳ କବିଟିଏ ମୁଁ
ମୋତେ ଟିକେ ପଢ଼ିବ ?
ତୁମର କିଛି ଯିବନି, ଅଥଚ
ମୋତେ ସବୁ ମିଳିଯିବ ।''

କେବଳ କବି ଭାବରେ ନୁହେଁ, ଜଣେ ସୁସମାଲୋଚକ ଭାବରେ ମଧ୍ୟ କବି ସୌରୀନ୍ଦ୍ର ବାରିକ ସୁପରିଚିତ । ଆଧୁନିକ ସାହିତ୍ୟ ସଂପର୍କରେ ସେ ଯେଉଁ ଆଲୋଚନା

ମାନ ସୃଷ୍ଟି କରିଛନ୍ତି, ସେଗୁଡ଼ିକ ନିଜ ନିଜଦୀପ୍ତିରେ ଦୀପ୍ତିମାନ। ତାଙ୍କ କବି ସୁଲଭ ସମାଲୋଚନା ରୀତିଟି ସହଜରେ ବାରି ହୋଇପଡ଼େ ପ୍ରତିଟି କ୍ଷେତ୍ରରେ। ପ୍ରତ୍ୟେକଟି ଗ୍ରନ୍ଥ ମୌଳିକତାରେ ମଣ୍ଡିତ ଏବଂ ସରଳ ଓ ପରିଚ୍ଛନ୍ନ ପ୍ରକାଶ ଭଙ୍ଗୀରେ ରସସ୍ନିଗ୍ଧ। ତାଙ୍କ ସମାଲୋଚନାର ଧାରାଟି ସରଳ, ଯୁକ୍ତିନିଷ୍ଠ ଓ ଶାଣିତ। ତାଙ୍କର ଯୁକ୍ତି କେବଳ ତତ୍ତ୍ୱାଶ୍ରୟୀ ନୁହେଁ, ଏହା ମଧ୍ୟ ସାବଲୀଳ ଓ ସଂବେଦନଶୀଳ। ବୌଦ୍ଧିକତା ଓ ରସିକତା ଉଭୟର ସମନ୍ୱୟ ହିଁ ତାଙ୍କ ସମାଲୋଚନାର ବଳିଷ୍ଠ ଦିଗ। ସ୍ରଷ୍ଟା ଓ ସୃଷ୍ଟି ଉଭୟରେ ଥିବା ଅଭେଦ୍ୟ ସଂପର୍କର ରହସ୍ୟଟିକୁ ସେ କେବଳ ଉନ୍ମୋଚନ କରନ୍ତିନି ବରଂ ସ୍ରଷ୍ଟାର ଧୃଷ୍ଟିକୁ ଆଲୋଚନା କଲାବେଳେ, ସେ ଆଲୋଚନାଟି ମଧ୍ୟ ଆଉ ଏକ ସୃଷ୍ଟିରେ ପରିଣତ ହୋଇଯାଏ। ତେଣୁ ସର୍ଜନଶୀଳତା ସୃଷ୍ଟିର ଆଉ ଏକ ଗୁଣ ବୋଲି ଅଭିହିତ ହୁଏ।

ତେଣୁ ସୌରୀନ୍ଦ୍ର କେବଳ କବି ନୁହନ୍ତି କିମ୍ବା ଜଣେ ଅନୁବାଦକ ନୁହଁନ୍ତି, ଜଣେ କବି ସମାଲୋଚକ ଭାବେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଛନ୍ତି। ଆଧୁନିକ କବିତାର ବିଭିନ୍ନ ଦିଗ ଉପରେ ତାଙ୍କର ତାତ୍ତ୍ୱିକ ଆଲୋଚନାଗୁଡ଼ିକ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ। ତାଙ୍କର ସମସ୍ତ ଆଲୋଚନାଗୁଡ଼ିକ କେବଳ ତତ୍ତ୍ୱାଶ୍ରୟୀ କି ବୌଦ୍ଧିକତା ଭିତରେ ସୀମାବଦ୍ଧ ନୁହେଁ, ଏହା ଆବେଗମୟ, ମାଧୁର୍ଯ୍ୟମୟ ଓ ସୁଦୂର ପ୍ରସାରୀ। ଭାଷା ସରଳ, ଭାବ ଗମ୍ଭୀର ଯୁକ୍ତି ଶାଣିତ ଏବଂ ସର୍ବୋପରି ଏହା ରସାଳ ଓ ବଳିଷ୍ଠ ଚେତନାର ଦ୍ୟୋତକ। ଏହାହିଁ କବି, ସମାଲୋଚକ ସୌରୀନ୍ଦ୍ରଙ୍କ ସିଦ୍ଧି ଓ ସାର୍ଥକତା। ଏହି ସିଦ୍ଧି ଓ ସାର୍ଥକତାକୁ ସ୍ୱତନ୍ତ୍ର ଭାବେ ଅଧ୍ୟୟନ କରାଯାଇଛି। କବିର ସମସ୍ତ ସୃଷ୍ଟି ବିଭବ ଗୁଡ଼ିକ ପାଠକ ମାନଙ୍କର ଏକାନ୍ତ ପରିଚୟ ହେବା ବାଞ୍ଛନୀୟ। ସେ ଦୃଷ୍ଟିରୁ କବିଙ୍କ ସାରସ୍ୱତ ସୃଷ୍ଟି ବିଭବର ତାଲିକା ନିମ୍ନରେ ପ୍ରଦତ୍ତ ହେଲା।

(କ) କବିତା:-

୧. ସାମାନ୍ୟ କଥନ (୧୯୭୫)- ଅଗ୍ରଦୂତ, କଟକ-୨
୨. ଉପଭାରତ (୧୯୮୧) - ଅଗ୍ରଦୂତ, କଟକ-୨
୩. ଆକାଶ ପରି ନିବିଡ଼ (୧୯୮୫) - ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨
୪. ଗୁଣୁ ଗୁଣୁ ଚିତ୍ରପଟ (୧୯୮୬) - ଗ୍ରନ୍ଥ ମନ୍ଦିର,କଟକ-୨
୫. ଲୁହ ଠୁ ବି ଅନ୍ତରଙ୍ଗ (୧୯୮୯) - ଓଡ଼ିଶା ବୁକ୍ ଷ୍ଟୋର, କଟକ-୨
୬. ଅନୁଭାରତ (୧୯୯୦) - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨
୭. ଆମେ ଦୁହେଁ (୧୯୯୧) - ବିଦ୍ୟାପୁରୀ, କଟକ-୨
୮. ଚହଲା ଛାଇରେ ଘଡ଼ିଏ (୧୯୯୫) - ଓଡ଼ିଶା ବୁକ୍ ଷ୍ଟୋର, କଟକ-୨
୯. ପଢ଼ ବା ନ ପଢ଼ (୧୯୯୭) - ଆର୍ଯ୍ୟ ପ୍ରକାଶନୀ, କଟକ-୧୨
୧୦. ହଳଦୀ ବସନ୍ତ (୧୯୯୯) - ପ୍ରକାଶକ ତପନ କୁମାର ମହାପାତ୍ର, କଟକ-୨

୧୧. ଆମ ଦୁହିଁଙ୍କ କଥା (୨୦୦୧)- ବିଦ୍ୟାପୁରୀ, କଟକ-୨
୧୨. ଯେତେ ସବୁ ବୀଥିକୁ ନେଇ (୨୦୦୩) - ନବୋଦୟ ପ୍ରକାଶନ, କଟକ-୨
(ଖ) ପ୍ରବନ୍ଧ ଆଲୋଚନା:
୧୩. ଅନ୍ୱେଷାର ସ୍ୱର (୧୯୮୦) - ଅଗ୍ରଦୂତ, କଟକ-୨
୧୪. ଚେତନାର ଚୌହଦୀ (୧୯୮୩) - ଅଗ୍ରଦୂତ, କଟକ-୨
୧୫. ସତ୍ୟର କୁହୁକ (୧୯୯୦) - ଅଗ୍ରଦୂତ, କଟକ-୨
୧୬. ବାମନର ପାଦ (୧୯୯୧) - ଅଗ୍ରଦୂତ, କଟକ-୨
୧୭. ଶବ୍ଦ ସବୁ ସରିଗଲେ (୧୯୯୪) - ବିଦ୍ୟାପୁରୀ, କଟକ-୨
୧୮. ଉଦାର ନରସିଂହ (୧୯୯୬) - ଆର୍ଯ୍ୟ ପ୍ରକାଶନୀ, କଟକ-୧୨
୧୯. ସାଂପ୍ରତିକ କାଳ ଓ ଚିରନ୍ତନ କବି (୧୯୯୯) - ଗ୍ରନ୍ଥମନ୍ଦିର, କଟକ-୨
୨୦. Baikunthanath Pattanaik (1990) - Sahitya Academy - New Delhi.
୨୧. ମହାନ୍ ଓ ସୁନ୍ଦର ଧାରଣାର ମୂଳ ଉତ୍ସ :
ଏକ ତାତ୍ତ୍ୱିକ ଜିଜ୍ଞାସା - ମୂଳ ରଚନା - Edmund Burke
(Philosophical Inquiry to the origin of our Ideas of thesublime and beautiful) (୧୯୮୫) ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା
୨୨. ବିଚାର, ମୂଳ ରଚନା -Kafka (The Trial) (୧୯୮୯) ଓଡ଼ିଶା ସାହିତ୍ୟ ଏକାଡ଼େମୀ ।

**ସଙ୍କେତ ସୂଚୀ:-**

୧: ଚିଲିକା (ପ୍ରଥମ କବିତା) : ସୌରୀନ୍ଦ୍ର ବାରିକ (ଦୁଷ୍ପ୍ରାପ୍ୟ)
୨: ପ୍ରଜ୍ଞା : ପ୍ରଥମ ବର୍ଷ : ପ୍ରଥମ ସଂଖ୍ୟା (୧୯୬୦)
୩: ସାମାନ୍ୟ କଥନ : ସୌରୀନ୍ଦ୍ର ବାରିକ
ପ୍ରଥମ ପ୍ରକାଶ : ପୃଷ୍ଠା:୩

# କବି ସୌରୀନ୍ଦ୍ର ବାରିକଙ୍କ କାବ୍ୟମାନସ

## କବି ସୌରୀନ୍ଦ୍ର ବାରିକଙ୍କ ସୃଷ୍ଟି ବିଭବ

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ କବି ସୌରୀନ୍ଦ୍ର ବାରିକ ଏକ ପରିଚିତ ସ୍ୱର । ଧୂଳିଠୁ ଧୂମାଳ ହେଉ କିମ୍ବା କାକରଠୁ କରକା ହେଉ, ଜୁଡୁ ସୁଡୁ ଲୁହ ହେଉ ଅବା ଛାତିର ନୀରବତା ହେଉ, ମାଟିରୁ ଆକାଶ ହେଉ ଅବା ମେଘ ଅନ୍ଧାରରୁ ଜହ୍ନ ଆଲୁଅ ହେଉ, ସବୁଠି ସଂପର୍କର ବାସ୍ନା, ଭଲ ପାଇବାର ଅନ୍ତରଂଗ ସ୍ୱର, ଜୀବନର ଭିନ୍ନ ଭିନ୍ନ ସ୍ୱାଦ, ଭିନ୍ନ ଭିନ୍ନ ରଂଗ । ସବୁ କୋଳାହଳର ନିଥର ନୀରବତା ଭିତରେ ଚଞ୍ଚୁଏ ସଂପର୍କ, ପ୍ରେମର ନିବିଡ଼ ଆଲିଙ୍ଗନ ତ ପୁଣି ଅନୁଭବର ସୁଖଦ ସ୍ୱାଦ । କେଉଁଠି ଡାଳଟିଏ କଟିଗଲେ ସେ ଯେତିକି ଲହୁ ଲୁହାଣ ହୁଅନ୍ତି, ପୁଣି ଚଢ଼େଇଟିଏ ଗଛରେ କିଚିରି ମିଚିରି ହେଲେ ସେ ସେତିକି ଉଛୁଳି ଉଠନ୍ତି । ସେ ଶବ୍ଦ ଦେଇ ଈଶ୍ୱରଙ୍କ ସୃଷ୍ଟିକୁ ଆଉଥରେ ଗଢ଼ନ୍ତି । ସେ ଦ୍ୱିତୀୟ ଈଶ୍ୱର । ତାଙ୍କ ଶବ୍ଦରେ ଅସଂଖ୍ୟ ପୃଥିବୀ, ଅସଂଖ୍ୟ ଫୁଲ ଫୁଟି ଉଠନ୍ତି ବିଭିନ୍ନ ରଂଗ ବେରଂଗରେ । ତାଙ୍କ କବିତାର ସ୍ୱର କେତେବେଳେ ମେଘ ପରିତ ଆଉ କେତେବେଳେ ତାରା ପରି । ତାହା ଅନ୍ଧାର ଆଲୁଅର ଦୂର ଦିଗନ୍ତ ନୁହେଁ, ଅଥଚ ଆଶା ଆକାଂକ୍ଷାର ନିକଟ ଭବିଷ୍ୟ ପରି ମନେ ହୁଅନ୍ତି । କେତେବେଳେ ସ୍ୱପ୍ନର ସିନ୍ଧୁକ ଫିଟେ ତ ପୁଣି କେତେବେଳେ ଟିକେ ସାନ୍ନିଧ୍ୟ ପାଇଁ ବ୍ୟାକୁଳ ପଣ । ସମସ୍ତେ ଲାଗନ୍ତି ନିଜର, ସାରା ସଂସାର ଦିଶେ ଖୁବ ସୁନ୍ଦର । ସେ ମୁକ୍ତିର କବି, ସଂପର୍କର କବି, ସବୁବେଳେ ଯୋଡ଼ି ଦିଅନ୍ତି ଅଲଗେଇବା ପାଇଁ ନୁହେଁ, ପ୍ରତୀକ୍ଷା ପାଇଁ ଯନ୍ତ୍ରଣା ହେଉ ଅବା ଚେନାଏ ସଂପର୍କ ପାଇଁ ଟୋପାଏ ଲୁହ ହେଉ, ସେ ଭୁଲି ପାରନ୍ତି ନାହିଁ ଫୁଲର ସଦ୍ୟ ସୁରଭିକୁ । ସ୍ୱପ୍ନର ସଂପର୍କ, ସଂପର୍କରୁ ସ୍ୱୀକାରୋକ୍ତି; ସବୁଠି ନିବିଡ଼ତାର ସ୍ମୃତି, ସ୍ୱପ୍ନର ପୃଥିବୀ ସତ ମିଛ ବଞ୍ଚିବାର ଅଶ୍ଳୀଳ ଆନନ୍ଦଟେ ପରି । ଯେମିତି, କବିତା ତାଙ୍କ ନିଃଶ୍ୱାସରେ, ରକ୍ତରେ, ଚେତନାରେ ସଦା ଚଳଚଞ୍ଚଳ ।.

### (କ) ସାମାନ୍ୟ କଥନ (୧୯୭୫)

ସାମାନ୍ୟ କଥନ (୧୯୭୫) ଆଧୁନିକ ଓଡ଼ିଆ କାବ୍ୟ ଭଣ୍ଡାରକୁ କବି ସୌରୀନ୍ଦ୍ର ବାରିକ୍‌ଙ୍କ ଅନ୍ୟତମ ଅନୁପମ ଅର୍ଘ୍ୟ । ଅଗ୍ରଦୂତ ପ୍ରକାଶନ (ବାଙ୍କାବଜାର) ଦ୍ୱାରା କବିତା

ସଂକଳନଟି ପ୍ରକାଶିତ ହୋଇ ବେଶ୍ ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଛି । 'ସାମାନ୍ୟ କଥନ' କବିତା ସଂକଳନ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । କବିତା ଗୁଡ଼ିକ ପ୍ରାୟ ଷଷ୍ଠ ଦଶକରୁ ସପ୍ତମ ଦଶକ ମଧ୍ୟରେ ରଚିତ । 'ସାମାନ୍ୟ କଥନ' କବିତା ସଂକଳନଟି ଅଣାଅଶୀଟି କବିତାକୁ ନେଇ ଋଦ୍ଧିମନ୍ତ ।

କବିତା ସଂକଳନରେ ସ୍ଥାନିତ ଅନେକ କବିତା କବିଙ୍କ ଛାତ୍ର ଜୀବନର ଲେଖା । କବିତାଗୁଡ଼ିକ ଅଣନିଃଶ୍ୱାସୀ ଓ ଅବସାଦଗ୍ରସ୍ତ ଆତ୍ମାରୁ ମୁକ୍ତିର ପ୍ରୟାସ କରୁଥିବା ଚେତନାର ପ୍ରତିଲିପି । ଦାର୍ଶନିକ ସୁଲଭ ଦୃଷ୍ଟିଭଙ୍ଗୀ, ବ୍ୟକ୍ତିକ ଅନ୍ତର୍ମୁଖୀନତା, ଆତ୍ମବ୍ୟଙ୍ଗ ଓ ତୀବ୍ର ସମୟଚେତନା ହିଁ କବିତା ଗୁଡ଼ିକର ପ୍ରାଣକେନ୍ଦ୍ର । କେଉଁଠି ଧୂସର ବାଦଲ ଭିତରେ ଘନକୃଷ୍ଣ ମେଘର ପଲ୍ଲବ ତ ପୁଣି କେଉଁଠି ଧ୍ୱଂସର ସ୍ତୁପଲୀନା ଭିତରୁ ଦଲକାଏ ଫଲ୍‌ଗୁର ଚନ୍ଦନ । ମୁକ୍ତି ପ୍ରୟାସୀ ମାନସିକତାର ପ୍ରତିକ୍ରିୟା ନେଇ କବିତା ଗୁଡ଼ିକ ସରସ ସୁନ୍ଦର ଭାବରେ ପରିଶୋଭିତ । ନିଜକୁ ନିଜଭାବରେ ପ୍ରକାଶ କରିବାର ସତ୍ୟଶୀଳ ଅନୁଭୂତିଟି କବି ସୌରୀନ୍ଦ୍ର ବାରିକଙ୍କ କବିତାର ପ୍ରତିଧ୍ୱନୀ ।

'ସାମାନ୍ୟ କଥନ' କବିତା ସଂକଳନରେ ସନ୍ନିବେଶିତ କବିତା ଗୁଡ଼ିକ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଚେତନାରେ ଅନୁରଣିତ । ଚିତ୍ରକଳ୍ପୀୟ ଶୈଳୀରେ ଲିଖିତ କବିତାଗୁଡ଼ିକ ଯେମିତି ନୈରାଶ୍ୟ, କ୍ଳାନ୍ତି ଓ ବିଷଣ୍ଣତାବୋଧ ଭିତରେ ଦଣ୍ଡାୟମାନ । ବାହ୍ୟବସ୍ତୁ ଓ ପରିବେଶ ଭିତରେ କବିଙ୍କ କାବ୍ୟମାନସର ପ୍ରତିଫଳନ ସ୍ପଷ୍ଟ । ବ୍ୟକ୍ତିଗତ ମାନସିକତା ଭିତରେ ବହିର୍ଜଗତର ସ୍ପଷ୍ଟ ଚିତ୍ର ଏବଂ ଦୈନନ୍ଦିନ ଘଟଣା ଭିତରେ ଅସାଧାରଣ ବକ୍ତବ୍ୟ ତାଙ୍କ କବିତାର ପ୍ରାଣକେନ୍ଦ୍ର ।

ସୌରୀନ୍ଦ୍ର ବାରିକ୍‌ଙ୍କ 'ସାମାନ୍ୟ କଥନ' ସମୀକ୍ଷା ପ୍ରସଂଗରେ କବି ସଚ୍ଚି ରାଉତରାୟଙ୍କ ମନ୍ତବ୍ୟ ସ୍ମରଣ କରାଯାଇପାରେ । ସୌରୀନ୍ଦ୍ର ବାରିକ୍‌ଙ୍କ କବିତାରେ ଭାବ ଓ ଶୈଳୀ ମଧ୍ୟରେ କିଛିଟା ଭାରସାମ୍ୟ ପରିଲକ୍ଷିତ ହୁଏ । ଚେତନାର ସମୀକରଣ ସବୁଠି ସମ୍ଭବ ନହେଲେ ମଧ୍ୟ କବିଙ୍କର ଅନ୍ତର୍ମୁଖୀନତା ବାହାରର ବସ୍ତୁପୁଞ୍ଜ ଗୁଡ଼ିକ ପୁଣି ଦୈନନ୍ଦିନ ଜୀବନର ପରିସର ଭିତରୁ ଆହରଣ କରାଯାଇଛି । ଫଳରେ କବିତା ଗୁଡ଼ିକ ଶକ୍ତି ସଂପନ୍ନ ବୋଲି ମନେ ହୁଅନ୍ତି ।୧।

କବିତା ସଂକଳନରେ ସ୍ଥାନିତ ଅଧିକାଂଶ କବିତା ଅନୁକରଣ ସର୍ବସ୍ୱ । କବି ମନୀଷୀ ଇଲିୟଟ ଓ ଏଜରା ପାଉଣ୍ଡ୍‌ଙ୍କ ଠାରୁ ଆରମ୍ଭ କରି ସଚ୍ଚି ରାଉତରାୟ, ଗୁରୁପ୍ରସାଦ ମହାନ୍ତିଙ୍କ ପର୍ଯ୍ୟନ୍ତ ସେମାନଙ୍କର ପ୍ରଭାବ କବିତାଗୁଡ଼ିକରେ ପରିଲକ୍ଷିତ ହୁଏ । ସଂସାର ମୋହମୁକ୍ତି, ବ୍ଲେକ୍ ଆଉଟ, କଣ୍ଢେଇ ସଂଧ୍ୟାହତ, ପ୍ରଭୃତି କବିତାର ଗଦ୍ୟ ଶୈଳୀରେ ସେ ସବୁର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । କବି ଏହାକୁ ସାମାନ୍ୟ କଥନର ମୁଖବନ୍ଧରେ ଅଙ୍ଗେ ବହୁତେ ସ୍ୱୀକାର ମଧ୍ୟ କରିଛନ୍ତି । କବି ପ୍ରକାଶ କରିଛନ୍ତି, ଏଗୁଡ଼ିକ ଅପରିପକ୍ୱ, ଅଗଭୀର ଏବଂ କେବଳ ଅନୁକରଣ ବୋଲି ମନେ କରାଯାଇପାରେ କିନ୍ତୁ, ସବୁ ସତ୍ତ୍ୱେ

ଏହା ଯେ କବିଙ୍କ ସମ୍ଭାବନା ମଧ୍ୟରେ ପ୍ରସ୍ତୁତି କ୍ଷେତ୍ର ଏହା ଅସ୍ୱୀକାର କରାନଯାଇପାରେ। କବି ମଧ୍ୟ ସେଥିପ୍ରତି ବେଶ୍ ସଚେତନ। ତେଣୁ ସେ ପ୍ରକାଶ କରିଛନ୍ତି - 'କବିଟିଏ ପାଇଁ ଏପରି ଅନୁକରଣ ତ କହିଲି ଖଡ଼ି ଛୁଆଁ କବିତା ଜଗତକୁ ପଶିବା ପଥରେ ପ୍ରଥମ ପାହାଚ। ଖାଲି ମୋ ପାଇଁ ନୁହେଁ; ସବୁ ଶିଳ୍ପୀଙ୍କ ପାଇଁ ଏପରି ଅନୁକରଣ ଅତ୍ୟନ୍ତ ଦରକାର। କାରଣ ଏହା ନିଜକୁ ଚିହ୍ନିବାରେ ସାହାଯ୍ୟ କରିଥାଏ। ସାହାଯ୍ୟ ବି କରିଥାଏ ନିଜକୁ ଖୋଜି ପାଇବାରେ। ଏହା ଅନ୍ଧାନୁକରଣ ନୁହେଁ। ଏହା ଏକ ସୃଷ୍ଟିଶୀଳ ଅନୁକରଣ। ଏହା ଏକ ଅନ୍ଧପରି ଗତି ମାତ୍ର ନୁହେଁ; ଏହା ଲକ୍ଷ୍ୟ ହାସଲର ମାଧ୍ୟମ ଆତ୍ମାବିଷ୍କାର ପାଇଁ ଏହା ଏକ ପ୍ରସ୍ତୁତି।୨।

କବି କବିତା ଲେଖେ ସିନା, କିନ୍ତୁ କବିତା ବିଷୟରେ କିଛି ପଚାରିଲେ ବଡ଼ ଅଡୁଆରେ ପଡିଯାଏ। ସବୁଠାରୁ ବେଶି ଅଡୁଆରେ ପଡ଼େ ଯେତେବେଳେ ତାକୁ ନିଜ କବିତା ବିଷୟରେ କହିବାକୁ ପଡିଥାଏ। ନିଜ କବିତାରେ କବି ତ ଯାହା କହିବାର କଥା ସବୁ କହି ସାରିଥାଏ। ତେଣୁ ଏପରି କହିବାର ପ୍ରୟୋଜନୀୟତା ମୁଁ ଅନୁଭବ କରେ ନାହିଁ। ନିଜ ଅନୁଭୂତିକୁ କବି ତା କବିତାରେ ସୂଚାଇ ଦିଏ; ଏ ସୂଚନାର ବର୍ଣ୍ଣନା ଦରକାର କ'ଣ ?

ସୌରୀନ୍ଦ୍ର ବାରିକ ଯଥାର୍ଥରେ ପ୍ରକାଶ କରିଛନ୍ତି - 'କବିତାଟିଏ ଲେଖି ସାରିଲେ ସେଇ ମୁହୂର୍ତ୍ତରେ ମୁଁ ନିଜକୁ ନିଃଶେଷ କରିଦିଏ। ମୋର ସଂପୂର୍ଣ୍ଣ ସତ୍ତା ସେହି ସତ୍ତାଟି ଭିତରେ କେମିତି ଏକ ନିଜସ୍ୱ ଭାବରେ ରୂପ ପାଇଥାଏ। ଏକ ପ୍ରକାର ମୁକ୍ତି ଅନୁଭବ କରେ। ଭାରି ହାଲ୍କା ଲାଗେ। ବାସ୍ ଏତିକି। ମୋ' କବିତା ଲେଖାର କାହାଣୀ ଏଇଠି ଶେଷ ହୁଏ। ଏହି ମୁକ୍ତ ଭାବ ମୋତେ ଖୁବ୍ ଆନନ୍ଦ ଦିଏ। ଏହି ଆନନ୍ଦ ପାଇଁ ମୁଁ କବିତା ଲେଖେ ମୋ ପାଇଁ। ଏହି ଆନନ୍ଦ ପଛରେ ଆଉ ଗୋଟିଏ ଇଚ୍ଛା ଛପି ରହିଥାଏ। ଅନ୍ୟମାନେ ବି ମୋ' କବିତା ପଢ଼ନ୍ତେ କି, ମୋ' ଆନନ୍ଦରୁ ଭାଗ ନିଅନ୍ତେ କି ? ଏହି ଇଚ୍ଛା ଏହି ଆନନ୍ଦ ପାଇବା ଏବଂ ନେବାର ଇଚ୍ଛା ମୋ' କବିତା ଲେଖାର ମୂଳ।୩।

ବାସ୍ତବରେ ଦେଖିବାକୁ ଗଲେ ଯୁଦ୍ଧ ପରବର୍ତ୍ତୀ ମାନସିକତାର ନିଛକ ଚିତ୍ର କବିତା ଗୁଡ଼ିକରେ ପ୍ରତିଫଳିତ ଯେହେତୁ ଏହା ତାଙ୍କ କାବ୍ୟ ଜୀବନର ପ୍ରାରମ୍ଭିକ ସୂଚନା। ସ୍ୱାଭାବିକ୍ ଭାବରେ ସେ ଅନ୍ୟ କବିମାନଙ୍କ ଦ୍ୱାରା ପ୍ରଭାବିତ କେବଳ ହୋଇନାହାଁନ୍ତି, ସେଥିରୁ ମୁକ୍ତି ପ୍ରୟାସୀ ମାନସିକ ଚେତନାର ଏହା ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ। ଏହା ତାଙ୍କ କବିତା ପାଇଁ ନିଶ୍ଚିତ ଭାବରେ ଶୁଭ ଲକ୍ଷଣ। ଏଥି ପ୍ରତି କେବଳ ସଚେତନ ନୁହନ୍ତି ସକାରାତ୍ମକ ମଧ୍ୟ। ତେଣୁ ସେ ପ୍ରକାଶ କରିଛନ୍ତି 'ଷଷ୍ଠ ଦଶକରେ ତ ମୁଁ ଇଲିୟଟ୍ ଅଡେନ ଆଦିଙ୍କ ହାତଧରି ଚାଲୁଥିଲି। ଯେମିତି ଛୋଟ ଶିଶୁଟିଏ ତା ବାପାମାଆଙ୍କ ହାତ ଧରି ଟଳମଳ ପାଦ ପକାଇଥାଏ। ସେ କେବଳ ଥିଲା ମୋ ପାଇଁ ଅନୁକରଣର ବେଳ। ସେଇ ପ୍ରଥମ ପର୍ଯ୍ୟାୟରେ ଯେତେବେଳେ ମୁଁ ଅନୁକରଣ କରୁଥିଲି ଇଲିୟଟ

ମୋ' ପାଇଁ ଥିଲେ ସେ ଏକ ପରମ ଆକର୍ଷଣ। ମୁଁ ମୋ' ନିଜକୁ ତାଙ୍କ 'ପ୍ରୁଫୋକ' କିମ୍ବା 'ହଲୋମେନ' ସହ ସାମିଲ୍ କରିଥିଲ. ଏକାତ୍ମ ହୋଇଥିଲି। ତାଙ୍କ ପୋଡାଭୂଇଁ ଥିଲା ମୋର ଜଗତ।୪।

ପ୍ରକୃତପକ୍ଷେ 'ସାମାନ୍ୟ କଥନ'ର କାବ୍ୟନାୟକ ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୋଡାଭୂଇଁରେ ଦେଖୁଥିଲା ଏ ଜଗତ ଯେମିତି କରୁଣ ଓ ବିବର୍ଣ୍ଣ। ଜଣ୍ଡିସ ରୋଗୀପରି ଜହ୍ନରାତି ବି ପାଂଶୁଳ। ଜୀବନ ସରୁଛି ଅଧାପୋଡ଼ା ସିଗାରେଟ ପରି। ପରାଜିତ, ଆହତ, ଅପମାନିତ ମଣିଷ ଧବଳ କୁଷ୍ଠ ପରିବିକୃତ। ଏ ପୃଥିବୀ ଯେମିତି ବଡ଼ ଉଦାସ, ହାହାକାରମୟ। ଦିନରେ ସେ ନର୍ଦ୍ଦମା କଡ଼ରେ ବେହୋସ ମାତାଲ; ପୁଣି ରାତିରେ ମିଞ୍ଜି ମିଞ୍ଜି ଦୀପ ଜାଳି ବସିଥିବା ଅନ୍ଧାରୁଆ ପିତାଶୁଣି ତାରାଖିଆ କନ୍ଥା ପରି ଆକାଶ। ସଂସାର ବାମନର ତୃତୀୟ ପାଦ; ଆଉ କାବ୍ୟ ନାୟକ ଯେମିତି ରାତିର ବାଟବଣା ମରାଳଟିଏ। ମଣିଷ କେଡ଼େ ନିଃସଂଗ କେଡ଼େ ଅସହାୟ ସତେ। କାବ୍ୟ ନାୟକ ଯେମିତି ମୋହମୁକ୍ତ ଦସ୍ୟୁ ରତ୍ନାକର; ଚାରିପାଖରେ କେବଳ ଶୂନ୍ୟତା। ସମୁଦ୍ରର ବିଳାପ ପରି ଅସହାୟତାର ଅଶାନ୍ତ ହାହାକାର। ଆଗକୁ ଦୀର୍ଘପଥ ଅଥଚ ଗୌତମ ମୁନିଙ୍କ ଅଭିଶାପରେ ଆଜିର ମଣିଷ ଯେମିତି ଶିଳୀଭୂତ ଅହଲ୍ୟା ମୃତ୍ୟୁର କ୍ରୁର କବଳରେ ଅସହାୟ ଜୀବନଟିଏ। ନାହିଁ ଜୀବନର ବିଶାଳତା, ଅନୁଭବର ଭୀକ୍ଷଣତା। କାବ୍ୟନାୟକ ନିରୀହ ଆହୂତିଟିଏ ଛଡା ଆଉ କ'ଣ ହୋଇପାରେ ?

ତଥାପି କବିଙ୍କ ସ୍ୱପ୍ନ ଓ ସମ୍ଭାବନାକୁ ଅସ୍ୱୀକାର କରାଯାଇ ନପାରେ। ଜହ୍ନର କୁଝଟିକା ଭିତରେ ଯୁଗ ଯୁଗର ଅନ୍ୱେଷଣ ବିନିଦ୍ର ରଜନୀ ଭିତରେ 'ମୁଁ'ର ପରିଚୟ; ପୁଣି କେଉଁଠି ଘାସ ଉପରେ ବସିବାର ମୋହ ତ ପୁଣି ଭସା ବାଦଲ ପରି ଭାସି ବୁଲିବାର ଇଚ୍ଛା। ପାହାଡ଼ର ଛାତି ଉପରେ ଜୁଲୁଜୁଲୁ ଶୂନ୍ୟ ଝରଣାଟିଏ ହୋଇ ବହିଯିବାର ପ୍ରତିଧ୍ୱନି କମ୍ ସାହସ ପ୍ରକାଶ କରୁନାହିଁ।

ବାହାରେ ଧ୍ୟାନ-ଗମ୍ଭୀର ରାତି। ଆକାଶରେ ରତି ବ୍ୟାକୁଳ ଜହ୍ନ କବିଙ୍କୁ ପ୍ରତୀକ୍ଷା କରିବାକୁ ହେବ। ସ୍ୱପ୍ନରେ ଅଧିର ହେବାକୁ ହେବ। କାରଣ କାବ୍ୟନାୟକ ଜାଣେ ନୀରବତା ଦିନେ କଥା କହିବ, ଶୂନ୍ୟତା ଦିନେ ରୂପମୟୀ ହେବ; ନିଃସଂଗତା ଦିନେବାନ୍ଧବୀ ହୋଇ ଆଲିଙ୍ଗନ କରିବ। ଏଇଥିପାଇଁ କାବ୍ୟ ନାୟକର ଏତେ ସ୍ୱପ୍ନ ଏତେ ସମ୍ଭାବନା ଅସ୍ୱୀକାର କରି ହେବନି। ଯଦିଓ କାଳର ହେଣ୍ଟାଳ ଶୁଭୁଛି; ତଥାପି ସେ କିନ୍ତୁ ଅତିକ୍ରମ କରିଯିବେ ନିର୍ଦ୍ଦିଷ୍ଟ ସିଡ଼ିରପାହାଚକୁ ଗୋଟେ ପରେ ଗୋଟେ ଜୀବନକୁ ଗଢ଼ି ପାରିବାର, ଭଲ ପାଇବାର ସ୍ନେହ ପ୍ରବଣ ମାନସିକତାଟିଏ। ଅସ୍ଥିରରୁ ସ୍ଥିର ପ୍ରୟାସୀ କାବ୍ୟନାୟକ। ସେଇଥିପାଇଁ କବି ସଚ୍ଚି ରାଉତରାୟ 'ସାମାନ୍ୟ କଥନ'ର ସମୀକ୍ଷାରେ କହିଥିଲେ ଏହାର ଏକ ଐତିହାସିକ ଭୂମିକା ରହିଛି। ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ 'ସାମାନ୍ୟ କଥନ' ଏକ ସମ୍ଭାବନାମୟ ମଧୁକୋଷ।

## (ଖ) ଉପଭାରତ (୧୯୮୧)

ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ବିଶେଷତ୍ୱ ହେଲା ତାଙ୍କ କବିତାରେ ଆମେ ସୁସ୍ପଷ୍ଟ ଗଦ୍ୟଶୈଳୀ ଭିତରେ କବିତାର ପ୍ରାଣସ୍ପନ୍ଦନ ଅନୁଭବ କରୁ । ସେ ପ୍ରାୟତଃ ଆମର ପ୍ରାତ୍ୟହିକ ଜୀବନର କଥାବାର୍ତ୍ତା ଭିତରୁ କଦାଚିତ୍ ଧ୍ୱନୀତ ହୋଇ ପଡୁଥିବା ବାକ୍ ଛନ୍ଦଟିକୁଁ ତୋଳି ଦେଇ ତାଙ୍କ କାବ୍ୟାବେଗର ଅଭିବ୍ୟକ୍ତି ଲାଗି ବ୍ୟବହାର କରିଥାନ୍ତି । ସେହିପରି ମଧ୍ୟ ଆମର ଦୈନନ୍ଦିନ ଜୀବନର ଅନେକ ପରିଚିତ ଦୃଶ୍ୟ ଓ ଚରିତ୍ର ମାନଙ୍କ ଭିତରୁ କଦାଚିତ୍ ଆପଣାର ବୈଶିଷ୍ଟ୍ୟ ଓ ଅର୍ନ୍ତଲୀନ ରହସ୍ୟ ଯୋଗୁଁ ତାଙ୍କ କବି ଦୃଷ୍ଟିରେ ଅସାଧାରଣ ମନେ ହେଉଥିବା କେତେକ ଦୃଶ୍ୟ ଓ ଚରିତ୍ରର ଅପୂର୍ବ ବ୍ୟଞ୍ଜନାମୟ ଛବି ତୋଳି ଦେଇ ସେ ତାଙ୍କରକାବ୍ୟ ବିଗ୍ରହ ନିର୍ମାଣ କରି ଆମକୁ ଆପାତ ପରିଚିତ ଭିତରେ ଥିବା ଅପରିଚିତଟିକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦିଅନ୍ତି । ପ୍ରତିଟି କବିତାର ଶେଷ ଭାଗରେ ଥାଏ ତାଙ୍କର ନିଜସ୍ୱ ଉପଲବ୍ଧିର ଦୃଢ଼ ଉଚ୍ଚାରଣା ଏବଂ ତାହା ହିଁ ହୁଏତ ସେହି କବିତାଟିର ତାତ୍ପର୍ଯ୍ୟ ବା ମର୍ମ କିମ୍ୱା କେବେକେବେ ତା'ର ଏକ ମନୋଜ୍ଞ ସୂଚନା । ମନନ ବିଶ୍ଳେଷଣ ଓ ମର୍ମ ଉଦ୍‌ଘାଟନ ହେଲା ତାଙ୍କର କାବ୍ୟଧର୍ମ । ଏଥି ପାଇଁ କେହି କେହି ତାଙ୍କ କବିତା ଗୁଡ଼ିକ ଭିତରେସନେଟୀୟ ସ୍ଥିତି ପ୍ରତିଜ୍ଞା ସହିତ ଏକ ସୁସଂହତ ଅର୍ନ୍ତଗୂଢ଼ ଗଭୀର ଭାବାବେଗର ଅପୂର୍ବ ସମନ୍ୱୟ ଲକ୍ଷ୍ୟ କରିଥାନ୍ତି ।

'ଉପଭାରତ' କବିତା ସଂକଳନଟି ଦ୍ୱିତୀୟ କବିତା ସଂକଳନ । କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକ ମହାଭାରତର ମହାନ୍ ଜଟିଳ ଚରିତ୍ର ଗୁଡ଼ିକ ଉପରେ ଓ କେତୋଟି ଗଭୀର ପରିସ୍ଥିତି ଉପରେ ଆଧାରିତ । ସଂକଳନରେ ସ୍ଥାନିତ କବିତାଗୁଡ଼ିକରେ ଆମେ ଆମର ପରିଚିତ ମହାନ ରହସ୍ୟମୟ ପୌରାଣିକ ନିତ୍ୟ ଚରିତ୍ର ଗୁଡ଼ିକ ସହିତ ପୁନର୍ବାର ପରିଚିତ ହେଉ । ଚଉତିରିଶ ଗୋଟି କବିତାକୁ ପାଥେୟ କରି 'ଉପଭାରତ' କବିତା ସଂକଳନଟି ଋଦ୍ଧିମନ୍ତ । ସଂକଳନସ୍ଥ କବିତା ଗୁଡ଼ିକ କ୍ଷୁଦ୍ର ଅଥଚ ରସୋଦ୍ଦୀପ୍ତ । ଆପାତଃ ଆଧୁନିକ ଓଡ଼ିଆ କବିତା ଯେଉଁ ସବୁ ଅଭିଯୋଗରେ ଭାରାକ୍ରାନ୍ତ 'ଉପଭାରତ' ତହିଁରୁ ମୁକ୍ତ ।

'ଉପଭାରତ' ମହାଭାରତର ଏକ ଅପରିହାର୍ଯ୍ୟ ଅଙ୍ଗ ନୁହେଁ । ଏହା ଏକ କୃତ୍ରିମ 'ଭାରତ' ନୁହେଁ ଏକ ଅପଭ୍ରଂଶ ନୁହେଁ । ବରଂକବି ସୌରୀନ୍ଦ୍ର ବାରିକଙ୍କ ଏହା ଏକ ସ୍ୱୟଂ ସଂପୂର୍ଣ୍ଣ କାବ୍ୟାକୃତି; ଯେଉଁଠି ମହାଭାରତୀୟ ଚରିତ୍ର ମାନଙ୍କର ଯଥାର୍ଥ ସ୍ଥୂଳାତ୍ମକବିକାଶ ସମ୍ଭବ ହୋଇ ପାରିଛି ।୫।

କବିତାର ଆତ୍ମା, ବସ୍ତୁ ବିନ୍ୟାସ ଓ ଉପସ୍ଥାପନା ଅଭିନବ । ସ୍ୱକୀୟ ସୌରୀନ୍ଦ୍ରିୟ ଶୈଳୀରେ ଦୀପ୍ତିମନ୍ତ । ବର୍ଣ୍ଣନାର କୃତ୍ରିମତାର ଚରିତ୍ର ଗୁଡ଼ିକ ଆଦୌ ରହସ୍ୟମୟୀ ବା ଅତି ମାନବୀୟ ନୁହଁନ୍ତି । ବରଂ ସାଧାରଣ ମଣିଷର ସୁଖ ଦୁଃଖ ଆଚାର ଓ ବିଚାରର ଏକ ଏକ ମୂର୍ତ୍ତିମନ୍ତ ପ୍ରତୀକ ପରି ମନେ ହୁଅନ୍ତି । ସାଧାରଣ ନାରୀଟିଏ ପରି ଅଭିମାନିନୀ

ଦ୍ରୌପଦୀ ନିଜ ପଞ୍ଚ ସ୍ୱାମୀଙ୍କର ହୀନ ପୌରୁଷକୁ ବିଦ୍ରୂପକରେ । କବି ସୌରୀନ୍ଦ୍ର ବାରିକ୍ 'ଉପଭାରତ' କବିତା ସଂକଳନରେ 'ବସ୍ତ୍ରହରଣ' କବିତାରେ ପ୍ରକାଶ କରିଛନ୍ତି:-

ଟାଣି ନେଇଥିଲା ସେ ଚାଟି ଚାଟି ତା'ଅନ୍ଧାର ଓଠକୁ
ଲୋମଶ ହେଣ୍ଟାଳ ସବୁ ଆପ୍ରାଣରେ ଶୋଷି ଯାଉଥିଲେ
ହିଂସ୍ର ଆନନ୍ଦରେ କରୁଥିଲେ ରକ୍ତ କୁଡୁବୁଡୁ
କଣ୍ଟକିତ ଶୂନ୍ୟତା ଭିତରେ ଦେଖିଲି ଯେ
ଶୀଳିଭୂତ ମୋ' ପାଞ୍ଚ ସ୍ୱାମୀ ବି ଠାକୁର ଦେହରେ ଧର୍ମରେ
ରଗଣ ବିଭୂତି, ରାତରେ ନ୍ୟାୟର ନପୁଂସକ ଅସ୍ତ୍ର ।୬।

'ଉପଭାରତ' କବିତା ସଂକଳନରେ ସ୍ଥାନିତ 'ଧୃତରାଷ୍ଟ୍ର' କବିତାରେ ମଣିଷର ସତ୍ୟ, ବାସ୍ତବ ଅଥଚ କ୍ରୁର ରୂପଟି ଉଦ୍‌ଭାସିତ ହୋଇ ଉଠିଛି । ମଣିଷ ଏକ ବାସ୍ତବ ଚରିତ୍ର ଏବଂ ଏହାକୁ କେନ୍ଦ୍ର କରି ଆହୁରି ଦୁଇଟି କାଳ୍ପନିକ ଚରିତ୍ରର ସୃଷ୍ଟି କରାଯାଇଛି, ତାହା ହେଲା ଅସୁର ଓ ଦେବତା । ଉଭୟେ ଅଲୌକିକ । ଉଭୟେ ମଣିଷଠାରୁ ସାଧାରଣ ଭାବରେ ଶକ୍ତିଶାଳୀ; ମାତ୍ର ଜଣେ ନିଜର ଶକ୍ତିକୁ ସ୍ୱାର୍ଥ ପାଇଁ ବ୍ୟବହାର କରୁଥିଲା ବେଳେ ଅନ୍ୟ ଜଣକ ବିଶ୍ୱର ମଙ୍ଗଳ ନିମିତ୍ତ ଶକ୍ତିର ନିଃସ୍ୱାର୍ଥ ପର ବ୍ୟବହାର କରିଥାଏ । ଜଣେ କ୍ଷତି ସାଧନ କରୁଥିବାବେଳେ ଅନ୍ୟ ଜଣକ ଅଭୟ ପ୍ରଦାନ କରିଥାଏ । ଏହି ଦୁଇଟି ଶକ୍ତି ସ୍ୱର୍ଗ ବା ପାତାଳରେ ରହନ୍ତି ନାହିଁ, ମଣିଷର ଅନ୍ତଃଚେତନାରେ ରହିଥାନ୍ତି ପୁନଶ୍ଚ ମଣିଷ ସ୍ୱୟଂ ଦ୍ୱୈତ୍ୟ ବ୍ୟକ୍ତିତ୍ୱର ଅଧିକାରୀ ସେ ମୂଳତଃ ପଶୁ; କିନ୍ତୁ ପରେ ଏକ ସାମାଜିକ ପଶୁ । ତା'ର ସାମାଜିକ ସ୍ୱରୂପହିଁ ମଣିଷ । ଏଣୁ ମୋଟରେ ଦେଖିବାକୁ ଗଲେ ମଣିଷ ସାମାଜିକ ଭାବେ ଚାରୋଟି ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱରେ ସ୍ୱରୂପିତ । ସଂପୂର୍ଣ୍ଣ ସାମାଜିକ ବ୍ୟକ୍ତିତ୍ୱଟି ହେଉଛି ଏକ ଉନ୍ନତ ମଣିଷ । ଏହାର ତଳକୁ ଖସିଗଲେ 'ପଶୁ' ପାଲଟି ଯାଏ ଏକ ଅନୁନ୍ନତ ମଣିଷ । ସମାଜକୁ ଅସ୍ୱୀକାର କରି ନିଜର ସ୍ୱାର୍ଥ ପାଇଁ ଶକ୍ତି ପ୍ରୟୋଗ କଲେ ଅସୁର ହୋଇଯାଏ ଏବଂ ସମାଜରୁ ଉର୍ଦ୍ଧ୍ୱକୁ ଉଠି ସମଗ୍ର ମଣିଷ ଜାତିର ମଙ୍ଗଳ ପାଇଁ ନିଜକୁ ନିୟୋଜିତ କଲେ ସେ ଦେବତା ହୋଇଯାଏ ।୭।

କୌରବଙ୍କ ମୃତ୍ୟୁରେ ବିଚଳିତ ହୋଇ ପଡ଼ିବା ଧୃତରାଷ୍ଟ୍ରଙ୍କ ପକ୍ଷେ ଯେତିକି ସତ୍ୟ, ସେତିକି ବାସ୍ତବ ହେଉଛି ପୁତ୍ରହନ୍ତାଙ୍କ ପ୍ରତିଶୋଧ କାମନା । ସେଇଥିପାଇଁ ଦମ୍ଭର ସହ ଘୋଷଣାକରନ୍ତି 'ଧୃତରାଷ୍ଟ୍ର ଧର୍ମ ଅଧର୍ମ ମୁଁ କିଛି ବୁଝେନା, ବୁଝେନା ନୀତି ଅନୀତି, ପିତା ମୁହଁ ଚାହେଁ ଖାଲି ପୁତ୍ରର ବିଜୟ ଅବା ନେବା ପାଇଁ ପୁତ୍ରହନ୍ତା ପ୍ରତିଶୋଧ' । ଏ ଧୃତରାଷ୍ଟ୍ର କେବଳ ଏକ ମିଥ୍ ନୁହେଁ । ଏକ ପୌରାଣିକ ବିବଦମାନ ଚରିତ୍ର ନୁହେଁ ।ପ୍ରତି ଯୁଗରେ ପ୍ରତିକାଳରେ ଧୃତରାଷ୍ଟ୍ର ପରିପୁତ୍ରବତ୍ସଳ ପିତାଙ୍କରଦୃଷ୍ଟାନ୍ତ ରହିଛି । ସେ ଶହ ଶହ କୁରୁକ୍ଷେତ୍ରର ସ୍ୱପ୍ନରେ ବିଭୋର ଉନ୍ମତ । ଧର୍ମ ନାମରେ ସକଳ ଅଧାର୍ମିକତାକୁ ଏକ ନିଷ୍ଠୁର ଆଶୀର୍ବାଦ ରୂପେ ଗ୍ରହଣ କରିବାରେ ଏଇ ମହାନ୍ ଚରିତ୍ରର କୁଣ୍ଠାବୋଧ ନାହିଁ, ଗ୍ଲାନି ବି ନାହିଁ ।୮।

..................................

ଏହା ମଧ୍ୟ ସତ୍ୟ ଯେ ସମାଜ ହିଁ ଏଭଳି ଏକ ଶକ୍ତି ଯାହାର ଛାୟାତଳେ ପ୍ରତ୍ୟେକ ବ୍ୟକ୍ତି ନିଜକୁ ସୁରକ୍ଷିତ ମନେ କରିଥାଏ । ମାତ୍ର କୌଣସି କାରଣରୁ ବେଳେବେଳେ ସମାଜ ବ୍ୟକ୍ତି ଉପରେ ଏଭଳି ଭାରି ହୋଇଯାଏ ଯେ ବ୍ୟକ୍ତି ଅଣନିଃଶ୍ୱାସୀ ହୋଇପଡ଼େ ଏବଂ ସେତେବେଳେ ସେ ବିପ୍ଳବ କରିବାକୁ ବାଧ୍ୟ ହୁଏ କିମ୍ବା ନିଜର ଅସ୍ତିତ୍ୱକୁ ସଂପୂର୍ଣ୍ଣ ରୂପେ ହରାଇ ବସେ । ସମାଜର ଏହି ଅସୁନ୍ଦର ରୂପ ମଧ୍ୟ କେତେ ଜଣ ଅସାମାଜିକ ଆସୁରିକ ଶକ୍ତି ଯୋଗୁଁ କିମ୍ବା ଅନ୍ଧବିଶ୍ୱାସରେ କବଳିତ ଅଜ୍ଞ ସମାଜପତି ମାନଙ୍କ ଯୋଗୁଁ ସମ୍ଭବ ହୋଇଥାଏ । ସୁସ୍ଥ ବ୍ୟକ୍ତି ହିଁ ସୁନ୍ଦର ସମାଜ ଗଢ଼ିପାରେ; ଏହା ଉପରେ ସମାଜ ଗୁରୁତ୍ୱ ଦେବା ନିହାତି ଆବଶ୍ୟକ । ଏହା ସ୍ଥାନ କାଳ ପାତ୍ରର ଊର୍ଦ୍ଧ୍ୱରେ ଏକ ସର୍ବକାଳୀନ ବାସ୍ତବତା । ମାନବିକ ଅଧିକାର ଏକବିଂଶ ଶତାବ୍ଦୀର ଚେତନା ଭାବରେ ବିଶ୍ୱଜନତା ନିକଟରେ ବିଧିବଦ୍ଧ ଭାବରେ ରାଜନୈତିକ ଦୃଷ୍ଟିକୋଣରୁ ସ୍ୱୀକୃତ ହୋଇଥିଲେ ମଧ୍ୟ, ଏହାର ଅନୁଭବ ବହୁ ପ୍ରାଚୀନ କାଳରୁ ରହି ଆସିଛି । ଏହାର ମୁଖ୍ୟ କାରଣ ହେଉଛି ମାନବିକ ଅଧିକାର ପ୍ରସଂଗ ଅନ୍ତରଂଗ ଭାବରେ ମାନବତା ଓ ମାନବିକତା ସହ ସଂଶ୍ଳିଷ୍ଟ । ମାତ୍ର ପ୍ରାଚୀନ ପରମ୍ପରାରେ ବ୍ୟକ୍ତି ଉପରେ ସେଭଳି ଗୁରୁତ୍ୱ ଦିଆଯାଇ ନଥିବାରୁ ଏହାର ଗୁରୁତ୍ୱକୁ ସେ ସମୟରକବି ମଧ୍ୟ ଉପେକ୍ଷା କରିଛନ୍ତି ।୯।

'ଉପଭାରତ'ର କେତୋଟି କବିତା ସନେଟୀୟ ଶୈଳୀରେ ରଚିତ ହୋଇଥିଲା ବେଳେ ଅନ୍ୟ କେତେକ କବିତା ନିରୋଳା ଗଦ୍ୟ ଛନ୍ଦରେ ରଚିତ ହୋଇଛି । 'ଶ୍ୱାନସ୍ୱର୍ଗ' ସ୍ୱୟଂବର 'ଚକ୍ଷୁଷ୍ମାନ' ପ୍ରଭୃତି କବିତା ଗୁଡ଼ିକ ପ୍ରଥମପର୍ଯ୍ୟାୟ ଭୁକ୍ତ । ବସ୍ତ୍ରହରଣ, କର୍ଣ୍ଣ, ଅଳିତକ୍ଷକର, ପରି କବିତାକୁ ଦ୍ୱିତୀୟ ପର୍ଯ୍ୟାୟ ଭୁକ୍ତ କରାଯାଇପାରେ । 'ଉପଭାରତ' କବିତା ସଂକଳନରେ ସ୍ଥାନିତ କେତେକ କବିତାରେ ଗୋଟିଏ ଶବ୍ଦର ପୁନଃପୁନଃ ପ୍ରୟୋଗ ଶ୍ରୁତିକଟୁ ହେବା ସଙ୍ଗେ ସଙ୍ଗେ କବିତାର ସୌନ୍ଦର୍ଯ୍ୟ ନଷ୍ଟ କରୁଥିବା ପରି ମନେ ହୁଏ । ସତର ଧାଡ଼ିର କବିତା (ବଜ୍ରଛଅଣ)ରେ ଅକ୍ଷୌଣି ଶବ୍ଦର ନଥର ପ୍ରୟୋଗ କବିତାର କଳାତ୍ମକ ଅଭିବ୍ୟକ୍ତିକୁ ନଷ୍ଟ କରୁଛି । ସେହିପରି ଦ୍ରୋଣ ଶବ୍ଦଟିର ପ୍ରୟୋଗ (ଏକଲବ୍ୟ) କବିତାରେ ପ୍ରାୟ ଏଗାର ଥର ହୋଇଛି । ଏହା ସତ୍ତ୍ୱେ 'ଉପଭାରତ' କବି ସୌରୀନ୍ଦ୍ର ବାରିକ୍ଙ୍କର ଏକ କାବ୍ୟିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଉପଭାରତ'ର ଚରିତ୍ର ଗୁଡ଼ିକ ପ୍ରତ୍ୟକ୍ଷ ଭାବରେ କଥୋପକଥନ ଶୈଳୀରେମଗ୍ନ ଥିଲା ପରି ମନେ ହୁଅନ୍ତି । ଚରିତ୍ରମାନଙ୍କ ମୁହଁରେ ଯେଉଁ ଭାଷା ଫୁଟାଇଛନ୍ତି କବି ତାହା ଆମ ସାଧାରଣ ମଣିଷରନିତିଦିନିଆ ଯାତ୍ରାରଭାଷା । ସେହି ସାଧାରଣଭାଷାକୁ ସଯତ୍ନରେ ସଂଗ୍ରହ କରି ଅସାଧାରଣ ଭାବରେ ଫୁଟାଇବାରେ କବି ସୌରୀନ୍ଦ୍ର ବାରିକ ଏକ ସଫଳ ଚିତ୍ରକର ତାହା ସ୍ୱୀକାର କରିବାକୁ ହେବ ।

## (ଗ) ଆକାଶ ପଲରି ନିବିଡ଼ (୧୯୮୫)

'ଆକାଶ ପରି ନିବିଡ଼'କବିତା ସଂକଳନ ଓଡ଼ିଶା ବୁକ୍ ଷ୍ଟୋର ଦ୍ୱାରା ପ୍ରକାଶିତ ତୃତୀୟ କାବ୍ୟଗ୍ରନ୍ଥ । କବିଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ପ୍ରତିଭାଦୀପ୍ତ ପ୍ରଜ୍ଞାର ପରିଚୟ ବହନ

କରେ କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ । କବିର ପରିଚୟ  ନିଜେ କବି, ଯେମିତି ଈଶ୍ୱରଙ୍କ ପରିଚୟ ନିଜେ ଈଶ୍ୱର । କବି ଓ କବିତା ଏକ ଅବିଚ୍ଛିନ୍ନ ହୋଇଥିବାରୁକବିର ପରଚୟତା'ର କବିତା ।

'ଆକାଶ ପରି ନିବିଡ଼' କାବ୍ୟଗ୍ରନ୍ଥ ପାଇଁ ସୌରୀନ୍ଦ୍ର ବାରିକ ବେଶ୍ ସ୍ୱନାମଧନ୍ୟ । 'ସାମାନ୍ୟ କଥନ' 'ଉପଭାରତ' କବିତା ସଂକଳନର କବି ଭାବରେ କବି ଯେତିକି ସମ୍ମାନ ଓ ପାଠକୀୟ ଶ୍ରଦ୍ଧା । ଲାଭ କରିଛନ୍ତି ତାହାଠାରୁ ଅନେକ ସମ୍ମାନ ଯଶର ଜୟମାଲ୍ୟ ବରଣ କରିଛନ୍ତି 'ଆକାଶ ପରି ନିବିଡ଼' କବିତା ସଂକଳନ ପାଇଁ । 'ଆକାଶ ପରି ନିବିଡ଼' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ କବିତା ସଂକଳନ । 'ଆକାଶ ପରି ନିବିଡ଼' କବିତା ସଂକଳନଟିକୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଭାବରେ ନଭାବି ଯଦି କେବଳ ଗୋଟିଏ କବିତାପୁସ୍ତକ ଭାବରେ ପାଠକୀୟ ରସ ଆସ୍ୱାଦନ କରାଯାଇ ପାରେ, ଏହା ଅଧିକ ଯଥାର୍ଥ ହେବ ।

କବି ସୌରୀନ୍ଦ୍ର ବାରିକଙ୍କ କବିତାର ସଫଳତା ପଛରେ ଅପୂର୍ବ ଭାଷା ବିନ୍ୟାସର ଭୂମିକା ଅନସ୍ୱୀକାର୍ଯ୍ୟ । ସରଳ ସାଧାରଣ ଶବ୍ଦ ମାନଙ୍କରେ ନିଜର କବି ପ୍ରତିଭାବଳରେ ବିଶେଷ ବ୍ୟଞ୍ଜନା ବ୍ୟକ୍ତ କରାଇବା ହିଁ ଉତ୍ତମ କବି ମାନଙ୍କର କାର୍ଯ୍ୟ । ଅତିରଞ୍ଜନତା ଏକ କାବ୍ୟ ଦୋଷ । ଅତଏବ ନିଜର ବକ୍ତବ୍ୟକୁ ପରିମିତ ଶବ୍ଦ ସମୂହରେ ପ୍ରକାଶ କରିବା ହିଁ କବି ଚାତୁରୀ । କବି ସୌରୀନ୍ଦ୍ରଙ୍କ କବିତା କ୍ଷେତ୍ରରେ ଏହି ସତ୍ୟତା ବିଶେଷ ଭାବରେ ଉପଲବ୍ଧ କରିହୁଏ ।୧୦।

କ୍ଷୁଦ୍ର ବଟବୀଜ ମଧ୍ୟରେ ମହାଦ୍ରୁମ ଲୁକ୍‌କାୟିତ ଥିବାପରି କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଛତ୍ରେ ଛତ୍ରେ ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗାର୍ଥର ଆଧିକ୍ୟ ପରିଲକ୍ଷିତ ହୁଏ । କବି 'ଅନ୍ୱେଷଣ' କବିତାରେ ଯଥାର୍ଥରେ ପ୍ରକାଶ କରିଛନ୍ତି:-

ଆଉ କିଛି ବାକି ନାହିଁ । ଏମିତିକି ପଚାରୁଛି ପ୍ରତି ଝରିଲା ପତ୍ର
ଆସୁଥିବା କିଶଳୟ ପୁଣି ଉଡୁଥିବା ହଳରଂଗୀ ପତଙ୍ଗ ମାନଙ୍କୁ
ମୋ ପ୍ରଶ୍ନ ଶୁଣିସବୁ ହସିଛନ୍ତି । କହିଛନ୍ତି ଆରେ ବୋକା
ତାକୁ ଖାଲି ସମସ୍ତେ ଖୋଜନ୍ତି । ତାକୁ ପାଇବୁ ଗୋଟେ କ'ଣ
ଏହି ଖୋଜିବାଟା ହିଁ ସିଏ । ସକାଳେବତୀ ଖୁଣ୍ଟ ତଳେ ପଡିଥିବା ଝଡ଼ିପୋକ
ରାତିସାରା ତାକୁ ଖୋଜିଥାଏ ନା ପାଇଥାଏ ।

'ଆକାଶ ପରି ନିବିଡ଼' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକର ଭାଷା ସ୍ୱଚ୍ଛ, ଭାବ ନିୟନ୍ତିତ ଓ ଆତ୍ମା ତେଜୋଦୀପ୍ତ । କବିତା ଗୁଡ଼ିକ ପାଠକଲେ କିନ୍ତୁ ଆମକୁ କବିଙ୍କ ଭାବ ଓ ଅବବୋଧ ସହିତତାଳ ଦେଇ କେଇପାଦ ପଛକୁ ଘୁଞ୍ଚି ଯିବାକୁ ପଡ଼େ । କାରଣ କବିତାସଂକଳନରେ ସ୍ଥାନିତ କବିତା ଗୁଡ଼ିକରେ ନିବିଡ଼ତା ଥାଇ ମଧ୍ୟ ଅଙ୍ଗ ଆତ୍ମାରେ ତରୁଣର କୋମଳ ସ୍ପନ୍ଦନ ହିଁ ଅଧିକ ମାତ୍ରାରେ ଲକ୍ଷ୍ୟ କରିହୁଏ । ଯଦିଓ

ଅବବୋଧ ସ୍ତରରେ ବେଶ୍ କେତୋଟି ଛୋଟ କବିତାରେ ପ୍ରେମ ଭାବର ଆତିଶଯ୍ୟ ଓ ତତ୍ ସମ୍ପର୍କିତ ବିରହ, ବିଚ୍ଛେଦ, ବିଷାଦ, ଭାବ ମିଳନ ପାଇଁ ବ୍ୟାକୁଳତା ଓ ସମୟର ଭ୍ରୂକୁଟୀକୁ ଅନିଚ୍ଛାସତ୍ତ୍ୱେ ମାନିନେବାର ଭଙ୍ଗୀ ଆମେ ଆବିଷ୍କାର କରିଥାଉଁ । ସମଗ୍ର ସଂକଳନର ସ୍ୱର ଜଣେ ମଧ୍ୟବିତ୍ତର ଜୀବନ ଜିଜ୍ଞାସାକୁ କେନ୍ଦ୍ର କରି ଗଢ଼ିଉଠିଛି । ଏ ଏମିତି ଏକ ଜୀବନ ଯେଉଁଠି ଘଟଣା ଘଟିଯାଏ ଅନିବାର୍ଯ୍ୟ ଭାବେ । ବୟସ ଆସେ ବଢ଼େ । ଆଖି ଖୋଲିଲେ ଦେଖି ହୁଏ ଦୃଶ୍ୟପଟ୍ଟ, ଆଘ୍ରାଣ କରିହୁଏ ଫୁଲର ସୁରଭି, ଜହ୍ନରାତିର ମାଦକତା, ସମୁଦ୍ରର ଜୁଆର, କଳକଳ ନଈର ସ୍ୱର ଶୁଣି ମୁଗ୍ଧ-ବିସ୍ମିତ ହେବାର ମୁହୂର୍ତ୍ତ ବି କେବେ କେବେ ଆସେ । କେବେ ଋତୁ, ରାତି, ଅନ୍ଧାର, ଆଲୁଅ ସବୁରି ଭିତରେ ଉପସ୍ଥିତି ସେହି ଜଣଙ୍କର । ଜଣେ 'ସେ'ର ବା ଜଣେ ସମ୍ବୋଧିତ 'ତୁମେ'ର ସତ୍ତାଟି ହିଁ କବି ପ୍ରାଣକୁ ଆବୋରି ବସିଥାଏ । ଅହରହ ତାରି ପାଇଁ ଶତେକ ପଂକ୍ତିରଆବେଦନ ହୋଇ ଉଠେ ଉଷ୍ମ ଓ କୋମଳ । ସେଇଥି ପାଇଁ କାବ୍ୟ ପୁରୁଷର ତାରୁଣ୍ୟ ଓ ମଧ୍ୟବିତ୍ତର ସ୍ୱାଭାବିକତାମୟ ଦୃଷ୍ଟି ଭିତରେ କବିତାର ଚଳଚଞ୍ଚଳତା ଆମକୁ ସ୍ପନ୍ଦିତ କରେ ।୧୧।

ଅଧିକାଂଶ କବିତାର ଅନୁଭୂତିର କାଳ ଅତୀବ ବା ନିକଟ ଅତୀତ । ଘଟଣା ଘଟିଯାଇଛି । ଜଣେ କିଏ ବିଦାୟ ନେଇଛି । ଏପରି ବିଦାୟରେ ଅନ୍ୟ ଜଣେ ଏକାକୀତ୍ୱକୁ ବରି ନେଇଛି । ଏ ପ୍ରକାର କାବ୍ୟସ୍ୱର ଯେଉଁଥିରେ ପ୍ରେମ ଆବେଦନ, ପ୍ରେମରେ ଆପାତ ସଫଳତା, ସୌରୀନ୍ଦ୍ରଙ୍କ କବିତାର ବିଶେଷତ୍ୱ । ପ୍ରକାଶ ଭଙ୍ଗୀ ଖୁବ୍‌ସାଧା ସିଧା । ଅଳଂକରଣ ପାଇଁ ଚେଷ୍ଟା ନାହିଁ ଓ ନଥିବା ବି ସ୍ୱାଭାବିକ୍ । କାରଣ ପ୍ରତିଟି କବିତା ମୁହୂର୍ତ୍ତକୁ ନେଇ ଅନ୍ୟ ଅର୍ଥରେ କହିଲେ 'ଆକାଶ ପରି ନିବିଡ଼' କବିତା ସଂକଳନର କବିତାଗୁଡ଼ିକ ମୁହୂର୍ତ୍ତ ସର୍ବସ୍ୱ ଉପଲବ୍‌ଧିର ସାର୍ଥକ ପରିପ୍ରକାଶ । ଗୋଟିଏ ମୁହୂର୍ତ୍ତର ଘଟଣାକୁ ପ୍ରକାଶ କରିବାପାଇଁ ଚିତ୍ରକଳ୍ପଟିଏ ଯଥେଷ୍ଟ ।ତା' ଛଡା ଯା ଉପରେ ନିର୍ଭର କରେକାବ୍ୟାଂଶର ଜୋର ତା' ହେଉଛି ପ୍ରକାଶଭଙ୍ଗୀର ନିବିଡ଼ତା । ଏ ନିବିଡ଼ତା ବ୍ୟାପ୍ତ, ଗଭୀର ଭାବରେ ନୀଳ; କାରଣ ଏହା 'ଆକାଶ ପରି ନିବିଡ଼' । ଏଥିରେ ଗୋଟିଏ ଗୋଟିଏ କରି ଅନେକ ସମାନ ଓ ଅସମାନ ଧର୍ମୀ ଅନୁଭୂତିର ପ୍ରତିଛବି । ଅଥଚ ଏକ ସ୍ୱଭାବ ସୁଲଭ ଆକାଶୀୟ ନୀରବତା ଆକାଶୀୟ ଉଦାସୀନତା ଯା ମୂଳରେ ରହିଛି ଏକ ନିରାସକ୍ତ ଦୃଷ୍ଟି ଓ ଅନେକ ସମୟରେ ଘଟଣା ସବୁ ଘଟିଯିବା ପରେ କାବ୍ୟ ପୁରୁଷର ମୂଳ ଉପଲବ୍‌ଧି କବିତାକୁ ରସୋତ୍ତୀର୍ଣ୍ଣ କରିଛି । 'ଆକାଶ ପରିନିବିଡ଼' କବିତା ସଂକଳନରେ କବି ସୌରୀନ୍ଦ୍ର ବାରିକ 'କେତେ କେତେକଥା ଦେଇ' କବିତାରେ ପ୍ରକାଶ କରିଛନ୍ତି:-

ମୁଁ ରହିଗଲି
ଗୋଧୂଳି ହୋଇ, ଚହଲା ପାଣି ହୋଇ
ନଥିବାର ଥିବା ଥିବା ଛାଇ ଭିତରେ

- - - - - - - - - -

କେତେ କେତେ ଜଁଆ ଦେଇ

ଗୋଟେ ବି କଥା ରଖିଲନି ।୧୨।

କବି ସୌରୀନ୍ଦ୍ର ବାରିକଙ୍କ ନବିତାର ମୁଖ୍ୟ ବିଭବ ଭାଷା ଓ ଭାବର ସରଳତା ଓ ସ୍ପଷ୍ଟତା ।

କ୍ଲିଷ୍ଟତାଠୁ ସେ ଚିରକାଳ ଦୂରରେ ଅନୁଭୂତିର ଗଭୀରତାକୁ ଚିତ୍ରାୟିତ କରନ୍ତି ପ୍ରଚଳିତ ଦୈନନ୍ଦିନ ସାମାଜିକ ମଣିଷର ଭାଷାରେ । 'ଆକାଶ ପରି ନିବିଡ଼' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକର ସଫଳତା ପଛରେ କବିଙ୍କର ପୂର୍ବୋକ୍ତ ରହସ୍ୟବାଦୀ ଚିନ୍ତାଧାରା ହିଁ ଦାୟୀ । ଯୁଗ ଯୁଗର ଶ୍ରେଷ୍ଠ ଏ ସବୁ କବିତାର ପ୍ରତ୍ୟେକ ପଂକ୍ତିରେ ହୋଇଛି ପ୍ରତିଫଳିତ । ଯଦିଓ କବିତା ସଂକଳନରେ କେତେକ ପ୍ରେମ କବିତା ହିଁ ପାଠକର ଦୃଷ୍ଟିକୁ ଏଡାଇ ପାରେନି, ତଥାପି ସେ ସବୁ ମଧ୍ୟ ଏପରି ଚତୁରତାର ସହ ଏବଂ ଅପୂର୍ବ ଶୈଳୀରେ ଲିଖିତ ଯେ ବେଳେବେଳେ ପାଠକ ନାରୀ କବିକୁନ୍ତଳାକୁମାରୀଙ୍କ ପରି ଦ୍ୱନ୍ଦରେ ପଡ଼ିଯାଏ; ବାସ୍ତବରେ ଏସବୁ କେଉଁ ଧରଣର କବିତା । କିଏ ଏ କବିତାର କେନ୍ଦ୍ରବିନ୍ଦୁ ! ନାରୀ ନା ଈଶ୍ୱର । ମାତ୍ର ସେହି ସବୁ ପ୍ରେମ କବିତାମାନଙ୍କର ଯଥାର୍ଥତା ଏଇଥିପାଇଁ ଯେ କବିଏହି ସଂସାରୀକତା ମଧ୍ୟରେ ହିଁ ଅନ୍ୱେଷଣ କରିଛନ୍ତି; ଦେହ ମଧ୍ୟରେ ଦେହାତୀତକୁ । କବି ଅନୁଭବ କରିଛନ୍ତି ଏହା ହେଉଛି ଭାରତୀୟ ଧର୍ମ ଦର୍ଶନର ଆଦର୍ଶ ।

## (ପ) ଗୁଣୁ ଗୁଣୁ ଚିତ୍ରପଟ (୧୯୮୭)

'ଗୁଣୁ ଗୁଣୁ ଚିତ୍ରପଟ' କବି ସୌରୀନ୍ଦ୍ର ବାରିକ୍‌ଙ୍କ ଚତୁର୍ଥ କବିତାସଂକଳନ । ଗ୍ରନ୍ଥମନ୍ଦିର ପ୍ରକାଶନ ଦ୍ୱାରା ପ୍ରକାଶିତ 'ଗୁଣୁ ଗୁଣୁ ଚିତ୍ରପଟ' ଏକଚାଳିଶ ଗୋଟି କବତାକୁନେଇ ଋଦ୍ଧିମନ୍ତ । କବି ସୌରୀନ୍ଦ୍ର ବାରିକ ଜୀବନ ଓ ଜଗତ ପ୍ରତି ବ୍ୟକ୍ତିଗତ ଅନୁଭୂତିକୁ ସରସ ସୁନ୍ଦର ଭାବରେ କବିତାରେ ପ୍ରକାଶ କରିଛନ୍ତି । ପରିବେଶ ଓ ପରିସ୍ଥିତିର ଦାସ ମଣିଷ । ମୁହୂର୍ତ୍ତ ମୁହୂର୍ତ୍ତ ପରିବର୍ତ୍ତନ ତା'ର ଦୃଷ୍ଟିଭଙ୍ଗୀରେ । ଜୀବନର ଜବକାଚରେ ବର୍ତ୍ତମାନକୁ ଦର୍ଶନ କରେ କବି । ଅତୀତର ସ୍ମୃତି ଓ ଭବିଷ୍ୟତର କଳ୍ପନା କବିର ଲେଖନୀକୁ ଚଳଚଞ୍ଚଳ କରେ । ଅନେକ ଘଟଣା ଘଟିଯାଏ । କବି ଦୃଷ୍ଟିରେ, ସବୁ ଘଟଣା କବି ହୃଦୟକୁ ସ୍ପର୍ଶ କରେ ନାହିଁ; ଯେଉଁ ଘଟଣା କବିର ଚିତ୍ତରେ ଚାଞ୍ଚଲ୍ୟ ସୃଷ୍ଟି କରେ ତାହା ହୁଏ କବିତା ।

'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ ଜୀବନର ଭିନ୍ନ ଭିନ୍ନ ମୁହୂର୍ତ୍ତର ସ୍ପନ୍ଦନ, ବଞ୍ଚିବାର ସମସ୍ତ ଆନନ୍ଦ, ସମସ୍ତ ଆବେଗ ଏବଂ ବିଷାଦକୁ ତୋଳି ଧରିବାର ଏକ ନିବିଡ଼ ପ୍ରଚେଷ୍ଟା । ତାଙ୍କର ସମସାମୟିକ କବି ମାନଙ୍କପରି ସେ ମଧ୍ୟ ନିଜର କବିତାରେ ଏକ ଅବକ୍ଷୟମାନ ସଭ୍ୟତାର ଯନ୍ତ୍ରଣାକୁ ରୂପ ଦେଇଛନ୍ତି; ମାତ୍ର

ନିଜକୁ ସାଂପ୍ରତିକତା ଭିତରେ ସୀମିତ ରଖି ନାହାନ୍ତି । ଅନ୍ୟ ଆଧୁନିକ କବି ମାନଙ୍କଠାରୁ ସେ ଏହି କ୍ଷେତ୍ରରେ ବିଶେଷ ଭାବରେ ପୃଥକ । ତାଙ୍କର କବିତାର ଚରିତ୍ର ଗୁଡ଼ିକ ସାଧାରଣ ମଣିଷ, ତା'ର ସବୁ ସାଧାରଣ ସ୍ୱପ୍ନ ଓ ଯନ୍ତ୍ରଣାର ନିରୋଳା ପ୍ରତିଫଳନ ଅଟେ । ମାତ୍ର ଏହି ସାଧାରଣ ଭିତରେ ପ୍ରଚ୍ଛନ ଭାବରେ ନିହିତ ଅଛି ଜୀବନର ଚିରନ୍ତନ ମୂଲ୍ୟବୋଧ, ଯାହାକୁ କୌଣସି ସମୟର ସଂକୀର୍ଣ୍ଣ ଗଣ୍ଡି ଭିତରେ ଆବଦ୍ଧ କରାଯାଇ ନପାରେ, ଯାହା ପ୍ରାଣରେ ଚମକ ସୃଷ୍ଟ କରେ ଏବଂ ବଞ୍ଚିବାର ସାବ୍ୟସ୍ତ କରାଏ । ତାଙ୍କର ସମସ୍ତ କବିତା ବଞ୍ଚିବାର ବିଭିନ୍ନ ଦିଗକୁ ବିଶ୍ଳେଷଣ କରେ ଏବଂ ଏହି ବିଶ୍ଳେଷଣ କରିବା ଭିତରେ ଜୀବନର ଚରମ ସତ୍ୟଟି ଉଦ୍‌ଭାସିତ ହୋଇଉଠେ । ଜୀବନର ଅକଳନ ଶୂନ୍ୟତା, ଏକାକୀତ୍ୱବୋଧ ଭିତରେ, ଏହି ତେଲ ଲୁଣର ପରିବାର ଭିତରେ ଯେଉଁଠି ଟିକିଏ ନିରୀହ ଆନନ୍ଦ ବଞ୍ଚିବାକୁ ଯଥାର୍ଥ କରିଦିଏ ।୧୩।

କବିତାଗୁଡ଼ିକ ଜୀବନର ଭିନ୍ନ ଭିନ୍ନ ମୁହୂର୍ତ୍ତର ଭିନ୍ନ ଭିନ୍ନ ଭାବ ପ୍ରବଣ ସ୍ଥିତିର ନଗ୍ନ ପରିପ୍ରକାଶ । ଜୀବନର ଦୁଃଖ, ହତାଶ ବୋଧ, ଯାହାକୁ ସେ କବିତାରେ ରୂପ ଦେଇଛନ୍ତି ତାହା କେବଳ ବିଂଶ ଶତାବ୍ଦୀର ମନୁଷ୍ୟର ନିଜସ୍ୱ ନୁହେଁ; ଏହା ପ୍ରତ୍ୟେକ ସ୍ଥାନରେ ପ୍ରତ୍ୟେକ ମନୁଷ୍ୟର ।

'ଗୁଣୁ ଗୁଣୁ ଚିତ୍ରପଟ'ରେ ପ୍ରକାଶ ପାଇଥିବା କବିତା ଗୁଡ଼ିକ ମୋତେ ଘେରି ରହିଥିବା ବାସ୍ତବତାର ଆତ୍ମିକ ସୂଚନା, ଜୀବନର ଟୁକୁରା ଗୁଡ଼ିକର ଅଙ୍ଗେନିଭା ପ୍ରକାଶ । ଏହି ଜୀବନ ଟୁକୁରାଗୁଡ଼ିକ କେବଳ ମୋର ପରିବେଶ, ଘେରି ରହିଥିବା ରହସ୍ୟମୟ ପୃଥିବୀର ଗୁଣୁ ଗୁଣୁ ଅଂଶ ବିଶେଷ ନୁହଁନ୍ତି; ସେମାନେ ମୋ ଚେତନାର ଶିହରିତ ସ୍ୱରୂପ ମଧ୍ୟ । ରୁକ୍ଷ ବାସ୍ତବତା ଭେଦି ମୋ ଚେତନାକୁ ଆଲୋଡ଼ିତ କରନ୍ତି ଏବଂ ଶେଷରେମୋରି ବିଭିନ୍ନ ସତ୍ତାକୁ ମୋ ଆଗରେ କ୍ଷଣକ ପାଇଁ ଝଲସାଇ ଦିଅନ୍ତି । କେତେ ଭାବରେ ଏ ଜୀବନ ଝଲି ଉଠେ ପୁଣିତା' ଭିତରୁ ସତ୍ୟର ରହସ୍ୟ ବି ଉକୁଟି ଉଠେ ଗୁଣୁ ଗୁଣେଇ ଉଠେ । ମୋତେ ଘେରି ରହିଥିବା ବହୁରୂପି ଚିତ୍ରପଟର ଏହି ଗୁଣୁ ଗୁଣୁକୁ ଧରି ରଖିବାର ପ୍ରଚେଷ୍ଟା । ମୋର ଏ କବିତା ତେଣୁ ଏହା ଗୁଣୁ ଗୁଣୁ ବିଫଳତା ।୧୪।

'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକ ଜୀବନର ଜଟିଳ ଭଗ୍ନାଂଶ ।

## (ଙ) ଲୁହ ଠୁ ବି ଅନ୍ତରଂଗ (୧୯୮୯)

'ଲୁହ ଠୁ ବି ଅନ୍ତରଂଗ' କବି ସୌରୀନ୍ଦ୍ର ବାରିକ୍‌ଙ୍କ ପଞ୍ଚମ କବିତା ସଂକଳନ । 'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ ନିଜସ୍ୱ ଭାବାବେଗରେ ଅଧିକ ସ୍ୱଷ୍ଟ । ଅନୁଭବ ଅତ୍ୟନ୍ତ ସତ୍ୟଶୀଳ ଏବଂ ସ୍ନେପ୍ରବଣ ମାନସିକତାର ଏକ ଜ୍ୱଳନ୍ତ ଆଲେଖ୍ୟ । ସେଇ ଦୈନନ୍ଦିନ ଜୀବନର ଛୋଟ ଛୋଟ ଘଟଣା, ତାକୁ ଆବେଗମୟ କରି ନାଟକୀୟ ଭାବେ କଥନ ଶୈଳୀରେ ପ୍ରକାଶ କରିବାରେ କବିଙ୍କ ପାରଦର୍ଶିତା ଅନସ୍ୱୀକାର୍ଯ୍ୟ ।

ସେହି ସରଳତା ମାତ୍ର ବୁଝାଇଦିଏ ଜୀବନର ସବୁ ଜଟିଳତା। ମୁଗ୍ଧ ଦୃଷ୍ଟି ନେଇ ଜଗତକୁ ଦେଖିବାରେ ତାଙ୍କର ଆନନ୍ଦ ଓ ବିସ୍ମୟକର ଭାବ। ଅନେକ ସ୍ମୃତି ବିସ୍ମୃତିକୁ ନେଇ ଅଧିକାଂଶ କବିତାର ଭାବ ଜଗତ। ପ୍ରକୃତି ପ୍ରିୟତା ମଧ୍ୟ ଖୁବ୍ ସ୍ପଷ୍ଟ ଯେମିତି ନିରବତା ହିଁ କବିତା ଗୁଡ଼ିକର ମୁଖ୍ୟ ସ୍ୱର।

'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକର ବର୍ତ୍ତମାନିକତା ଓ ଅତୀତ ପ୍ରବଣତା ବେଶ୍ ମର୍ମିଳ। ସେଦିନର ମୋହରେ ମୁହୂର୍ତ୍ତରେ ନିଃଶେଷ ହୋଇଯାଇଛନ୍ତି ସିନା ସଂପ୍ରତି ବିସ୍ମରି ନାହାନ୍ତି। ସ୍ମୃତି, ସ୍ଥିତି ଓ ସ୍ୱପ୍ନ ସବୁଠି ଜୀବନ। ସବୁଠି କବିତା। କବି ସୌରୀନ୍ଦ୍ର ବାରିକ୍ଙ୍କ ଲୁହଠୁ ବି ଅନ୍ତରଂଗ କବିତା ସଂକଳନରେ ସ୍ଥାନିତ 'କଥାଟିଏ କହିବି ରଖିବ' ପରି କବିତାରେ ବର୍ତ୍ତମାନିକତାର ପୃଷ୍ଠଭୂମିରେ ସ୍ମୃତିଚାରଣା, ସଂପ୍ରତିକୁ ଭୁଲି ଅତୀତରେ ନିଃଶେଷ ହେବା ନୁହେଁ; ଅତୀତର ସମଗ୍ର ମାଧୁର୍ଯ୍ୟକୁ ସମୁଦ୍‌ଭାସିତ ରଖି ସଂପ୍ରତିକୁ ଶ୍ରଦ୍ଧାର ସହ ବଞ୍ଚିବା ସୂଚାଉଛି। ସେଲଫ୍‌ରେ ଧୂଳି ଧୂସର ବହି ପରି ସାଂପ୍ରତିକତାରେ ଅତିଷ୍ଠ ଏକ କ୍ଲାନ୍ତ ମାନସିକତା ଓ ପାଖା ପାଖି ଗୋଟାଏ ରିକ୍ସାରେ ବସିଯିବା ଏକ ନିବିଡ଼ ସ୍ନେହ ପ୍ରବଣ ମୁକ୍ତି ପ୍ରୟାସି ମାନସିକତାକୁ ପ୍ରତିପାଦନ କରୁଛି।

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ମୁକ୍ତିର ମନ୍ତ୍ର ଉଚ୍ଚାରଣ କରୁଥିବା ସୌରୀନ୍ଦ୍ର ତଥାକଥିତ ଆଧୁନିକ ଜୟଯାତ୍ରା ଭିତରେ ଏକ ବ୍ୟତିକ୍ରମ। ସମସାମୟିକ ଓଡ଼ିଆ କବିତା ପାଶ୍ଚାତ୍ୟ ଶୈଳୀ ଶିଳ୍ପର ପ୍ରୟୋଗ ପରୀକ୍ଷାରେ ଆକ୍ରାନ୍ତ। ସବୁଠି ବାଦ କୈନ୍ଦ୍ରିକ କବିତାର ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା। ଗଭୀର ଦର୍ଶନର ତତ୍ତ୍ୱ ପ୍ରଖ୍ୟାପନରେ କବିତା ରସଶୂନ୍ୟ ବୁଦ୍ଧିର ବିଳାସମୟ କ୍ରୀଡା କ୍ଷେତ୍ର। ପ୍ରଜ୍ଞା ପ୍ରକରଣର୍ ଉଲ୍ଲାସମୟ ପ୍ରହେଳିକା ଭିତରେ ହୃଦୟର ସରଳ ସୌକୁମାର୍ଯ୍ୟ ସଂଘାତ ସଂଗ୍ରସ୍ତ। ଏକ ପରିବର୍ତ୍ତିତ ଓ ପରିଣତ ଶୈଳୀରେ ଲେଖା ବ୍ୟକ୍ତିଗତ ପ୍ରେମ ସଂପର୍କ ଓ ନିଜସ୍ୱ କାବ୍ୟାନୁଭବର ସତ୍ୟଶୀଳ ସ୍ୱୀକାରୋକ୍ତି କବି ସୌରୀନ୍ଦ୍ର ବାରିକ୍ଙ୍କ କବିତା।୧୫।

ସୌରୀନ୍ଦ୍ର ବାରିକ୍ଙ୍କ କବିତାର ଆଲୋଚନା ପ୍ରସଙ୍ଗରେ Herbert Readଙ୍କୁ ସ୍ମରଣ ରଖି ପ୍ରଫେସର ବିଧୂଭୂଷଣ ଦାସ ଯେଉଁ ବକ୍ତବ୍ୟ ପ୍ରଦାନ କରିଛନ୍ତି ତାହା ଏଠାରେ ସ୍ମର୍ତବ୍ୟ। The Volume is Bariks 'true voice of feeling' the voice of a nature, sensibility, envisioning reality, life, love change and death, unperturbed।୧୬।

ଆପଣା ଅନୁଭବ ପ୍ରତି ସତ୍ୟଶୀଳ ରହି ଖୁବ୍ ବ୍ୟକ୍ତିଗତ ଏକ Confessional ଶୈଳୀରେ ନିଜ ଅଭିବ୍ୟକ୍ତି ବାଢ଼ିବା ଏଠାରେ ମୁଖ୍ୟ। ମାର୍କିନ Confessional କବିତାର ପ୍ରେରଣା କବିଙ୍କୁ ପୁଷ୍ଟ କରିଛି। କବି ସୌରୀନ୍ଦ୍ରଙ୍କ ପାଇଁ ପ୍ରକୃତି ସବୁବେଳେ ଭାବ ସଂପର୍କ ରକ୍ଷାକରେ। ପ୍ରକୃତି ସହ ଭଲପାଇବାର ନିବିଡ଼ ସଂପର୍କ ସର୍ବଦାସ୍ୱୀକୃତ। ଏଣେ

ପତ୍ନୀଙ୍କର ଅଳସ ଆଖି, ତେଣେ ଗୋଲାପର ସଦ୍ୟ ସୁରଭି । କାହାକୁ ନିଜର କରିବେ ? ତାଙ୍କ ପାଇଁ ତ ସବୁ ଏକାକାର - ମୁଁ ପରା ଏବେ କାକର ଭିଜା ଗୋଲାପ ଗଛଟେ / କଢ଼ ଆସିବାର ପୁଲକରେ କରତି ଯାଉଛି । ପତ୍ନୀ ଓ ପ୍ରକୃତି । ଯେମିତି ପ୍ରକୃତିର ସମମସ୍ତ ସୁରଭି ପତ୍ନୀଙ୍କ ପାଇଁ । ପ୍ରକୃତିର ସମଗ୍ର ସୁଷମା ନେଇ ପତ୍ନୀ ପ୍ରସ୍ଫୁଟିତ । ହେଲେ ରୂପ ନୁହେଁ ଭାବମୁଖ୍ୟ । ତାଙ୍କ ପାଇଁ ଆତ୍ମାର ସୌନ୍ଦର୍ଯ୍ୟ ବଡ଼କଥା । ପତ୍ନୀମୁଖ୍ୟ ପ୍ରକୃତି ଭାବଟିକୁ ଉଦ୍ରେକ କରୁଛି ଯାହା ତାଙ୍କୁ ନେଇ ହିଁ ପ୍ରକୃତି ହସିଉଠିଛି ।

ପ୍ରେମ ପ୍ରଣୟର ପଶାଖେଳ ଭିତରେ ଜୀବନ କେତେବେଳେ ଉବୁଟୁବୁ ତ ଆଉ କେତେବେଳେ ମିଳନ ବିଛେଦରେ ହା ହୁତାଶମୟ । କବି ସୌରୀନ୍ଦ୍ର 'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନରେ ଜୀବନକୁ ଯେପରି ଭାବରେ ଅନୁଭବିଛନ୍ତି ଠିକ୍ ସେପରି ଭାବରେ ପ୍ରକାଶ କରିଛନ୍ତି ।

### (ଚ) 'ଅନୁଭାରତ' (୧୯୮୯)

'ଅନୁଭାରତ' ମହାଭାରତର ଚରିତ୍ର ଓ ଘଟଣା ଉପରେ ଆଧାରିତ କବି ସୌରୀନ୍ଦ୍ର ବାରିକଙ୍କ ଷଷ୍ଠ କବିତା ସଂକଳନ । 'ଉପଭାରତ' ୧୯୮୨ ମସିହାରେ ପାଠକମହଲରେ ବେଶ୍ ଆଦୃତ ହୋଇଥିଲା । କବି ସୌରୀନ୍ଦ୍ର ବାରିକଙ୍କୁ ମହାଭାରତ ଅଭିଭୂତ କରିଛି । ଖାଲି ବିପୁଳତା କହିଲେ ଠିକ୍ ହେବନାହିଁ ଜୀବନାନୁଭୂତିର ଜଟିଳତା, ସୂକ୍ଷ୍ମତା ଓ ଗଭୀରତା ମହାଭାରତରୁ ଯେମିତି କବି ଲାଭ କରିଛନ୍ତି, ଅନ୍ୟ କୌଣସି ଗ୍ରନ୍ଥରୁ ପାଇ ନାହାନ୍ତି ବୋଲି ଦୃଢ଼ ସ୍ୱରରେ ପ୍ରକାଶ କରିଛନ୍ତି । କବି ସୌରୀନ୍ଦ୍ର ବାରିକ୍‌ଙ୍କ ନିକଟରେ ମହାଭାରତ ଅଭିଜ୍ଞତାର ଉତ୍ସ । ପ୍ରଶ୍ନର ଭଣ୍ଡାର । ଜୀବନ ଏବଂ ଜୀବନକୁ ବଞ୍ଚାଇବାର ବୈଚିତ୍ର୍ୟର ଉତ୍ସ ମହାଭାରତରେ ବର୍ଣ୍ଣିତ ବିଭିନ୍ନ ଚରିତ୍ର ବିଭିନ୍ନ ଘଟଣା, ଘଟଣା ପ୍ରତି ସେମାନଙ୍କର ପ୍ରତିକ୍ରିୟା ଏବଂ ସର୍ବୋପରି ସେମାନଙ୍କର ଜୀବନ ଓ ଦୃଷ୍ଟିକୋଣରେ ଫୁଟି ଉଠିଥିବା ମୂଲ୍ୟବୋଧ କବିଙ୍କ ଚେତନାକୁ କଳ୍ପନାକୁ ଆଚ୍ଛାଦିତ କରିରଖିଛି । ଆଜିର ମନ ନେଇ କବି ସେମାନଙ୍କୁ ଯେତେ ବୁଝିବାକୁ ଚେଷ୍ଟାକରିଛନ୍ତି; ଜୀବନ ତାଙ୍କପାଖରେ ସେତେ ରହସ୍ୟମୟ ହୋଇଉଠିଛି । ତଥାପି ମହାଭାରତ କବି ସୌରୀନ୍ଦ୍ର ବାରିକ୍‌ଙ୍କ ପାଖରେ ନିବିଡ଼ ଭାବରେ ବଞ୍ଚିବା ପୁଣି ମରିବାର ଅର୍ଥମୟ ଆଲେଖ୍ୟ ।୧୭।

କବି ସୌରୀନ୍ଦ୍ର ବାରିକଙ୍କ 'ଅନୁଭାରତ' ପଦେରେ ପ୍ରକାଶ କରିଛନ୍ତି - ଯେଉଁଥିରେ ଆଧୁନିକ ଓଡ଼ିଆ କବିତାରେ ମିଥ୍‌ର ବ୍ୟବହାର ଏକ ମୁଖ୍ୟ ଆଲେଖ୍ୟ ବିଷୟ । ବୌଦ୍ଧିକ ଆଲୋଚନାଠାରୁ ସୌରୀନ୍ଦ୍ର ବାରିକ୍‌ଙ୍କ କାବ୍ୟଚେତନା ବହୁ ଦୂରରେ । କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ଅବା କୌଣସି ଏକ ଛାଞ୍ଚକୁ ଆରୋପ କରି ଆବେଦନରେ ନୂତନତା ଆଣିବା ପାଇଁ କବି ମହାଭାରତକୁ ତାଙ୍କ କବିତାରେ ବିଷୟବସ୍ତୁ କରିନାହାନ୍ତି । କବି ସୌରୀନ୍ଦ୍ର ବାରିକ ପାଖରେ ଏ ଅଙ୍ଗୀକାର ଛାଞ୍ଚ ନୁହେଁ କିବା କବିଙ୍କ ସହ ମହାଭାରତରେ ଚରିତ୍ର ମାନଙ୍କର ପାର୍ଥକ୍ୟକୁ ତୁଳନା କରି କୌଣସି ସତ୍ୟର ସନ୍ଧାନ କରିବାର ଉପାୟ

ନୁହେଁ । କବିଙ୍କ କବିତା ମହାଭାରତର ବିଭିନ୍ନ ଚରିତ୍ର ଏବଂ ବିଭିନ୍ନ ଘଟଣାର ଏକ ଏକ ପ୍ରତିକ୍ରିୟା । ଆଜିର ମନନେଇ ଅନୁଭୂତିର ମହାସାଗରକୁ ବୁଝିବାକୁ ଚେଷ୍ଟା କରିଛନ୍ତିକବି ସୌରୀନ୍ଦ୍ର ବାରିକ ।

'ଅନୁଭାରତ' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକ ମୋର ଆତ୍ମାନୁସନ୍ଧାନ । ଚିରନ୍ତନ ଜୀବନକୁ ବୁଝିବାର ଉଦ୍ୟମ । ମୁଁ କହିଛି ମହାଭାରତ ମୋ' ପାଖରେବିରାଟ ପ୍ରଶ୍ନବାଚୀ 'କେତେବେଳେ ଦୂର ନୀହାରିକା ପରି, କେତେବେଳେ ବଗିଚାର ଘାସ ଫୁଲଟି ପରି । ଏହିସତ୍ୟର ରହସ୍ୟମୟତା ହିଁ ମହାଭାରତ । ତା' ପାଖରେମୋର ଅସହାୟତା, ତାକୁ ବୁଝିବାର ବିଫଳତା ହେଉଛି ମୋ' କବିତା । ମହାଜୀବନ ମହାଭାରତ ପାଖରେ ନିଜର ନୂତନତାରେ ହିଁ 'ଅନୁଭାରତ'ର କବିତା ଗୁଡ଼ିକ ଗର୍ବିତ ।୧୮।

ତେତିଶ ଗୋଟି କବିତାକୁନେଇ 'ଅନୁଭାରତ' କବିତା ସଂକଳନ ଋଦ୍ଧିମନ୍ତ । 'ଅନୁଭାରତ'ରେ ସ୍ଥାନିତ ପ୍ରତ୍ୟେକ କବିତା ପୌରାଣିକ ଚରିତ୍ର ଉପରେ ଆଧାରିତ ମହାଭାରତର ଚରିତ୍ର । କବି ସୌରୀନ୍ଦ୍ର ବାରିକ ମହାଭାରତର ଚରିତ୍ର ଭିତରେ ସାଂପ୍ରତିକ ଜୀବନ ଜିଜ୍ଞାସାକୁ ଖୋଜିଛନ୍ତି । ପ୍ରତ୍ୟେକ ଚରିତ୍ରକୁ କବିଭିନ୍ନଭିନ୍ନ ଦୃଷ୍ଟିରେ ନୂତନ ରୂପରେ ଅବଲୋକନ କରିଛନ୍ତି । ମହାଭାରତର ପୁରୁଷ ଚରିତ୍ର ଓ ନାରୀ ଚରିତ୍ର ଉଭୟ କବିଙ୍କ ଲେଖନୀରେ ଚଳଚଞ୍ଚଳ ଓ ଗତିଶୀଳ । ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ କବି ସୌରୀନ୍ଦ୍ର ବାରିକ୍ ପୌରାଣିକ ଚରିତ୍ର ଭିତରେ ସାଂପ୍ରତିକ ମନୁଷ୍ୟର ପୌରୁଷକୁ ଅନୁସନ୍ଧାନ କରିଛନ୍ତି ଯେପରି ଭାବରେ କବି ଠିକ୍ ସେହିପରି ଭାବରେ କବିତାରେ ପ୍ରକାଶ କରିଛନ୍ତି ।୧୯।

କବିତା ସଂକଳନସ୍ଥ କବିତା ଗୁଡ଼ିକ ଗୋଟିଏ ଗୋଟିଏ ଭାବନେଇ ଆଗେଇ ଯାଇଛନ୍ତି । ଅନୁଭୂତି ଅନୁରକ୍ତି ଅନୁଭବର କଷଟି ପଥରରେ କବିତା ଗୁଡ଼ିକ ପରୀକ୍ଷିତ କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । ମହାଭାରତରେ ଏହି ବିପୁଳ ବିସ୍ମୟରେ ଅଭିଭୂତ ସୌରୀନ୍ଦ୍ର ତଦନ୍ତର୍ଗତ ଚରିତ୍ରମାନଙ୍କର ଜୀବନ ନିର୍ଯ୍ୟାସକୁ ଗଭୀର ଭାବରେ ଉପଲବ୍ଧ କରିଛନ୍ତି । ମହାଭାରତର ଚରିତ୍ରମାନଙ୍କ ସହ ଆପଣାର ପ୍ରାଣସତ୍ତାକୁ ଏକୀଭୂତ କରି ଗଭୀରତମ ଜୀବନାବେଗଟିକୁ କବି କବିତାରେ ରୂପାୟିତ କରିବାକୁ ପ୍ରୟାସ କରିଛନ୍ତି ।

'ଅନୁଭାରତ' କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକରେ ପୁରାତନରେ ନୂତନତା ଅନୁକରଣରେ ମୌଳିକତା ସ୍ପଷ୍ଟ ପରିଲକ୍ଷିତ ହୁଏ । 'ଅନୁଭାରତ' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକରେ ଦୁଇଟି ଯାକ ମାନସିକତା ପ୍ରତିଫଳିତ । କେତୋଟି କବିତା ପୁରାତନକୁ ନୂତନ କରି ଗଢ଼ିବାର ପ୍ରତିଭାରେ ଉଜ୍ଜ୍ୱଳ ହୋଇ ଉଠିଥିବା ବେଳେ କେତେକ କବିତା ପାଇଁ କବି ପୁରାତନ ପ୍ରତି ବିଶ୍ୱସ୍ତ ଓ ବଶମ୍ବଦ ରହି ସେଥିରେ ନୂତନତା ଆରୋପ କରିଛନ୍ତି । 'ଅନୁଭାରତ' କବିତା ସଂକଳନରେ ସ୍ଥାନିତ କବିତା

ଗୁଡ଼ିକର ନୂତନତା ହିଁ ଅନ୍ତଃସ୍ୱର। କବିତାରେ ଆମେ ଭେଟୁଥିବା ଚରିତ୍ର ଗୁଡ଼ିକ ଚରିରତ୍ରମାନଙ୍କର ଚିତ୍ରଣ ନୁହେଁ ବରଂ ଚରିତ୍ରମାନଙ୍କୁ ସେମାନଙ୍କ ପରିଧି ଭିତରୁ ଉଦ୍ଧାର କରି ଏକ ନୂତନ ଜୀବନବୋଧ ଉପରେ ପ୍ରତିଷ୍ଠା କରିବା ହିଁ କବିଙ୍କର ଏକମାତ୍ର ଉଦ୍ଦେଶ୍ୟ। ବର୍ତ୍ତମାନ ହିଁ କବିତା ଗୁଡ଼ିକର ଅନ୍ତରଂଗ ଅନୁଭବ। କେତେକ କବିତାରେ ଅତୀତ ଗୌଣ ନହେଲେ ବି ଖୁବ୍ ବେଶୀ ସମ୍ଭାବନାର ଭିତ୍ତିଭୂମି ନୁହେଁ। ତେଣୁ ସେହି ସୂତ୍ରରେ ଚରିତ୍ର ଗୁଡ଼ିକ ଆଧୁନିକ ମଣିଷର ପ୍ରତିନିଧିତ୍ୱ କରନ୍ତି। ଯେଉଁ ଜୀବନ, ଜୀବନର ଉତ୍ତରଣ ଓ ଅସ୍ତିତ୍ୱ (Correct acceptance of life) ହିଁ ମୁଖ୍ୟ ପ୍ରସଂଗ ଆଉ ସବୁ ଆପେକ୍ଷିକ। ଜୀବନର ଅପୂର୍ଣ୍ଣତା ଦୁଃଖ ଯନ୍ତ୍ରଣା ନିଃସଂଗତା ସଂଶୟବୋଧ ପ୍ରତି ଯୁକ୍ତିନିଷ୍ଠ ଓ ସତ୍ୟଶୀଳ ଉଚ୍ଚାରଣ ଯଦି ବର୍ତ୍ତମାନ କବିତାର ସଂସାର ହୁଏ, ତାହେଲେ 'ଅନୁଭାରତରେ ସେଇ ଅନୁଭବର ସ୍ୱରବେଶ୍ ତୀବ୍ର।୨୦।

## (ଛ) ଆମେ ଦୁହେଁ (୧୯୯୧)

କବି ସୌରୀନ୍ଦ୍ର ବାରିକଙ୍କ 'ଆମେ ଦୁହେଁ' ସପ୍ତମ କବିତା ସଂକଳନ। ଆମେ ଦୁହେଁ କବିତା ସଂକଳନଟିର କବିତାପାଠ ପୂର୍ବରୁ ପ୍ରଥମେ ଆଖିରେ ପଡ଼େ କବିକଂର ସଂକଳନଟି ସଂପର୍କରେ ସହଜ ସରଳ ସ୍ୱାଗତୋକ୍ତି। କେଜାଣି କାହିଁକି କବିକଂର ଗୋଟିଏ ସନ୍ଦେହ ଉପୁଜିଛି। ସଂକଳନଟିର କବିତା ଗୁଡ଼ିକୁ କବିତାବୋଲି ପାଠକମାନେ ହୁଏତ ଗ୍ରହଣ କରି ନ ପାରନ୍ତି। ସେଥିପାଇଁ ସେ ବିନୀତ ଭାବରେ କହିରଖିଛନ୍ତି। ଏ ଲେଖାଗୁଡ଼ିକୁ ଆପଣ ଯାହା କହି ପାରନ୍ତି। କବିତା ହିସାବରେ ଗ୍ରହଣ ମଧ୍ୟ ନ କରି ପାରନ୍ତି। କାହାଣୀ ମୁଁ କହିପାରିବିନି। ଶୃଙ୍ଖଳା ବା ନିୟମ ଆଙ୍ଗିକ ଗଦ୍ୟ ପଦ୍ୟର କଥା ଆପଣ ବିଚାର କରିବେ। ଏହା ଆଶଙ୍କା କରିବାର କାରଣ ସଂପର୍କରେ ଭାବୁଛି କବିବୋଧରୁ ସଂକଳନଟିରେ କବିତା ପାଇଁ କିଛି ନୂଆ ପରୀକ୍ଷା କରିଛନ୍ତି। ଯାହାକୁ ପାଠକମାନେ ହୁଏତ ଗ୍ରହଣ କରିନ ପାରନ୍ତି। ଏଠାରେ ମୁଁ ପାଠକମାନଙ୍କୁ ସୂଚାଇ ଦେବାକୁଚାହେଁ ଯେ ଆମେ ଦୁହେଁ ଠିକ୍ କବିତା ଅର୍ଥରେ କବିତାନୁହେଁ; ସେ କଥାପଛକୁ ରଖି ପ୍ରଥମେ ତାକୁ ସାହିତ୍ୟ ଭାବରେ ଗ୍ରହଣ କରି ଆଗକୁ ଯିବା, ଆଉ ଯିବାବାଟରେ ତାହା କବିତା କି ନୁହେଁ ତା'ର ତଥ୍ୟ ଆମକୁ ମିଳିଯିବ। ତାହା ହିଁ ହେବ ଆମର ଅହୋଭାଗ୍ୟ।୨୧।

ମୋ' ପକ୍ଷରେ କବିତା ଲେଖିବା ବଞ୍ଚିବାର ଅନ୍ୟ ଏକ ନାମ। ଯେଉଁ ଭାବରେ ମୁଁ ବଞ୍ଚେ; ଏ ତେଲ ଲୁଣର ସଂସାରକୁ ସାମ୍ନାକରେ, ସେଇ ଭାବରେ କବିତାଲେଖେ ଅନ୍ତତଃ ଲେଖଇବାକୁ ଚେଷ୍ଟା କରିଥାଏଁ। ଜୀବନ ଆଉ କଳା ଭିତରେଥିବା ଦୂରତାକୁ ଏଡାଇବାକୁ ଚେଷ୍ଟା କରିଥାଏ। ମୁଁ କବିତା ଲେଖେନି କବିତା ବଞ୍ଚେ। ଏ ପୃଥିବୀରେ ତ ଅନେକ ବସ୍ତୁ ଅବସ୍ତୁ ଘେରି ରହିଛନ୍ତି। ମୋ କବିତା ତ ଖାଲି ସଂପର୍କ ଆଉ ସଂପର୍କ। ବସ୍ତୁ ଜୀବଜନ୍ତୁ ଆଉ ପ୍ରକୃତି ଓ ମଣିଷଙ୍କ ସହ ସଂପର୍କ ପୁଣି ଏ ସଂପର୍କ। ଏ ଦୁଇ ପ୍ରକାର ସଂପର୍କରୁ ଜନ୍ମ ନିଏ ମୋ' କବିତା। ମୁଁ ମୋ ନିଜ ଭାଷାରେ ଏ ସଂପର୍କର କଥା

କହିବାକୁ ଚେଷ୍ଟା କରିଥାଏ । ମୁଁ ମୋ ସଂପର୍କର ପୃଥିବୀ ଓ ମୋ ଭାଷା ଏ ତିନି ସଂପର୍କ କବିତା । ଏସଂପର୍କ ଯେତେ ନିବିଡ଼ ଯେତେ ସଚ୍ଚୋଟ କବିତାର ପ୍ରକାଶ ସେତେ ଅକୃତ୍ରିମ, ସେତେ ଗଭୀର, ସେତେ ସ୍ୱଚ୍ଛନ୍ଦ । ମୋ ପାଖରେ କବିତାର ସରଳତା ଅବା ଦୁର୍ବୋଧ୍ୟତା ନୁହେଁ ଗଭୀରତା ଓ ଆନ୍ତରିକତା ହେଉଛି ବଡ଼କଥା । ଏକ ନିବିଡ଼ ସଂପର୍କର ଅନନ୍ୟତାର ପ୍ରକାଶ ହିଁ କବିତା । ଏହି ଅନନ୍ୟତା କବିତାର ଭାଷାକୁ ଡାକି ଆଣେ । ଅନନ୍ୟ ଅନୁଭୂତି ପାଇଁ ଉକୁଟି ଉଠେ ଅନନ୍ୟ ଭାଷା । ଏ ଭାଷା କୃତ୍ରିମ ଅବା ଅସାଧାରଣ ନୁହେଁ, ଦୁର୍ଲ୍ଲଭ କିମ୍ବା ପାଣ୍ଡିତ୍ୟ ପୂର୍ଣ୍ଣ ନୁହେଁ । ଅନୁଭୂତିର ନିଚ୍ଛକତାକୁ ଫୁଟାଉଥିବା ଭାଷା, ଶବ୍ଦ ଶବ୍ଦ ମଧ୍ୟରେ ସଂପର୍କ ଯାହା କେବଳ ସେହି ଅନୁଭୂତି ପାଇଁ ଗୋଟିଏ ମାତ୍ର ବିକଳ୍ପ ହୀନ ସଂପର୍କ ଭିତରେ ହିଁ ଅନନ୍ୟତା ରୂପପାଏ । ଏହା ହିଁ କବିତାର ସ୍ୱଚ୍ଛଳତା ।୨୨।

ତେଣୁ ମୁଁ କବିତାରେ କୃତ୍ରିମ କାରିଗରିକୁ ସ୍ୱୀକାର କରେ ନାହିଁ । ପାଣ୍ଡିତ୍ୟ ଏବଂ ବୁଦ୍ଧିକୁ ବି ସ୍ୱୀକାର କରେ ନାହିଁ । ଅନୁଭବ ମୋ' ପାଖରେ ବଡ଼ କଥା । ଏ ଅନୁଭବ ପୁଣି ମୋ ପାଖରେ ଆବେଗମୟ । ଏ ଆବେଗମୟ ଅନୁଭବ ଜରିଆରେ ବସ୍ତୁ ଅବସ୍ଥୁ ସବୁ ମୋ' ପାଖରେ ଭିନ୍ନ ହୋଇ ଯାଆନ୍ତି । ମୋ ସହିତ ନୂଆ ସଂପର୍କ ସୃଷ୍ଟି କରନ୍ତି । ଆଉ ଏ ସଂପର୍କରେ ମୁଁ ନିଜକୁ ନୂଆ ରୂପରେ ପାଇ ଥାଏଁ । ପାଇଥାଏ ସତ୍ୟର ନୂଆ ନୂଆ ରହସ୍ୟ । ଏହି ଆବିଷ୍କାର ମୋତେ ନେଇ ଯାଏ ଚେତନାର ଭିନ୍ନ ଜଗତକୁ । ବସ୍ତୁର ବସ୍ତୁତ୍ୱ ଏବଂ ମୁଁତ୍ୱର ସେପାରିକୁ । ଗୋଟେ ନୂଆ ସେପାରିରେ ମୁଁ ମୋ' ପାଖରେ ଭିନେ ରକମ ଦିଶେ । ଭିନେ ରକମ ଦିଶନ୍ତି ବିଭିନ୍ନ ବସ୍ତୁ । ଏହି ଭିନ୍ନତା ଦେଖାଇ ଦିଏ ସଂପର୍କର ସୂକ୍ଷ୍ମତା । ଏଇସବୁ କବିତା ତ ଏଇସବୁ ଅଜଣା ସେପାରିକୁ ନେଇ ଯିବାର ସମ୍ଭାବନା । ତାହା କେତେବେଳେ ମନର କେଉଁ ସାତତାଳ ଗହୀର ଭିତରକୁ ନେଇ ଯାଏତ କେତେବେଳେ ନେଇଯାଏ କେଉଁ ଅଜଣା ମୂଳକର ଭେଳିକି ଭିତରକୁ । ତେଣୁ ସବୁ କବିତା ଅପହଞ୍ଚ ଦିଗ୍‌ବଳୟକୁ ଧରିବାର ଗୋଟାଏ ଗୋଟାଏ ବହପ । ଏହି ବହପତ ସୃଷ୍ଟିର ବହପ ଆଉ ଏଇ ବହପ ଆସେ ଅନୁଭବର ସଚ୍ଚୋଟତାରୁ ଏବଂ ଭାଷା ସହ ଘଞ୍ଚ ସଂପର୍କରୁ ।୨୩।

ଏହି କବିତା ଗ୍ରନ୍ଥରେ ଗୋଟିଏ ବସ୍ତୁ ସହ ମୋର ସଂପର୍କର କଥା କହିଛି । ବସ୍ତୁଟି ତା ସଂପର୍କର କଥା ନିଜେ କହିଛି । ମାତ୍ର ବସ୍ତୁଟି ମୋ' ପାଖରେ ହୋଇଯାଇଛି ପ୍ରାଣବନ୍ତ । ସାଇକେଲ୍‌ଟି ହୋଇଯାଇଛି ପକ୍ଷୀରାଜ । ଏହି କବିତା ଗ୍ରନ୍ଥ ସେହି ପକ୍ଷୀରାଜର କାହାଣୀ । ପ୍ରତ୍ୟେକ କବିତା ଗୋଟିଏ ଗୋଟିଏ ଘଟଣା ପରିସ୍ଥିତି କିମ୍ବା ମନସ୍ଥିତିର ବର୍ଣ୍ଣନା । ଏ କବିତାରେ ମୁଖ୍ୟତଃ ତିନୋଟି ଚରିତ୍ର ପକ୍ଷୀରାଜ, ବାବୁ, ଆଉ ଗପସପ ସାଙ୍ଗ । ଏହା ବ୍ୟତୀତ ଗୋଟିଏ ସ୍କୁଟର ଏବଂ ଲଟକମଣି ଲେଡ଼ିଜ୍ ସାଇକେଲ । ଏହି ସଂକଳନର ପ୍ରଥମ କବିତାଟି ୧୯୬୯ ସାଲରେ ଲେଖାହୋଇଥିଲା । 'ସାଇକେଲ' ଶୀର୍ଷକରେ ମୋର ପ୍ରଥମ କବିତା ଗ୍ରନ୍ଥ 'ସାମାନ୍ୟ କଥନ'ରେ ସ୍ଥାନ ପାଇଥିଲା ।

ଅନ୍ୟାନ୍ୟ କବିତା ଗୁଡ଼ିକ ମଧ୍ୟରୁ କେତେକ ବିଭିନ୍ନ ସମୟରେ, ବିଭିନ୍ନ ପତ୍ର ପତ୍ରିକାରେ ଭିନ୍ନ ଭିନ୍ନ ଶୀର୍ଷକରେ ପ୍ରକାଶ ପାଇଛି ତ କେତେକ ପ୍ରଥମ କରି ଏହି ଗ୍ରନ୍ଥରେ ସ୍ଥାନ ପାଇଛି । ଏହି କବିତା ଗ୍ରନ୍ଥରେ କୌଣସି କବିତାର ଶୀର୍ଷକ ରଖାଯାଇ ନାହିଁ । ତା'ର ପ୍ରୟୋଜନ ଆଉ ନାହିଁ । ପ୍ରତ୍ୟେକ କବିତା ସ୍ୱୟଂ ସମ୍ପୂର୍ଣ୍ଣ ଓ ସ୍ୱତନ୍ତ୍ର । ଯୁକ୍ତି କାଳ ଆଦି କୌଣସି ସୂତ୍ରରେ ସେମାନେ ବନ୍ଧା ନୁହଁନ୍ତି । ସେମାନେ ବନ୍ଧା ସ୍ମୃତି, ଆବେଗ ଆଉ ସଂପର୍କର ସୂତ୍ରରେ ।

ସୌରୀନ୍ଦ୍ର ବାରିକ୍‌ଙ୍କ ମତରେ ମୋ ପାଖରେ ଏ କବିତାଗୁଡ଼ିକ ଅନ୍ତରଂଗ ଆଳାପ । ସଂପର୍କର ସମ୍ଭାବନା । ପୂର୍ବରୁ କହିଥିବା ସେଇ 'ସେପାରି'କୁ ଯିବାର ଏକ କଅଁଳ ବହପ । ଜୀବନର ଛୋଟ ଛୋଟ ଘଟଣା, ସ୍ୱପ୍ନ ହତାଶାକୁ ଧରି ରଖିବାକୁ ଚେଷ୍ଟା କରିଛି । ଫଟୋ ଉଠାଇ ନାହିଁ ଶବ୍ଦ ସହ କସରତ କରିନାହିଁ । କବିତାକୁ କାବ୍ୟିକତାର ଅଠା କାଠିରେ ଛନ୍ଦିଦେଇ ନାହିଁ । ଏ କବିତା ଗୁଡ଼ିକ କୁଣ୍ଡରେ କଟାକଟି ହୋଇ ଯତ୍ନରେ ବଢ଼ିଥିବାଦାମୀ ଫୁଲଗଛ ନୁହେଁ; ବର୍ଷାରେ ଫୁଟିଥିବା ଅଜଣା ଅନାବନା ଫୁଲ । ସବୁଠି ସଦ୍ୟ ପ୍ରସ୍ଫୁଟିତ ଜୀବନର ମହମହ ବାସ୍ନାରେ ସବୁ କାବ୍ୟିକତାର ପାରମ୍ପରିକ ନିୟମ ଭାଙ୍ଗି କବିତା ଗୁଡ଼ିକ ଏପରି ଏକ ସ୍ତରକୁ ଯାଇଛନ୍ତି ଯେଉଁଠି ଜୀବନ ଓ କବିତାର ରୂପ ପାଠକର ସ୍ନେହ, ଶ୍ରଦ୍ଧା, ସହାନୁଭୂତି ପାଇବା ନିଶ୍ଚିତ ।

## (ଜ) ଚହଲା ଛାଇରେ ଘଡ଼ିଏ (୧୯୯୫)

'ଚହଲା ଛାଇରେ ଘଡ଼ିଏ' କବି ସୌରୀନ୍ଦ୍ର ବାରିକ୍‌ଙ୍କ ଅଷ୍ଟମ କବିତା ସଂକଳନ । ଛବିଶଟି କବିତାକୁ ନେଇ କବିତା ସଂକଳନଟି ଋଦ୍ଧିମନ୍ତ । କବି ଓ ତାଙ୍କ ଚାରିପାଖରେ ଘେରି ରହିଥିବା ବିଭିନ୍ନ ଦୃଶ୍ୟ ତଥା ଅତି ଆପଣାର ମନେହେଉଥିବା ମଣିଷମାନଙ୍କ ପ୍ରତି କାବ୍ୟ ନାୟକଙ୍କ ସମ୍ବେଦନଶୀଳ ଦରଦୀ ଦୃଷ୍ଟିକୋଣ ଭିତରେ କବିତାଗୁଡ଼ିକ ରସୋତ୍ତୀର୍ଣ୍ଣ । ସ୍ନେହ ପ୍ରବଣ ମାନସିକତା ଓ ଆବେଗମୟ ସ୍ମୃତି ସ୍ୱପ୍ନ ପରିବେଶ ଓ ପରିବର୍ତ୍ତିତ ସମାଜର ଦ୍ରୁତ ପରିବର୍ତ୍ତନକୁ ଅଙ୍ଗେ ଅଙ୍ଗେ କେବଳ ଅନୁଭବ କରିନାହାନ୍ତି, ସେହି ସବୁଜ ସ୍ମୃତିର ଧୂଧୂ ଦିଗ୍‌ବଳୟ ଭିତରେ, ଘଡ଼ିଏ ହେଲା ଛାଇରେ କାବ୍ୟ ନାୟକ ମୁହଁରୁ ଝାଳପୋଛି, ତୁଣ୍ଡରେ ମୁନ୍ଦାଏ ତୋରାଣି ଦେଇ ଯାଇ ଟିକେ ଥକ୍‌କା ମାରିବସିବା ପାଇଁ ଦମ୍ଭ ଧରିଛି । କବିଙ୍କ ଭାଷାରେ ବିଭିନ୍ନ ସମୟରେ ମୋ ଚାରିପାଖରେ ଜୀବନ ମୋତେ ଯେମିତି ପ୍ରଭାବିତ କରିଛି, ସେହି ପ୍ରଭାବକୁ ଏହି କବିତା ଗୁଡ଼ିକରେ ଧରି ରଖିବାକୁ ଚେଷ୍ଟା କରିଛି ।୨୪।

ସ୍ନେହ ସିକ୍ତ ସଂପର୍କ, ପ୍ରିୟ ପରିଚିତ ପୃଥିବୀ, ଅନ୍ତରଂଗ ଆପଣାର ଲୋକ ସବୁ ଚିହ୍ନା ଚିହ୍ନା ଅତି ଆପଣାର ଲାଗନ୍ତି କବିଙ୍କୁ । ଏମାନେ କାବ୍ୟନାୟକଙ୍କ ସାହା ଭରସା କିନ୍ତୁ ହେବ କ'ଣ ? ସବୁ ଆଜି ବଦଳି ଯାଉଛି ଦ୍ରୁତଗତିରେ । କାବ୍ୟନାୟକ କିନ୍ତୁ ସ୍ଥିର କି ନିଶ୍ଚଳ ହୋଇ ରହି ପାରିବ ନାହିଁ । ସେ ତା'ର ଅନୁଭବର ଅନ୍ତରଂଗ ଦୃଷ୍ଟିକୋଣରେ

ସେ ସବୁକୁ ସଜାଡ଼ି ଦେଇ ଧରି ରଖିବାର ପ୍ରୟାସ କରିବ । ଦେହର ବଳ ଓ ମନରେ ଦମ୍ଭଧରି ସେଟୁଡ଼ିକ ଭିତରେ ପ୍ରାଣର ପୁଲକ ଖୋଜିବ । ଏହା ଯେମିତି ତାଙ୍କର ସ୍ୱପ୍ନ ଆଉ ସ୍ମୃତି । ସେଥିପାଇଁ ସେ ତାଙ୍କର ଅସହାୟତା ପ୍ରକାଶ କରି କହନ୍ତି ଯାହା କିଛି ସ୍ଥିର ଆଉ ନିଶ୍ଚଳ ଥିଲା, ଯା' ପାଖରେ ଛିଡ଼ା ହେଲେ ଦେହରେ ବଳ ଆଉ ମନରେ ଦମ୍ଭ ଆସୁଥିଲା, ସେ ସବୁ କେମିତି ହଜି ଯାଉଛନ୍ତି । ଏମିତିକି ରାସ୍ତା କଡ଼ର ଛାଇ ବି କେମିତି ଚହଲି ଯାଉଛି । ଦିଗ୍‌ବଳୟକୁ ମାଡ଼ି ଆସୁଛି ଧୁ ଧୁ ଖରା । ସବୁ ସ୍ମୃତି ଧୁ ଧୁ ଜଳୁଛି । ମୁଁ ଯେମିତି ଖୋଜି ବୁଲୁଛି ଟିକିଏ ଛାଇ, ଯାହା ତଳେ ଘଡ଼ିଏ ବସି ଥକ୍‌କା ମାରି ହେବ, ଝାଳ ପୋଛି ହେବ । ସେହି ଛାଇଟି ଆଜି ଦୁର୍ଲଭ ହେଲାଣି । ତାରି ସ୍ମୃତିର କବିତା 'ହେଲା ଛାଇରେ ଘଡ଼ିଏ' କବିତା ସଂକଳନ ।୨୫।

## (୯) ପଢ଼ ବା ନପଢ଼ (୧୯୯୭)

'ପଢ଼ ବା ନପଢ଼' କବି ସୌରୀନ୍ଦ୍ର ବାରିକ୍‌ଙ୍କ ନବମ କବିତା ସଂକଳନ । ଛତିଶ ଗୋଟି କବିତାକୁ ନେଇ କବିତା ସଂକଳନଟି ଋଦ୍ଧିମନ୍ତ । ଏଥିରେ ସଂଲଗ୍ନ ଥିବା କବିତା ଗୁଡ଼ିକରେ କବି ଅତିବେଶି ଆତ୍ମ ସଚେତନ / ସବୁକୁ ଅନ୍ତରଂଗ କରି ଭଲ ପାଇବାରେ ସଂଧର୍ଜନ ନିବିଡ଼ ହେଉ । ସେହି ଚିହ୍ନା ବସ୍ତୁ, ଚିହ୍ନା ଘଟଣା, ମାମୁଲି ଖରା, ମାମୁଲି ବର୍ଷା ପରି ଭିତରେ କବିଙ୍କ ଅନନ୍ୟତା ଫୁଟି ଉଠନ୍ତି ଇନ୍ଦ୍ରଧନୁ ପରି । ଉଡ଼ିଯାଆନ୍ତି ସବୁଜ ମଜଲିସରେ ପ୍ରଜାପତିର ଚପଳତା ପରି । ଏହା ଯେମିତି କାବ୍ୟନାୟକଙ୍କର ନୂତନ ସର୍ଜନା ପ୍ରତି ଅହେତୁକ ଦାହ ନୁହେଁ; ସମସ୍ତଙ୍କୁ ନିଜର କରିବାରେ ଆପଣେଇ ନେବାର ବିକଳତା, କୁତୁକୁତୁ ଭଲ ପାଇବାର ଆନ୍ତରିକତା । କବିଙ୍କ ନିଜ ଭାଷାରେ ମୋର ଏଇ ଅନୁଭବ କିଛି ନୂଆ ନୁହେଁ । ନିହାତି ପୁରୁଣା ଏମିତିକି ଅନେକଙ୍କ ପାଖରେ ଫିମ୍ପିମରା । ତଥାପି ଏ ଫିମ୍ପିମରା ଅନୁଭବଟି ମୋ ପାଖରେ ଏକାନ୍ତ ସତ୍ୟ ନିହାତି ଅନନ୍ୟ ।୨୬।

ସତ୍ୟର ଚିର ରହସ୍ୟମୟତାକୁ ଉଦ୍‌ଘାଟନ କରିବାରେ କବି ଯେମିତି ନିଜକୁ ଅସହାୟ ମନେ କରିଛି । ଅସଫଳ ଓ ଅପୂର୍ଣ୍ଣତାର ସିଡ଼ି ଚଢ଼ି ସେଗୁଡ଼ିକୁ ନିହାତି ଅନ୍ତରଂଗ କରିବା ପାଇଁ କଲବଲ ଭାବେ ପ୍ରତିକ୍ଷା କରିଛି । ଅନ୍ୟକୁ ଭଲ ପାଇବାର ସ୍ନେହ ପ୍ରବଣ ମାନସିକତା ଓ ସେଥିପ୍ରତି ଆତ୍ମ ସଚେତନତା ଏହି କବିତା ଗୁଡ଼ିକରେ ବେଶ୍ ସ୍ପଷ୍ଟ ବାରି ହୋଇ ପଡନ୍ତି । କେହି ନିଜର କରୁକି ନକରୁ, ସେ କିନ୍ତୁ ସବୁକୁ ଆଦରି ନିଅନ୍ତି ଅନ୍ୟକୁ ବୁଝି ବୁଝାଇବାର ଚେଷ୍ଟାରେ । ସେ କବି ସେ ଦ୍ରଷ୍ଟା, ସେ ତ୍ରିକାଳଦର୍ଶୀ, ସେ କହିବ ତା' ସମୟର କଥା, ହେଉପଛେ ଅଭିମାନ ବ୍ୟଞ୍ଜିତ, ସ୍ନେହ ଶ୍ରଦ୍ଧାକୁ ଧରି ବଞ୍ଚିବ ଚିରକାଳ । କବିଙ୍କ ଭାଷାରେ - ସ୍ନେହ କାଙ୍ଗାଳ କବିଟି ନାଚାର । ସେ ଲେଖିବାକୁ ବାଧ୍ୟ । କାରଣ ଲେଖିବାଟା ତା ବଞ୍ଚିବାର ଧାରା । କେହି ତାକୁ ପଢୁ ବା ନ ପଢୁ, ଭଲ ପାଉ ବା ନ ପାଉ ସେ ଲେଖିବ ତା ସମୟର କଥା । ଏମାନଙ୍କ ସହ ସଂପର୍କ ଯେ ନିବିଡ଼ ଭଲ ପାଇବା ଉପରେ ପ୍ରତିଷ୍ଠିତ । ଏହି ଭଲ ପାଇବାରୁ ଗଢ଼ିଉଠେ କବିର ବିକଳ୍ପ ସୃଷ୍ଟି ।

ଏ ସୃଷ୍ଟି ଅହଂର ବହପ ନୁହେଁ, ସ୍ନେହ ଜୁଡୁବୁଡୁ କବିଟିର ଭଲ ପାଇବାର ସମସ୍ତଙ୍କୁ ଆପଣାଇବାର ବିକଳତା । ନିଜ ଦୁଃଖରେ ସଢ଼ି ସଢ଼ି ଏହି ଭଲ ପାଇବାର ଅନୁଭବଟିକୁ 'ପଢ଼ ବା ନପଢ଼' କବିତା ସଂକଳନରେ କବି ଫୁଟାଇବାକୁ ଚାହିଁଛନ୍ତି ।

କ'ଣ ସେ ସଂପର୍କ, କ'ଣ ସେ ଭଲ ପାଇବା ? କ'ଣ ସେ ନିବିଡ଼ତା ? ସତମିଛ ସବୁ ଏକାକାର । କବିରତ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ । କାହାକୁ ଦୂରେଇ ଦବ, କାହାକୁ ନିଜର କରିବ । କିଏ ବେ ଅତି ଆପଣାର କବିପାଇଁ ତାହା ହିଁ ତ ମନ୍ତୁରା ନଖ ଦର୍ପଣ । ଯା ନଥାଏ କବି ତାହାକୁ ଦେଖାଇ ଦିଏ । ଯେତିକି ଦେଖାଏ ତା'ଠୁ ଅଧିକ ଲୁଚେଇ ରଖେ ଏବଂ ତା' ପାଖରେ ଅସହାୟ ଅସ୍ତିତ୍ୱଟିଏ ହୋଇ ତା ମର୍ଜିର ଗୋଲାମ ହୋଇ ବର୍ଷ ବର୍ଷ ଚାହିଁ ରହିଥାଏ । କେତେବେଳେ ଆସେ ହୁଏତ ଘଡ଼ିକି ଘଡ଼ି ଶାଢ଼ୀ ସଜାଡ଼ିବା ପରି, ନ ହେଲେ ନିବିଡ଼ ଦୂରତା ଭିତରେ ଦରାଣ୍ଡି ଦରାଣ୍ଡି, ପାହାନ୍ତି ଘାସରେ ହେଉ ଅବା ନଈର ପଠାରେ ହେଉ, ଜହ୍ନରାତିରେ ହେଉ ଅବା କଅଁଳ ଖରାରେ ହେଉ ସେ ଆସେ ନହକା ଅଗରେ ଦୋହଲି ଦୋହଲି ନାଲି କଂକୀପରି । ସତେ ଯେମିତି ଚାହିଁଲେ ସ୍ମୃତି / ଶୋଇଲେ ସ୍ୱପ୍ନ / ତୁମଠୁ ମୁକ୍ତି କାହିଁ ସେ ବସ୍ତୁ ହେଉକି ମଣିଷ ହେଉ / ପଶୁ ହେଉକି ପକ୍ଷୀ ହେଉ ସବୁତ କବିର କଲମ ମୂନରେ ଥୁଆ ତା'ରି ପାଇଁ ଘଣ୍ଟା ଘଣ୍ଟା ପ୍ରତୀକ୍ଷା ଓଦା ସରସର ଜହ୍ନରାତି ପୁଣି ସିନ୍ଦୁରା ସକାଳ, କାବ୍ୟନାୟକ ଶ୍ୱାସ ପ୍ରଶ୍ୱାସ ଧମନୀରେ ନେଇ ଭିଜା ମାଟିର ଗନ୍ଧ ପ୍ରତିଟି ଲୋମକୂପରେ ସତ୍ୟର କୁହୁକ ମହମହ ବାସ୍ନା ସ୍ନେହ କାଙ୍ଗାଳ କବିଟି ଚାହେଁ / ବସନା ଖାଲିଟିକେ ପାଖରେ ବସ / ବହୁତ ଦିନ ପରେ ମୋ ସାଙ୍ଗରେ / କବେ ଚା' ପିଅନ୍ତେ । ଚା' ପିଆ ସରୁ ନ ଥିବ ଅଥଚ ଗପ ଚାଲିଥିବ, ଛାଇଘର ପଡ଼ି ଆସୁଥିବ, ମଝିରେ ମଝିରେ ଉଷ୍ଣତା ବଢ଼ି ଯାଉଥିବ ଗୋଟେ ଦି'ଟା ପ୍ରଶ୍ନତ ପଚାରିବ ନିଶ୍ଚୟ । ପଚାରିବ ମୋ ଦେହ କେମିତି ଅଛି / ସଂସାର କେମିତି ଚାଲିଛି ମୋ କବିତା ଲେଖା ।

ଅନ୍ୟସହ ଗୁଣୁଗୁଣୁ ଗପସପରୁ ଉଷ୍ଣତା ନେଇ କବିଟିଏ ବଞ୍ଚେ ଚିରକାଳ । କେବଳ ବଞ୍ଚେନି ଅନ୍ୟ ସହ ବିଶ୍ୱସ୍ତ ହୁଏ, ଆତ୍ମୀୟ ହୁଏ, ହୁଏ ବି ଅଧିକ ଆତ୍ମସଚେତନ । ସେ ମାଟି ବିରାଡ଼ିଟିଏ ହେଉ, ହେଉ କିମ୍ବା ଘରଚଟିଆଟିଏ ନ ହେଲେ ବାଲି ଜନ୍ଦା ହେଉ, ଅବା କେଉଁ କପୋତ୍ରୀଟେ ହେଉ ଘର ଅଗଣାରେ ଏଣେ ତେଣେ ବୁଲୁଥିବାର ଦେଖିଲେ ସେମାନଙ୍କ ପ୍ରତି କବିଙ୍କର ନିରୀହ ଆଶ୍ୱସନା ଜାଗିଉଠେ । କିଛି ତ ତାଙ୍କୁ ଦେଇ ପାରିବେନି, କ'ଣ ବା ଦେବେ ? ଟିକିଏ ସ୍ନେହ ନ ହେଲେ ଅତି ବେଶୀ ହେଲେ କୋଳେ କୋଳେ ଉଷ୍ଣତା, ଯେମିତି ସେମାନେ ନ ଥିଲେ, ଘରଟା ଜମା ଘର ରକମ ଲାଗେନି । ସେହିମାନେ କବିଙ୍କୁ ଟାଣି ଟାଣି ନିଅନ୍ତି ଚିହ୍ନା ଚିହ୍ନା ଦୃଶ୍ୟରୁ ସ୍ୱପ୍ନର ଜଗତକୁ । ଯେଉଁଠି କବି ଦେଖନ୍ତି ହାତ ପାହାନ୍ତାରେ ନିରାପଦ ସ୍ଥାନ ଆଉ ବିଶ୍ୱାସରେ ଅଲଗା ଜଗତ । ନଈ ପାହାଡ଼ ଗଛବୃକ୍ଷ ପାଣି ପବନ ସବୁ ଯେମିତି ଅଜାଡ଼ି ଦିଏ କବିଙ୍କ

ପାଖରେ । ସଂପର୍କଟିଏ କାବ୍ୟନାୟକର ଅଜାଣତରେ କେତେବେଳେ ଗଢ଼ି ହୋଇଯାଏ ସେହି ଚିହ୍ନା ଚିହ୍ନା ନିହାତି ପୁରୁଣା ପାଖରେ । କବିଟିଏ କିଛି ଜାଣିପାରେନି । ଏହି ସତ୍ୟ ଓ ତା'ର ରହସ୍ୟମୟ ସ୍ୱରୂପ ଉଦ୍‌ଘାଟନ କରିବାରେ କବିତାଗୁଡ଼ିକ ଅଭିପ୍ରେତ ।୨୭।

## (ଞ) ହଳଦୀ ବସନ୍ତ (୧୯୯୯)

କବି ସୌରୀନ୍ଦ୍ର ବାରିକ୍‌ଙ୍କ 'ହଳଦୀ ବସନ୍ତ' ଦଶମ କବିତା ସଂକଳନ । ଅଠତିରିଶ ଗୋଟି କବିତାକୁ ପାଥେୟ କରି କବିତା ସଂକଳନଟି ପରିପୁଷ୍ଟ । ରହସ୍ୟମୟ ସତ୍ୟର ଅନୁସନ୍ଧାନ ମୂଳକ ଜିଜ୍ଞାସା ଓ ସତ୍ୟ ଶିବ ସୁନ୍ଦରର ଅନ୍ୱେଷା ସଂକଳନସ୍ଥ କବିତାଗୁଡ଼ିକର ପ୍ରାଣକେନ୍ଦ୍ର କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । ସୌନ୍ଦର୍ଯ୍ୟ ଓ ରହସ୍ୟ ଯେମିତି ଗୋଟିଏ ବୃନ୍ତରେ ଦୁଇଟି ପତ୍ର ସଦୃଶ । ଉଭୟ ଉଭୟଙ୍କର ହାତଧରି ଚାଲିଛନ୍ତି ଏକ ଅନନ୍ୟ ଅନୁଭୂତି ପାଖକୁ । ଯେଉଁଠି ଜୀବନ କେବଳ ରହସ୍ୟମୟ ନୁହେଁ ତା'ଭିତରେ ସତ୍ୟ ସୌନ୍ଦର୍ଯ୍ୟ ଉଙ୍କୁଟି ଆସେ ଆବେଗମୟ ଅନୁଭୂତି ମାଧ୍ୟମରେ । କବିତା ଗ୍ରନ୍ଥର ନାମକରଣରୁ ଜଣାପଡ଼େ ଯେ ହଳଦୀ ବସନ୍ତ ସୌନ୍ଦର୍ଯ୍ୟର ପ୍ରତୀକ । ହଳଦୀ ବସନ୍ତ ହଳଦୀ ଗୁରୁଗୁରୁ ପକ୍ଷୀଟିଏ । ଏପକ୍ଷୀସହ ନିବିଡ଼ ସଂପର୍କ ଭିତରେ କବିଙ୍କ ଅନନ୍ୟ ଅନୁଭୂତିର ସୌନ୍ଦର୍ଯ୍ୟ ଘନେଇ ଆସେ ଖୁବ୍ ନିକଟକୁ । ତାକୁ ନେଇ କବିଙ୍କ ସୌନ୍ଦର୍ଯ୍ୟମୟ ଜଗତ । ସବୁ ସୁନ୍ଦରିଆ ଜୀବଙ୍କ ମଧ୍ୟରେ ହଳଦୀବସନ୍ତ ସହ କବିଙ୍କ ପରିଚୟ, ପୁଣି ପରିଚୟରୁ ନିବିଡ଼ ସଂପର୍କ, ଏହି ସଂପର୍କରୁ ଭଲପାଇବାର ନୀରବତା ଆଉ ଏଇ ନୀରବତା ହିଁ କବିଙ୍କ ପ୍ରେମ ଓ ପ୍ରେମରୁ ସୌନ୍ଦର୍ଯ୍ୟର ରହସ୍ୟମୟୀଭାବ । ଏହା ଜୀବନ ସହ, ସ୍ମୃତି ସହ ସଂପର୍କ ଯୋଡ଼ିହୋଇ ଚାଲୁଥିବା ଆତ୍ମ ପରିଚୟଟିଏ ।

ଯାହା ସୁନ୍ଦର ତାହା ଚିରଦିନ ସୁନ୍ଦର । ସେଥିପାଇଁ କବିବର ରାଧାନାଥ ରାୟ 'ଚିଲିକା' କାବ୍ୟରେ ପ୍ରକାଶ କରିଥିଲେ 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ । ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' ଏହି ସୌନ୍ଦର୍ଯ୍ୟର ତେଜ ଭିତରେ କବି ଦେଖନ୍ତି ଅଲଗା ଆକାଶ ଅଲଗା ପୃଥିବୀ ଆଉ ଅଲଗା ଏ ସାରା ବିଶ୍ୱ ବ୍ରହ୍ମାଣ୍ଡ । ସେହି ସୌନ୍ଦର୍ଯ୍ୟର ରହସ୍ୟମୟ ଆବିର୍ଭାବ ଭିତରେ କବି ଅନୁସନ୍ଧାନ କରିଛନ୍ତି । ତାଙ୍କ ଘଡ଼ିଏ ବଞ୍ଚିବାର ମଧୁର ସ୍ମୃତି-ଯିଏ ଖାଲି ଜଳେନି, ଜଳାଇ ଦିଏ ଦେହ ମନ ପ୍ରାଣ । କ'ଣ ସେ ସୌନ୍ଦର୍ଯ୍ୟର ରହସ୍ୟ କବି ଧନ୍ଦି ହୁଅନ୍ତି ହଳଦୀବସନ୍ତର ଛାଇରେ । ତାକୁ ପାଇ ହୁଏନି ଅଥଚ ସାରା ଜୀବନ ଭୋଗୀ ହୁଏ । କେତେବେଳେ ସେ ଲାଗେ ବଂଶୀର ନୀରବ ନିସ୍ୱନ ଦୁକୁ ଦୁକୁ ଛାଇ, ଅବା କେଉଁ ନୀଳକାନ୍ତୀ କପାଳରେ... ବୁନ୍ଦାଟିଏ ହୋଇ । ସେଇ ଆକାଶ, ସେଇ ଜହ୍ନ ଝେଲ ସକାଳ ଯେମିତି ଅନୁଭବର ଚିହ୍ନା ଚିହ୍ନା ନୂଆ ସ୍ୱାଦଟିଏ ଯାକୁ ବୁଝିହୁଏନି / ରସିହୁଏ / ମଣେଇ ହୁଏନି ଭୋଗି ହୁଏ / ପାଇ ହୁଏନି ହେଜିଯାଇ ହୁଏ / ସେଇ ତ ହଳଦୀବସନ୍ତ । (ପୃଷ୍ଠା:୨୯)

ସୌନ୍ଦର୍ଯ୍ୟ ହେଉଛି ସତ୍ୟ ଓ ସ୍ୱପ୍ନର ରହସ୍ୟ, ଯୁକ୍ତିତର୍କ କରି ବୁଝି ହୁଏନି ତାକୁ । ବୁଝିହୁଏ ସ୍ୱପ୍ନରେ ସ୍ମୃତିରେ ତା' ସହ ମିଳାମିଶା ଆତଯାତରେ । ସେ ସବୁବେଳେ ଅଦୃଶ୍ୟ

ଅପହଞ୍ଚ ଦିଗ୍‌ବଳୟ ଆରପାଖ । ତାକୁ ଦେଖି ହୁଏନି କି ଧରି ହୁଏନି । ଛୁଇଁ ଦେଲେ ଭାଙ୍ଗିଯାଏ ଅନେଇ ଦେଲେ ଚାଲିଯାଏ ପ୍ରତିଟି ସ୍ୱପ୍ନ ଓ ସ୍ମୃତିରେ ସେ ଅନନ୍ତ ଆକାଶ ଓ ଆକାଶେ ସୂର୍ଯ୍ୟଙ୍କୁ ଧରି ଚାଲିଯାଏ ସେ ରହସ୍ୟମୟ ଆବେଗ ଭିତରକୁ ସବୁ ଦେଇ ସବୁକୁ ଉଜାଡ଼ି ନିଜକୁ ଗୋଟାପଣେ ଭୁଲିଯିବା ପାଇଁ ସୂର୍ଯ୍ୟ ଚନ୍ଦ୍ର ଅନ୍ଧାର ଆଲୁଅ ସବୁକୁ ଯେମିତି ଆପଣାର କରିବାପାଇଁ । ଜୀବନକୁ ନିବିଡ଼ ଭାବରେ ବଞ୍ଚିବାର ଯେଉଁ ମୋହ, ପୁଣି ତା' ଭିତରେ ଅନ୍ୟକୁ ସ୍ନେହ ଶ୍ରଦ୍ଧା କରିବାର ଆତ୍ମିୟ ଆବେଗ, ଯେମିତି ଓଡ଼ିଆ କବିତା କ୍ଷେତ୍ରରେ ନୂଆ ସକାଳର ନୂଆ ଗୁଞ୍ଜରଣର ଗଭୀର ଆତ୍ମ ପ୍ରତ୍ୟୟ । କବି ସୌରୀନ୍ଦ୍ର ବାରିକ୍ ହଳଦୀବସନ୍ତ କବିତାରେ ଯଥାର୍ଥରେ ପ୍ରକାଶ କରିଛନ୍ତି:-

ଆଃ ମୋର ପ୍ରତି ଲୋମକୂପରେ ଯେ
ତୋର ସେଇ ସୁନ୍ଦରିଆ ସୁନାର ପର ଗଜୁରୁଛି
ସେହି ପରରେ ମୁଁ ଛାଇଦେବି ସୂର୍ଯ୍ୟ ଓ ଆକାଶ
ଛାଇଦେବି ମୋ ଅନ୍ଧାରି ଅସ୍ତିତ୍ୱ ।୨୮।

ରହସ୍ୟମୟ ପୃଥିବୀର ସୌନ୍ଦର୍ଯ୍ୟର ରୂପରେଖ ଖୋଜିବାକୁ ଯାଇ ନିଜେ କବି କିମିଆ ହୋଇଯାଇଛନ୍ତି । କବିତା ସଂକଳନଟି ବେଶ୍ ହୃଦୟସ୍ପର୍ଶୀ ।

### (ଟ) ଆମ ଦୁହିଁଙ୍କ କଥା (୨୦୦୧)

'ଆମ ଦୁହିଁଙ୍କ କଥା' କବି ସୌରୀନ୍ଦ୍ର ବାରିକ୍‌ଙ୍କ ଏକାଦଶ କବିତା ସଂକଳନ । ନିବିଡ଼ ଅନୁଭୂତି ଓ ଅନ୍ତରଂଗ ଆତ୍ମିୟତାରୁ କବିତା ଗୁଡ଼ିକର ଜନ୍ମ । 'ଆମ ଦୁହେଁ' କବିତା ସଂକଳନରେ କବି ତାହା ପ୍ରକାଶ କରିନଥିଲେ 'ଆମ ଦୁହିଁଙ୍କ କଥା' କବିତା ସଂକଳନରେ କବି ପ୍ରକାଶ କରିଛନ୍ତି । 'ଆମେ ଦୁହେଁ'ରେ ପକ୍ଷୀରାଜ ଯାହା କହିପାରିନଥିଲା ସେହିକଥା 'ଆମ ଦୁହିଁଙ୍କ କଥା'ରେ କହିବାକୁ ଉଦ୍ୟମ କରିଛି । ସମୟ ସାଥୀରେ ଗଡ଼ି ଗଡ଼ି ଆଉ ଯେଉଁ କେତୋଟି ଅନୁଭୂତି ସେ ସାଉଁଟି ପାରିଛି ସେ ଗୁଡ଼ିକୁ ତା' ନିଜ ଭାଷାରେ ବଖାଣିଛି । ତା' ଅନୁଭୂତି ଗୁଡ଼ିକ ପରସ୍ପର ସମ୍ପର୍କିତ ନୁହଁନ୍ତି । ସେମାନେ ସ୍ୱୟଂସଂପୂର୍ଣ୍ଣ ଅଲଗା ଅଲଗା ଯେମିତି ଦକ୍ଷିଣା ପବନରେ ଝଡ଼ି ପଡୁଥିବା ଗୋଟିଏ ଗୋଟିଏ ପାଚିଲା ପତ୍ର । ନିଜସ୍ୱ ପୂର୍ଣ୍ଣତାରେ ହଳଦୀ ଗରଗର । ଅନ୍ୟ ପତ୍ରସହ କେବଳ ଝଡ଼ି ପଡ଼ିବାର ସ୍ୱରରେ ବନ୍ଧା ବାସ୍ ଏତିକି । ଏମାନେ ପଲ୍ଲବିତ ଗଛର ଆଉ ଅଂଶ ବିଶେଷ ନୁହଁନ୍ତି । ତା'ର ସବୁଜିମା ଅବା ଛାୟା ମଧ୍ୟ ନୁହଁନ୍ତି ଏମାନେ କବିତାରେ କେବଳ ଗୋଟିଏ ଗୋଟିଏ ନିଜସ୍ୱ ଅନୁଭୂତି । ନିଜସ୍ୱ ସ୍ମୃତି । କ୍ରୁର ବିଚ୍ଛିନ୍ନତା ସଂପର୍କହୀନତା । ତେଣୁ ବଖାଣିବାରେ ଧାରାବାହିକତା ନାହିଁ । ପୂର୍ଣ୍ଣତା ବି ନାହିଁ । କେବଳ ପକ୍ଷୀରାଜ ନିଜ ବାଗରେ ଯାହା କହିବାର କଥା କହିଛି ।୨୯।

ଏହି ସଂପର୍କହୀନ ଘଟଣା ଜରିଆରେ ସଂପର୍କର କଥା କହିବାକୁ ଚେଷ୍ଟା କରିଛି ପକ୍ଷୀରାଜ । ତା' ସଂପର୍କ ତ ବଞ୍ଚିବାର ସଂପର୍କ ଅନ୍ୟସହ ଯୋଡ଼ି ହେବାର ସଂପର୍କ ଯାହା

ଯୁକ୍ତିତର୍କକୁ ଉତ୍ତୁରିଯାଏ; ସବୁ ସର୍ତ୍ତକୁ ଭାଙ୍ଗିଦିଏ । ପକ୍ଷୀରାଜ ତ ପ୍ରାଣହୀନ ସାଇକେଲଟିଏ । କିନ୍ତୁ ପ୍ରାଣହୀନ ବସ୍ତୁ ଯେ ଜୀବନ ପାଏ ଆବେଗ ଜରିଆରେ, ଭଲ ପାଇବାର ଉଷ୍ଣତାରେ । ଗ୍ରହଣ କରିବା ଉଦାରତାରେ । ଏହି ଉଦାର ଉଷ୍ଣତା ସବୁ ବସ୍ତୁ ଅବସ୍ଥୁକୁ ଦେଖିବାର ଢ଼ଙ୍ଗଟିକୁ ବଦଳାଇ ଦିଏ । ଜୀବନ ଓ ବଞ୍ଚିବାର ନୂଆ ଅର୍ଥ ଆଣିଦିଏ । ଏହିପରି ଗ୍ରହଣର କଥା ଉଷ୍ମ ସଂପର୍କର କଥା କହିବାକୁ ଚେଷ୍ଟା କରିଛି ପକ୍ଷୀରାଜ ।

କବିତା ସଂକଳନରେ ସ୍ଥାନିତ ଗୋଟିଏ ଦୀର୍ଘ କବିତା ଗୋଟିଏ ବସ୍ତୁ ଉପରେ ଆଧାରିତ ଏବଂ ତାରି ଅନୁଭବର ଖଣ୍ଡିତ ରୂପ ଭିନ୍ନ ଭିନ୍ନ ଦୃଶ୍ୟ ଜରିଆରେ ପରିବେଶିତ । ସେ ଦୃଷ୍ଟିରୁ ଏହାକୁ ଗୋଟିଏ ଦୀର୍ଘ କବିତା ବୋଲିମତବ୍ୟକ୍ତ କରିବାରେକୌଣସି ଅସୁବିଧା ଉପୁଜେ ନାହିଁ । ପ୍ରତ୍ୟେକ କବିତା ଗୋଟିଏ ଗୋଟିଏ ଦୃଶ୍ୟର ସ୍ୱୟଂ ସଂପୂର୍ଣ୍ଣ ବିବରଣୀ ସାମଗ୍ରିକ ଭାବେ କବିତା ଗୁଡ଼ିକରେ ଯେଉଁ ସୂକ୍ଷ୍ମ ଚେତନାଟି ସହିତ ପରିଚୟ ହୁଏ, ତାହାହେଲା ଗୋଟିଏସାଇକେଲ ବା ପକ୍ଷୀରାଜ । ଅର୍ଥାତ୍ ଜଡ଼ ପଦାର୍ଥର ଜୀବନ । ଜଡ଼ ପ୍ରକୃତିକୁ ନେଇ କବିତା ରଚନା କରିବାର ଧାରା ଆଧୁନିକ ଓଡ଼ିଆ ସାହିତ୍ୟରେ ଆକସ୍ମିକ ନୁହେଁ । ଜଡ଼ ପଦାର୍ଥମାନେ ଅନେକକବିଙ୍କ କବିତାରେ ଜୀବନ୍ୟାସ ପାଇଛନ୍ତି । ଜଡ଼ ପ୍ରକୃତିକୁ ନେଇ ରାଧାନାଥ 'ଚିଲିକା' ପରି ଚମତ୍କାର କାବ୍ୟ ଲେଖିଥିବାବେଳେ, ପ୍ରକୃତିରେ ଜୀବନ୍ୟାସ ଆରୋପିତ କରିକବି ଗଙ୍ଗାଧର କାଳଜୟୀ । ବସ୍ତୁତଃ ସେ ସମୟରୁ ଯେ କୌଣସି ଜଡବସ୍ତୁ ବା ପଦାର୍ଥକୁ ଜୀବନାସ ଦେଇ କବିତା ରଚନା କରିବାଏକ ବିଶିଷ୍ଟ କାବ୍ୟ ରୀତି ଭାବେ ଓଡ଼ିଆ ସାହିତ୍ୟରେ ଭିନ୍ନ ଭିନ୍ନ ସମୟରେ କବିତାରେଗୃହୀତ ହୋଇ ଆସିଛି, କୋଣାର୍କ, ଧଉଳି ପାହାଡ଼ଠାରୁ ଆରମ୍ଭ କରି କଲମ, ଟେବୁଲ, ଚୌକି, ଇତ୍ୟାଦି କବିମାନଙ୍କର ଆବେଗମୟ ଅନୁଭବରେ ହୋଇଉଠିଛନ୍ତି ଜୀବନ୍ତ ପ୍ରାଣୀ । କାରଣ ପଥରକୁ ନାରୀ କରିଦେବାର ଆସ୍ପର୍ଦ୍ଧା କରିପାରେ କେବଳ ଜଣେ କବି । ଏହା ଯେ କୌଣସି କାଳର,ଯେ କୌଣସି ପରିସ୍ଥିତିରେ ଯେ କୌଣସି କାଳର, ଯେ କୌଣସି ପରିସ୍ଥିତିରେ ଯେ କୌଣସି କବିର ସୂକ୍ଷ୍ମ ଅବବୋଧ । ଅବଶ୍ୟ ଓଡ଼ିଆ ସାହିତ୍ୟରେ ଯେତେବେଳେ ଏହି ନୂତନ କାବ୍ୟାନୁଭବର ଇନ୍ଦ୍ରଧନୁ ଦେଖିବାକୁ ମିଳିଲା ତା'ର ସ୍ୱରଟି ଥିଲା ବେଶ୍ ରୋମାଣ୍ଟିକ୍ । ରୋମାଣ୍ଟିକ୍ କାବ୍ୟଚେତନାଠାରୁ ଦୂରେଇ ରହି ଯେଉଁମାନେ ବସ୍ତୁ ଉପରେ ଅସ୍ତିତବ ଆରୋପିତ କଲେ, ସେଥିରେ କବିସତ୍ତା ନିଜକୁ ଆବିଷ୍କାର କରିବା ପରିବର୍ତ୍ତେ, ଉନ୍ମୋଚନ କଲେ ଆଉ ଏକ ରହସ୍ୟମୟ ସତ୍ୟର ଅନ୍ଧାର ଏବଂ ସେ ଦୃଷ୍ଟିରୁ ବିଚାର କଲେ କବି ସୌରୀନ୍ଦ୍ର କବିତାରେ ନୂତନ ତତ୍ତ୍ୱଟିଏ ପ୍ରଦାନ କରିଛନ୍ତି । କବିବର ରାଧାନାଥ ରାୟଙ୍କ ଚିଲିକା ଯଦି ତ୍ରିଗୁଣାତ୍ମକ ଶକ୍ତିର ଆଧାର ହୋଇ ପାରିଲା । ସକାଳ ନିଜ ହାତରେ ମୁକ୍ତା ଧରି ଯଦି ଦେବୀ ସୀତାଙ୍କୁ ପଦ ବନ୍ଦନା କରି ପାରିଲା । ବାଂରବାଟୀ ଯଦି ତା'ର ଆତ୍ମକାହାଣୀ କହିପାରିଲା, ତା ହେଲେ ଆମେ ଏମିତି କ'ଣ ନୂତନ ସମ୍ବାଦଟିଏ ଖୋଜିଲେ ପାଇବା 'ଆମ ଦୁହିଁଙ୍କ କଥା' କବିତା ସଂକଳନରେ ।

ତଥାପି ଖୋଜିଲେ ନୂଆକଥାଟିଏ ମିଳେ, ନୂଆ ଦୃଶ୍ୟ ଗୁଡ଼ିଏ ଦିଶନ୍ତି ।

'ଆମ ଦୁହିଁଙ୍କ କଥା' କବିତା ସଂକଳନର ନୂତନତା ହେଲା ଗୋଟିଏ ଜଡ଼ବସ୍ତୁ ତରଫରୁ କବି ପ୍ରତିନିଧିତ୍ୱ କରିଛନ୍ତି । ଅର୍ଥାତ୍ ବସ୍ତୁ ଏବଂ ସତ୍ତା ଭିତରେ ପାର୍ଥକ୍ୟ ରହେ ନାହିଁ, ଏପରିକି ବସ୍ତୁଟି ମଧ୍ୟ ପ୍ରେମ କରେ ନିଜ ପ୍ରେମିକର ଅବର୍ତ୍ତମାନରେ ଶୀହରିତ ହୁଏ । ତାହା ପୁଣି ଗୋଟେ ଦୀର୍ଘ କବିତାରେ, ଭିନ୍ନ ଭିନ୍ନ ପରିବେଶରେ ଏହା ହିଁ ସୌରୀନ୍ଦ୍ରଙ୍କ କବିତାର ମୌଳିକତା, ଯାହା କବି ପ୍ରଥମରୁ ଉଲ୍ଲେଖ କରିଛନ୍ତି । 'ଆମେ ଦୁହେଁ' କବିତାଟି କବିଙ୍କ ସ୍ୱାଗତୋକ୍ତି ନୁହେଁ ? ସାଇକେଲଟିର ସ୍ୱଗତ ଉଚ୍ଚାରଣ କବିତାରେ ସାଇକେଲଟି ପ୍ରଥମ ପୁରୁଷ । ଏହା ହିଁ ତାଙ୍କର ଭାବ ଜଗତର ବସ୍ତୁ ନିରପେକ୍ଷତା ଓ ଇନ୍ଦ୍ରିୟୋତ୍ତର ଅନୁଭବର ଆବେଗମୟତା ।

## ଯେତେସବୁ ବୀଥିକୁ ନେଇ (୨୦୦୩)

'ଯେତେ ସବୁ ବୀଥିକୁ ନେଇ' କବିତା ସଂକଳନ କବି ସୌରୀନ୍ଦ୍ର ବାରିକଙ୍କ ଦ୍ୱାଦଶ କବିତା ସଂକଳନ । ଏକ ଚିତ୍ରିତ ଜଗତର ଚୌହଦୀକୁ କବି ଅନନ୍ୟ ଅନୁଭବରେ କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକରେ ଉପସ୍ଥାପନ କରିଛନ୍ତି । ଶବ୍ଦ କଳ୍ପନା ସଂପର୍କ ଭିତରେ ଥିବା ସର୍ଜନଶୀଳତାର ଅଭେଦ୍ୟ ରହସ୍ୟକୁ ପାଥେୟ କରି କବିତାର ଭାବଜଗତ ବେଶ୍ ଋଦ୍ଧିମନ୍ତ । ଅସଂପୂର୍ଣ୍ଣତା, ଶୂନ୍ୟତା ଓ ସୌନ୍ଦର୍ଯ୍ୟର ଚିରନ୍ତନତା ଭିତରେ ଜୀବନ୍ ମନ୍ତ ଉଚ୍ଚାରଣ ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ । ଏହାର ମୂକସାକ୍ଷୀ କେବଳ ବୀଥି । ଯିଏକି ଏକ କାଳ୍ପନିକ ଚରିତ୍ର । ବୀଥି ଯେମିତି କାବ୍ୟନାୟକର କା' ପରି ମାଧ୍ୟମରେ କବିଙ୍କ ଅନ୍ୱେଷ ଓ ପ୍ରାପ୍ତି, ତୃଷା ଓ ତୃପ୍ତି ସତ ମିଛ ବଞ୍ଚିବାର ସ୍ୱପ୍ନ । ପ୍ରତିଟି ଶବ୍ଦରେ ପ୍ରତିଟି ଛନ୍ଦରେ ସେହି ଗୁଣୁଗୁଣୁ ନୀରବତାର ଛାଇ, ନିହାତି ସରଳ ଆଉ ସାଧାରଣ, ସ୍ନେହ କାଙ୍ଗାଳ ମାନସିକତାଟେ ଯେମିତି ସବୁ ପାଇଯିବାର ସ୍ୱର କବିତା 'ସଂକଳନଟିରେ' ଦେଖିବାକୁ ମିଳେ । ସେହି ନିରବତା, ସେହି ସ୍ଥିରତା ମାତ୍ର ସଂଭାବନାର ସ୍ୱପ୍ନ ପ୍ରଚୁର । ସେହି ବର୍ଷାଭିଜା ମାଟିର ଗନ୍ଧ ଯେମିତି ନିବିଡ଼ ପ୍ରତିଶ୍ରୁତି । ହଜି ଯାଇଥିବା ଲୋକଟି ଯେମିତି ମିଳିଯାଇଛି ଏକାନ୍ତରେ ; ପ୍ରାଣର ପ୍ରତିଟି ପୁଲକରେ ସମସ୍ତ ପ୍ରକାର ବାଧାବନ୍ଧନକୁ ଅତିକ୍ରମ କରି ବନ୍ଦୀର କାରାଗାର ଭିତରୁ ଆମକୁ ଶୁଣାଇଛନ୍ତି ମୁକ୍ତିର ସଂଗୀତ ।

ବୀଥିକୁ ନେଇ କବିଙ୍କ କାବ୍ୟ ସଂସାର । ତା' ସହ ଭଲମନ୍ଦ ସୁଖଦୁଃଖ କଥାବାର୍ତ୍ତା ସବୁ କିଛି ତାକୁ ନେଇ ଘର ଦ୍ୱାର ସବୁ ସ୍ନେହ ମମତା ସଂପର୍କର ଡୋର ବୀଥି କବିଙ୍କ କାବ୍ୟଜଗତର ରହସ୍ୟମୟ ଶୂନ୍ୟତା । ତାକୁ କେନ୍ଦ୍ରକରି କବିତା ଗୁଡ଼ିକର ଆତ୍ମିକ ସଂପର୍କ । କବିଙ୍କ ଚେତନାକୁ ସତ୍ୟର ସର୍ଜନଶୀଳ ରୂପ ଭିତରେ ପରିପୁଷ୍ଟ କରିଛି । ବୀଥି କଳ୍ପନାର ପ୍ରତ୍ୟୟର ଶକ୍ତି ଭିତରେ ଶବ୍ଦର ନିରବ ସଂପର୍କ ଭିତରେ ବୀଥି ଏକ ରହସ୍ୟମୟୀ ସତ୍ୟର ଅନ୍ୱେଷା । ଜୀବନର ସତ୍ୟ ରହସ୍ୟ; ଏହି ରହସ୍ୟରଗୁଢ଼ ସତ୍ୟକୁ ଭେଦ କରିବା ଯେମିତି ବୀଥିର ଅଜଣାପଣ । ଆଉ ଏହି ଅଜଣାପଣକୁ ଘନିଷ୍ଠ ଭାବରେ ଆନ୍ତରିକ

କରିବାର ପ୍ରୟାସ ହିଁ ଅଜଣା ପଣ । ଏହି ଆପଣା ପଣ ଭିତରେ କବିଙ୍କ ସ୍ୱପ୍ନ ଆଉ ସ୍ମୃତି, ପ୍ରେମ ଆଉ ଜୀବନ । ବୀଥି ଯେମିତି କବିଙ୍କ ସୃଷ୍ଟି ରହସ୍ୟର କେବଳ ଅବିକଳ ପ୍ରତିଛବି ନୁହଁ; କବି ସୃଷ୍ଟିର ସାରସ୍ୱତ ଜଗତ । ସେଇଠି ତାଙ୍କର ପ୍ରାପ୍ତି; ସେଇଠି ତାଙ୍କର ପ୍ରଶାନ୍ତି । ସେହି ତାଙ୍କର ଅତୀତ ବର୍ତ୍ତମାନ ଭବିଷ୍ୟତ । କିଏ ସେହି ବୀଥି ? କାହା ପାଇଁ କାବ୍ୟନାୟକ ଏତେ ବ୍ୟାକୁଳ ? କାବ୍ୟ ନାୟକର ସୃଷ୍ଟି ଚେତନା ଭିତରେସେ ଅନ୍ତଃସ୍ୱରଟି କ'ଣ ? ଏହା ଯେମିତି ଏକ ଅପହଁଚ ଅସହାୟତା, ପ୍ରାପ୍ତିର ତୃପ୍ତି ନୁହେଁ, ଅନ୍ୱେଷାର ଉତ୍କଣ୍ଠା । ପ୍ରତି କବିତାରେ କିନ୍ତୁ ପାଇବାର ଆଶା । କବି ସୌରୀନ୍ଦ୍ର ବାରିକ୍ ଯେତେ ସବୁ ବୀଥିକୁ ନେଇ କବିତାରେ ପ୍ରକାଶ କରିଛନ୍ତି:-

ପ୍ରତି କବିତାରେ କିନ୍ତୁ ପାଇବାର ଆଶା
ସେଇ ଆଶାରେ ସଫଳ ବିଫଳତାକୁ
ସହିବାର ଦମ୍ଭ ଧ୍ୱନୀ
ପୁଣି ନୂଆ ଭାବେ ମୋତେ ପାଇବାକୁ
ଶବ୍ଦଙ୍କର ନୂଆ ମେଳ, ନୂଆ ଜୀବନ ।୩୦।

ଆଶାରେ ଆକାଂକ୍ଷାରେ, ସ୍ୱପ୍ନରେ ସ୍ମୃତିରେ ପୁଣି ପ୍ରତୀକ୍ଷାରେ ଜୀବନ ହୁଏ ସରସ ସୁନ୍ଦର । କବିତାକୁ ଗଢ଼ି ଭାଙ୍ଗି ପୁଣି ସଜାଏ କବି । ଏଇ ସର୍ଜନାତ୍ମକ ଚେତନା ଭିତରେ କବି ଆପଣାର ଆବେଗ ଦଗ୍‌ଧ ମୁହୂର୍ତ୍ତଗୁଡ଼ିକ କେବଳ ଧରି ରଖେନି ତା'ରି ରହସ୍ୟର ସଂପର୍କକୁ ପହଞ୍ଚାଇ ଦିଏ ପାଠକ ପାଖରେ ସେହି କାବ୍ୟାନୁଭବର ନିବିଡ଼ତାରେ, ଗୁଣୁଗୁଣୁ ଛନ୍ଦ ଆଉ ଧ୍ୱନୀର ଅନ୍ଧାର ଭିତରେ କାବ୍ୟନାୟକ ଚିହ୍ନାଇ ଦିଏ ଏକ ଅମଡା ରାସ୍ତା, ଯେଉଁଠି ଆଗରୁ କେହି କେବେ ପହଞ୍ଚିନଥାଏ । ଏ ରାସ୍ତା ଖାଲ, ଢ଼ିପ, ଉଠାଣି, ଗଡାଣି, ବଙ୍କା, ସିଧା, କଚ୍ଚା, ପକ୍‌କା, ଗଳି ଅଂଧାର । ସତ ମିଛ ଜୀବନର ଘଡ଼ିଏ ସଂପର୍କର ନୂଆ ନୂଆ ଦୃଶ୍ୟ ଛଡା ଆଉ କ'ଣ ହୋଇପାରେ ? ପ୍ରକୃତରେ କେଉଁଠି ଥାଏ କବିତା ଶବ୍ଦର ଅର୍ଥରେ ନା ଅର୍ଥର ଅନ୍ଧାରରେ ? କବିତାର ମହୁ କିନ୍ତୁ ଖୁବ୍ ମିଠା ଆଶା ଆଉ ଆଶଙ୍କାର ସମ୍ଭାବନାରେ କବିତା ରସୋତ୍ତୀର୍ଣ୍ଣ ।

କବିତା ସଂକଳନରେ ସ୍ଥାନିତ ବିଭିନ୍ନ ଭାବଭୂମିର କବିତାଗୁଡ଼ିକ ସରସ ସୁନ୍ଦର ।

## (କ) କବି ସମାଲୋଚକ ସୌରୀନ୍ଦ୍ର

କବି କର୍ମର ଦୁରୂହକର୍ମ ମଧ୍ୟରେ ସମାଲୋଚକ ହେଉଛି ନିଃସଂଗ ପତାକାଧାରୀ । ସେ ସ୍ରଷ୍ଟାର ଚିନ୍ତା ଚେତନାକୁ ଲାଳନ ପାଳନ କରେ, ତାହାର ଆଧିବ୍ୟାଧିର ସମ୍ବାଦ ସ୍ରଷ୍ଟାଙ୍କ ନିକଟରେ ପହଞ୍ଚାଇ ଦିଏ, ଅନସୂୟ ଭାବରେ । ସୃଷ୍ଟିର ସମୃଦ୍ଧ ଓ ସ୍ୱାସ୍ଥ୍ୟବାନ ରୂପ ଦେଖିବାର ଏକମାତ୍ର କାମନା ବ୍ୟତୀତ ତାହା ମନରେ ଅନ୍ୟ କୌଣସି ଚିନ୍ତା ନଥାଏ । ଅପରର ସୃଷ୍ଟିକୁ ଆପଣାର କରିନେବା, ନିଃସ୍ୱାର୍ଥପର ଭାବରେ ତା' ଦେହରୁ ଧୂଳି ଝାଡ଼ି ଦେଇ ତାକୁ କୋଳେଇ ନେବାର ଉଦାରତା କେବଳ ସମାଲୋଚକର ହିଁ

ଥାଏ । କବି ଏବଂ ସମାଲୋଚକର ମାନସିକ ଏକାତ୍ମତା ମଧ୍ୟରେ ହିଁ କାବ୍ୟ ସ୍ୱରୂପ ବର୍ଣ୍ଣନାର ବୀଜ ନିହିତ । କାବ୍ୟ ଏକ ସାଧନା ସାପେକ୍ଷ କର୍ମ ।୩୧।

ସୃଷ୍ଟି ଓ ତା'ର ସ୍ରଷ୍ଟା ସହିତ ସମୀକ୍ଷା ବା ସମୀକ୍ଷକ ଅତି ଅନ୍ତରଂଗ ଭାବରେ ସଂପୃକ୍ତ; ବରଂ କହିବାକୁ ଗଲେ ସମୀକ୍ଷା ବା ସମୀକ୍ଷକ ନଥିଲେ ସୃଷ୍ଟି ତା'ର ଗୌରବ ଓ ସୌରଭ ବିସ୍ତାରରୁ ସଂପୂର୍ଣ୍ଣ ଭାବରେ ବଞ୍ଚିତ ହୋଇଥାନ୍ତା । ସ୍ରଷ୍ଟା ଭଳି ସମାଲୋଚକ ମଧ୍ୟ ପ୍ରତିଭା ଗୁଣ ସଂପନ୍ନ । ଆଳଙ୍କାରିକ ରାଜଶେଖର ତେଣୁ ସ୍ରଷ୍ଟା ଓ ସମାଲୋଚକର ପ୍ରତିଭାକୁ ଯଥାକ୍ରମେ କାରୟତ୍ରୀ ଓ ଭାବୟତ୍ରୀ ପ୍ରତିଭା ନାମରେ ଅଭିହିତ କରିଛନ୍ତି । ସେ କହିଛନ୍ତି - ଭାବୁକ ବା ସମାଲୋଚକ କବିର ପ୍ରଭୁ, ମିତ୍ର, ମନ୍ତ୍ରଣାଦାତା, ଶିଷ୍ୟ, ଆଚାର୍ଯ୍ୟ ଅର୍ଥାତ୍ ସବୁକିଛି ସେ ହୋଇପାରନ୍ତି । ଏପରିକି ବିଚିତ୍ର ସମ୍ବନ୍ଧ ରହିଛି ଯେ ଭାବୁକ କବି ନିକଟରେ ତାହା ନହୋଇ ପାରେ ? ଯାହାର ରଚନା ସମାଲୋଚକ ମାନଙ୍କ ଦ୍ୱାରାଦଶ ଦିଗରେ ଅର୍ଥାତ ସର୍ବତ୍ର ପ୍ରଚାରିତ ନହୁଏ, ଯାହାର ରଚନା କେବଳ କବିର ମାନସଲୋକରେ ସୀମାବଦ୍ଧ, ସେହି କବିର କବିତାରେ କି ପ୍ରୟୋଜନ ? ଅର୍ଥାତ ସେହି କବିର କାବ୍ୟ ରଚନା ନିରର୍ଥକ ।୩୨।

ଶ୍ଳୋକରେ ଅଛି :-

ସ୍ୱାମୀ ମିତ୍ରଂନ ମନ୍ତ୍ରୀ ଚ ଶିଷ୍ୟଶ୍ଚାଚାର୍ଯ୍ୟ ଏବଚ ।<br>
କବେର୍ଭବତି ହ୍ୟ ଚିତ୍ରଂ କିଂ ହି ତଦ୍ ଯନ୍ନଭାବକଃ ॥<br>
କାବ୍ୟେନ କିଂ କବେସ୍ତସ୍ୟ ତନ୍ମନୋ ମାତ୍ର ବୃତ୍ତିନା<br>
ନ୍ୟୟନ୍ତେ ଭାବ କୈର୍ଯସ୍ୟ ନ ନିବନ୍ଧା ଦିଶୋଦଶ ॥

ସୃଷ୍ଟି ଓ ତାର ସ୍ରଷ୍ଟା ଏବଂ ସୃଷ୍ଟିର ରସ ଆସ୍ୱଦନକାରୀ ମଧ୍ୟରେ ସମୀକ୍ଷକ କେବଳ ଏକ ସଂଯୋଗର ସେତୁ ନୁହେଁ, ସେ ହେଉଛି ଏକ ବିଶ୍ୱସ୍ତ ମଧ୍ୟସ୍ଥ ଓ ଭାବରତ୍ନର ଚିହ୍ନରା ଗ୍ରାହକ । ଏ କୋଽହଂ ବହୁସ୍ୟାମ୍ - ଏହା ଯେପରି ବିଶ୍ୱ ସ୍ରଷ୍ଟାଙ୍କର କାମନା ଏବଂ ତାଙ୍କର କାମନା ଓ ତପସ୍ୟାରୁ ବିଚିତ୍ର ବିଶ୍ୱର ଜନ୍ମ, ଠିକ୍ ସେହିପରି ପ୍ରତ୍ୟେକ କବି, ପ୍ରତ୍ୟେକ ସ୍ରଷ୍ଟା ହୃଦୟ ଚାହେଁ ବହୁପ୍ରାଣ, ବହୁ ହୃଦୟ ମଧ୍ୟରେ ଆପଣାକୁ ଅନୁପ୍ରବିଷ୍ଟ କରିବା ପାଇଁ ଅଗଣିତ ଜନମାନସରେ ରସବୀଜ ବପନ କରି ସୌହାର୍ଦ୍ଦ୍ୟ ଓ ଆତ୍ମୀୟତା ଅର୍ଜନ କରିବା ପାଇଁ । ସେଥିପାଇଁ କବିଗୁରୁ ଗେଟେ 'ଅୟୁତ ପାଠକ' ଉପରେ ଏବଂ ହୁଇଟ୍ ମ୍ୟାନ୍ 'Great Audience' ଉପରେ ଗୁରୁତ୍ୱ ଆରୋପ କଲା ଭଳି କବି ଅଭିମନ୍ୟୁ - ବିବେକି ଗ୍ରାହକ ଉପରେ ଭରସା ରଖି କହିଛନ୍ତି - ବିବେକୀ ଗ୍ରାହକ କୋଟି କବି ଆୟୁଘେନି / ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନି କିମ୍ବା କୋଟି କବି ଆୟୁ ପାଉ / ସଂସାରେ ଗ୍ରାହକ ଥାଉ ଯେ କବି ଅର୍ଥୀ, ପଣ୍ଡିତ, ସୁହୃଦ / ରସିକ ସେହି ଘେନିବ ଏ ଛାନ୍ଦ । ଉପେନ୍ଦ୍ର ଭଞ୍ଜଙ୍କର ଏହି ପଙ୍‌କ୍ତି ଦୁଇଟି ମଧ୍ୟରେ ସାଲୋଚକର ସର୍ଜନଶୀଳ ପ୍ରତିଭା, ପାଣ୍ଡିତ୍ୟ, ରସିକତା ଓ ସହୃଦୟତା ପ୍ରଭୃତି ଗୁଣାବଳୀ କିପରି ଅଭିବ୍ୟକ୍ତି ଲାଭ କରିଛି ତାହା ସହଜରେ ଅନୁଭବ୍ୟ ।୩୩।

ସମାଲୋଚକ ମୁଖ୍ୟତଃ ଜଣେ ବିଦଗ୍ଧ ପାଠକ; କାଳିଦାସଙ୍କ ପାର୍ବତୀ ଛଦ୍ମବେଶୀ ଶିବଙ୍କ ଠାରୁ ସକଳ ନିନ୍ଦା ଶୁଣିବା ପରେ ପ୍ରତ୍ୟୁତ୍ତରରେ ଯେପରି କହିଥିଲେ ମାତ୍ର ଭାବୈକରସଂ ମନଃସ୍ଥିତମ । ଠିକ୍ ସେହିପରି ସୃଷ୍ଟିର ଅନ୍ତର୍ନିହିତ ଭାବରସ ନିକଟରେ ହିଁ ପାଠକ ବା ସମାଲୋଚକର ମନ ସ୍ଥିର ନିଶ୍ଚଳ ରହି ସୌନ୍ଦର୍ଯ୍ୟ ରସ ପାନକରିବାକୁ ସମର୍ଥ ହୋଇଥାଏ। ମହାକବି ଭବଭୂତ ତାଙ୍କ କାବ୍ୟ ସୃଷ୍ଟିର ରସଜ୍ଞ ପାଠକ ସମ୍ବନ୍ଧରେ ଆଶାପୋଷଣ କରି କହିଥିଲେ – ଉତ୍ପତ୍ସ୍ୟତେ ମମ କୋଽପି ସମାନ ଧର୍ମା / କାଲୋହ୍ୟୟଂ ନିରବଧି ବିପୁଳାଚ ପୃଥ୍ୱୀ (ମାଳତୀ ମାଧବ) ।

ଯୁଗରୁଚିର ପରିବର୍ତ୍ତନ ସହିତ ସାରସ୍ୱତ ସୃଷ୍ଟିର ଧାରା ବା ମୋଡ଼ ହୁଏ ପରିବର୍ତ୍ତିତ ଏବଂ ଶୈଳୀର ନୂତନତା ମଧ୍ୟ ହୁଏ ପ୍ରକଟିତ । ତେଣୁ ପ୍ରକୃତ ସମାଲୋଚକ ପାଠକ ରୁଚିର ସଂସ୍କାର ସାଧନ କରିବା ସଙ୍ଗେସଙ୍ଗେ ରସବୋଧ ଓ ମାନବିକ ମୂଲ୍ୟବୋଧର ମହତ୍ତ୍ୱ ପ୍ରଦର୍ଶନ କରିଥାଏ ।୩୪।

ସତ୍ ସମାଲୋଚନା ପାଇଁ ଲୋଡ଼ା ନିର୍ଭିକ ବ୍ୟକ୍ତିତ୍ୱ, ଗଭୀର ଅଧ୍ୟୟନ, ନିର୍ବ୍ୟକ୍ତିକ ଦୃଷ୍ଟିଭଙ୍ଗୀ, ସୂକ୍ଷ୍ମ ଓ ସ୍ୱଚ୍ଛ ନନ୍ଦନ ପ୍ରବୃତ୍ତି ସହିତ ରସ ଗ୍ରହଣ କ୍ଷମ ସ୍ରଷ୍ଟାର ଅନ୍ତର୍ଭେଦୀ ତୃତୀୟ ଚକ୍ଷୁ, ଯାହାର ଅଭାବରେ ସକଳ ପାଣ୍ଡିତ୍ୟ ସତ୍ତ୍ୱେ ସମାଲୋଚନା ଶୁଷ୍କ କିତାବୀ ଶାସ୍ତ୍ରରେ ପରିଣତ ହୋଇଥାଏ । ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଆଜି ବିଭିନ୍ନ ଧାରା ବା ପଦ୍ଧତିର ପ୍ରଚଳନ ଦେଖାଯାଏ । କିନ୍ତୁ ସୃଷ୍ଟିଧର୍ମୀ ବା ସର୍ଜନଶୀଳ ସମୀକ୍ଷା ସାହିତ୍ୟ ଜଗତରେ ସର୍ବାଧିକ ସମାଦୃତ । ଯେଉଁ କବି ସମାଲୋଚକ (Poet Critic) କାବ୍ୟ ସୃଷ୍ଟି ପାଇଁ କବିତା ସମାଲୋଚନା କ୍ଷେତ୍ରରେ ଅବତୀର୍ଣ୍ଣ, ତାଙ୍କର ସମାଲୋଚନା ସାରସ୍ୱତ ଗୁଣ ସଂପନ୍ନ ଓ ରସଧର୍ମୀ ହୋଇଥିବାରୁ ଯୁଗ ପରିବର୍ତ୍ତନ ସହିତ ସମାଲୋଚନାର ଧାରା ବା ଆଭିମୁଖ୍ୟ ପରିବର୍ତ୍ତିତ ହେଲେ ମଧ୍ୟ କବି ସମାଲୋଚକର ଆଲୋଚନା ଅଳ୍ପାୟୁ ନହୋଇ ତା'ର ଅନ୍ତର୍ନିହିତ ରସବୋଧ, ସୌନ୍ଦର୍ଯ୍ୟବୋଧ ଓ ସୃଜନଶୀଳ ପାଇଁ ହୁଏ ଚିରଞ୍ଜୀବୀ ଓ ଦୀର୍ଘାୟୁ ଏବଂ ସବୁ କାଳର ପାଠକପାଇଁ ତା' ମଧ୍ୟରେ ନିହିତ ଥାଏ ରସ ଆସ୍ୱାଦନ ଓ ଆତ୍ମ ସମୀକ୍ଷାର ସାମଗ୍ରୀ ।୩୫।

ପାଶ୍ଚାତ୍ୟ କବି ମନୀଷୀ ଟି. ଏସ୍. ଇଲିୟଟ୍ ତାଙ୍କ ମହନୀୟ ଲେଖନୀସୃତ ବିଶ୍ୱ ବିଶ୍ରୁତ ପ୍ରବନ୍ଧ 'The Perfect Critic' ପ୍ରବନ୍ଧରେ କବି ସମାଲୋଚକର ଆଲୋଚନାକୁ 'Genuine Criticism' (ସଚ୍ଚା ବା ଅସଲ) ନାମରେ ଅଭିହିତ କରି ତା'ର କାରଣ ସ୍ୱରୂପ ପ୍ରକାଶ କରିଛନ୍ତି 'Criticising poetry in order to create poetry' ହେଉଛି ତା'ର ମୌଳିକ ଧର୍ମ ବା ରହସ୍ୟ । କବି ସମାଲୋଚକ ମାନଙ୍କର ଦୃଷ୍ଟାନ୍ତ ଦେବାକୁ ଯାଇ ଏଲିୟଟ୍ ଦାନ୍ତେ ଗ୍ୟେଟେ ଓ କଲେରିଜ୍ ପ୍ରମୁଖ ସାରସ୍ୱତ ସ୍ରଷ୍ଟା ମାନଙ୍କର ଅବତାରଣା କରିଛନ୍ତି । 'Divine comedy'ର ସ୍ରଷ୍ଟା ପୂର୍ବରୁ ଦାନ୍ତେ ରଚନା କରିଥିଲେ 'De Vulgari Eloquentia' ପାଉଷ୍ଟର (Foust)ର ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗର

ରଚନା (ପ୍ରାୟ ଚାଳିଶ ବର୍ଷର ବ୍ୟବଧାନ ମଧ୍ୟରେ ଗ୍ୟେଟେ ରଚନା କରିଥିଲେ Simple imitation Manner and Style ଏବଂ The Rime of Ancient Marriner' ଏହାର କିଛି ବର୍ଷ ପରେ କୋଲେରିଜ୍ ରଚନା କରିଥିଲେ Biographia literaria। ସଚ୍ଚା ସମାଲୋଚକର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ଆନାତୋଲା ଫ୍ରାନସ (Anatola France) ସେଥିପାଇଁ ବୋଧହୁଏ କହିଥିଲେ - The good critic is he who relates the adventures of his soul among master pieces. ଏଇଭଳି ମହତ୍ କବି ସମାଲୋଚକର ଦୁଇଜଣ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛନ୍ତି ସ୍ୱୟଂ କବି ଟି.ଏସ. ଇଲିୟଟ୍ ଏବଂ ଭାରତୀୟ କବି ବିଶ୍ୱକବି ରବୀନ୍ଦ୍ରନାଥ। ଏମାନଙ୍କର ସମୀକ୍ଷା ଓ ମୂଲ୍ୟାୟନରେ ପ୍ରାଚୀନ ଓ ଅତୀତର ସାହିତ୍ୟ ପାଇଛି ନୂତନ ଜୀବନ୍ୟାସ ଓ ଚିରନ୍ତନ ମୂଲ୍ୟବୋଧ। ଏଇ କାବ୍ୟଧର୍ମୀ ଓ ସୃଜନଶୀଳ ସମୀକ୍ଷା ଏବଂକବି ସମାଲୋଚକ ମାନଙ୍କର ମହତ୍ୱ ବା ଗୁରୁତ୍ୱ କେବଳ ଆଧୁନିକ କାଳରେ ଯେ ଉପଲବ୍ଧ ହେଉଛି ତା' ନୁହେଁ ନବମ ଦଶମ ଶତାବ୍ଦୀରେ ରଚିତ 'କାବ୍ୟ ମୀମାଂସା' ଗ୍ରନ୍ଥରେ ଏ ସଂକ୍ରାନ୍ତରେ ଏକ ପ୍ରଚଳିତ ଅଭିମତକୁ ଉଦ୍ଧାର କରି ରାଜଶେଖର ପ୍ରକାଶ କରିଛନ୍ତି :-

'ପ୍ରତିଭା ତାରତମ୍ୟେନ ପ୍ରତିଷ୍ଠା ଭୁବି ଭୁରିଧା
ଭାବବସ୍ତୁ କବି ପ୍ରାୟୋ ନ ଭବନ୍ତ୍ୟଧମାଂଦଶାମ'।

ଅର୍ଥାତ୍ ପ୍ରତିଭାର ତାରତମ୍ୟ ହେତୁ ପୃଥିବୀରେ ବହୁ ବିଚିତ୍ର ପ୍ରତିଷ୍ଠା ସମ୍ପନ୍ନ ହୋଇଥାଏ। ଯେଉଁ ବ୍ୟକ୍ତି ଏକଧାରରେ କବି ଓ ସମାଲୋଚକ, ସେ ପ୍ରାୟ ନିକୃଷ୍ଟ ଶୋଚନୀୟ ଦଶାରେ ପତିତ ହୋଇ ନଥାନ୍ତି। ଅର୍ଥାତ୍ ନିଜେ ରାଜଶେଖର ଏହି ଅଭିମତର ପକ୍ଷପାତି ନଥିଲେ ଏବଂ କାଳିଦାସଙ୍କର ମଧ୍ୟ ଏହି ଅଭିମତ ପ୍ରତି ସମର୍ଥନ ନଥିଲା ବୋଲି ରାଜଶେଖର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ କହିଛନ୍ତି ଯେ କବି ଏବଂ ସମାଲୋଚକ ଉଭୟଙ୍କର ପ୍ରତିଭା ହେଉଛି ସ୍ୱତନ୍ତ୍ର ଓ ଭିନ୍ନଧର୍ମୀ। ରାଜଶେଖରଙ୍କ ମତରେ ସମାଲୋଚକ ହେଉଛନ୍ତି ଚାରିଶ୍ରେଣୀର ଏବଂ ସେମାନେ ହେଉଛନ୍ତି 'ଅରୋଚକୀ' ସତୃଣ୍ୟାଭ୍ୟବହାରୀ, ମତ୍ସରୀ ଓ ତତ୍ତ୍ୱଭିନିବେଶୀ। ତତ୍ତ୍ୱନିବେଶୀ ସମାଲୋଚକ ଯଥାର୍ଥରେ ଭାବୟତ୍ରୀ ପ୍ରତିଭାର ଅଧିକାରୀ ଏବଂ କବିସୃଷ୍ଟି ମଧ୍ୟରେ ପରିସ୍ଫୁଟ ଜୀବନ ଓ ଜଗତ ସମ୍ପର୍କିତ ବକ୍ତବ୍ୟର ସେ ହେଉଛନ୍ତି ପ୍ରକୃତ ବିଚାରକ ଓ ରସାସ୍ୱଦନକାରୀ। ନୈତିକତା ଦୃଷ୍ଟିରୁ ସେ ଯେପରି ସତ୍ୟନିଷ୍ଠ ଓ ପକ୍ଷପାତି ଶୂନ୍ୟ, ସତ୍ୟ ପ୍ରକାଶନରେ ମଧ୍ୟ ସେହିପରି ସାହସୀ ଓ ଅକୁତୋଭୟ। ଜନ୍ ଗଲସ୍‌ୱର୍ଥିଙ୍କ ଭାଷାରେ Acritic must be emotionally alive in every fibre, intellectually capable and skillful in essential ligic and then morally very honest ?

ତେଣୁ ଜଣେ ଯୋଗ୍ୟ ଓ ଯଥାର୍ଥ ସମାଲୋଚକ ଆମର ସମ୍ବେଦନ ଓ ସହାନୁଭୂତିଶୀଳ ଚେତନାକୁ କରେ ସୁବିସ୍ତୀର୍ଣ୍ଣ ଓ ସଂପ୍ରସାରିତ। ଲରେନ୍ସ (D.H.

Lawrence)ଙ୍କ ଭାଷାରେ It can inform and lead into new places the flow of our sympathetic consciousness. ମାତ୍ର ଯେଉଁମାନେ ମତ୍ସରୀ ସମାଲୋଚକ ସେମାନଙ୍କ କଥାର ନିକୃଷ୍ଟ ସୃଷ୍ଟି ଉତ୍କୃଷ୍ଟ ସୃଷ୍ଟିରୂପେ ଏବଂ ଉତ୍ତମ ସୃଷ୍ଟି ଅଧମ ସୃଷ୍ଟି ରୂପେ ବିବେଚିତ ଓ ପ୍ରତିଭାତ ହୋଇଥାଏ । ଏମାନଙ୍କଠୁ ନିରପେକ୍ଷ ଓ ବିଶୁଦ୍ଧ ସମୀକ୍ଷା ଆଶା କରିବାଦୂରାଶା ।୩୬।

## (ଖ) ସର୍ଜନଶୀଳ ସମୀକ୍ଷା ଓ ଧମାଲୋଚନାର ଦିଗ ଦିଗନ୍ତ

କବି ଯେତେ ବେଳେ ସୃଷ୍ଟି କରି ଚାଲେ ସେସବୁ ସର୍ତ୍ତକୁ ମାନନ୍ତୁ କି ନମାନନ୍ତୁ ମାତ୍ର ଗୋଟିଏ ସର୍ତ୍ତକୁ ସେମାନି ସୃଷ୍ଟି କରିଚାଲେ, ତାହା ହେଉଛି ସେତେବେଳେ ସେକେବଳ ମାତ୍ର ମନୁଷ୍ୟ । ଯେ ମନୁଷ୍ୟ ମନୁଷ୍ୟଚିତ ଜ୍ଞାନ ବିଶିଷ୍ଟ, ସେଆଇନିଜ୍ଞ ନୁହେଁ, ଚିକିତ୍ସକ, ନାବିକ, ଜ୍ୟୋତିର୍ବିଦ ଅଥବା ବୈଜ୍ଞାନିକ ନୁହେଁ, କେବଳ ମନୁଷ୍ୟ ମାତ୍ର । ଯାହାଙ୍କ ଉପରେ ନ୍ୟସ୍ତ ହୋଇଛି ସଦ୍ୟ ଆନନ୍ଦ ଦାନ କରିବାର ପ୍ରୟୋଜନୀୟତା ।

କବି ସୌରୀନ୍ଦ୍ର ବାରିକ୍‌ଙ୍କ ସମାଲୋଚନା ଦିଗଟି ଖୁବ୍ ବ୍ୟାପକ, ସତ୍ୟଶୀଳ ଓ ନିରପେକ୍ଷ । ସର୍ଜନଶୀଳ ସମୀକ୍ଷା ତାଙ୍କ ସମୀକ୍ଷାର ପ୍ରାଣ । କବିତା ରଚନା ପରି ତାଙ୍କ ସମାଲୋଚନାରେମୌଳିକତା ପରିଲକ୍ଷିତ ହୁଏ । କବିଙ୍କ ସମାଲୋଚନା ଗ୍ରନ୍ଥ ଗୁଡ଼ିକ ଓଡ଼ିଆ ସାହିତ୍ୟକୁ ବିଶେଷ ଭାବରେ ପରିପୁଷ୍ଟ କରିଛି କହିଲେ ବାର୍ତ୍ତାର ଅପଳାପ ହେବନାହିଁ । ଅନନ୍ୟ ଅଧ୍ୟୟନ, ମନନ ଓ ଚିନ୍ତନ ତାଙ୍କ ସମାଲୋଚନା ସାହିତ୍ୟକୁ କରିଛି ରସୋତ୍ତୀର୍ଣ୍ଣ ।

'ଅନ୍ୱେଷାର ସ୍ୱର' କବି ସମାଲୋଚକ ସୌରୀନ୍ଦ୍ର ବାରିକ୍‌ଙ୍କ ଓଡ଼ିଆ ସମାଲୋଚନା ସାହିତ୍ୟକୁ ଅନନ୍ୟ ଅର୍ଘ୍ୟ । ଆଧୁନିକ ଓଡ଼ିଆ କବିତାର ବିଭିନ୍ନ ଦିଗ ଉପରେ ଆଲୋଚିତ ସମୀକ୍ଷା ଗ୍ରନ୍ଥଟି ସର୍ଜନଶୀଳ ସମୀକ୍ଷା ଅର୍ନ୍ତଭୁକ୍ତ । ଆଦୁନିକ ଓଡ଼ିଆ କବିତାର ଉତ୍ପତ୍ତି କ୍ରମ ବିକାଶ ଉପରେ ଆଲୋଚନା କରିବା ସଙ୍ଗେ ସଙ୍ଗେ କବିତାର ସ୍ୱର ଓ ସ୍ୱରୂପ ସଂପର୍କରେ ଗଭୀର ଭାବରେ ବିସ୍ତୃତ ବିବରଣୀ ସମାଲୋଚକ ପ୍ରଦାନ କରିଛନ୍ତି । ଆଧନୁନିକ ଓଡ଼ିଆ କବିତାର ଆଙ୍ଗୀକ ଓ ଆତ୍ମିକ ଉପରେମୌଳିକ ଦୃଷ୍ଟିଭଙ୍ଗୀକୁ ସୌରୀନ୍ଦ୍ର ବାରିକ ସୁନ୍ଦର ଭାବରେ 'ଅନ୍ୱେଷାର ସ୍ୱର' ପ୍ରବନ୍ଧ ସଂକଳନରେ ପ୍ରକାଶ କରିଛନ୍ତି । ଅତୀତ ଓ ବର୍ତ୍ତମାନ ପରିପ୍ରେକ୍ଷୀରେ ଓଡ଼ିଆ କବିତାର ମାନଚିତ୍ରକୁ ବିଭିନ୍ନ ଦୃଷ୍ଟିକୋଣରୁ ପ୍ରାବନ୍ଧିକ ପ୍ରବନ୍ଧରେ ବିଚାରକରିଛନ୍ତି । ଅନ୍ୱେଷାର ସ୍ୱର ପ୍ରବନ୍ଧ ସଂକଳନରେ ସ୍ଥାନିତ ସତର ଗୋଟି ପ୍ରବନ୍ଧ ପ୍ରାବନ୍ଧିକଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ପ୍ରତିଭା ଦୀପ୍ତ ପ୍ରଜ୍ଞାର ପରିଚୟ ପ୍ରଦାନ କରେ । ସରଳ ଓ ସାବଲୀଳ ଶବ୍ଦ ପ୍ରୟୋଗ କରି ପ୍ରାବନ୍ଧିକ ପ୍ରକାଶ କରିଛନ୍ତି;- କବିତା ଏକ କଳା । ସେ ସିଧାସଳଖ କିଛି କହେନି । କବିତା ପ୍ରଚାର ନୁହେଁ, ରାଜନୀତିର ଇସ୍ତାହାର ନୁହେଁ । ଅନେକ କବିତାର ବାଣୀର ଅନୁଭବ ପରିବର୍ତ୍ତେ ତାର କଳାତ୍ମକ ଗୁଣ ଉପରେ ପ୍ରାଧାନ୍ୟ ଦିଅନ୍ତି । କବିତା ହୋଇଉଠେ ଆନନ୍ଦର ଉତ୍ସ - ସୌନ୍ଦର୍ଯ୍ୟର ମାଧ୍ୟମ । ଏପରି ଧାରଣା

କବିତାର ବାଣୀର ବିରୋଧ କରେନି । କେବଳ ତାର କାଳାତ୍ମକ ଉପଭୋଗ ଉପରେ ପ୍ରାଧାନ୍ୟ ଦିଏ । କବିତା ଜୀବନାନୁଭୂତି ସହ ଏକ ସ୍ୱୟଂସମ୍ପୂର୍ଣ୍ଣ ସତ୍ତାରେ ପରିଣତ ହୁଏ' ।୩୭।

କବିର ଅନୁଭୂତି କବି ସୌରୀନ୍ଦ୍ର ବାରିକ୍ କବିତାରେ ପ୍ରକାଶ ନକରି ପ୍ରବନ୍ଧରେ ପ୍ରକାଶ କରିଛନ୍ତି । କବିର କବିତା ପ୍ରତି ଥିବା ଏକ ନୈତିକ ଦୃଷ୍ଟିକୋଣ ପ୍ରବନ୍ଧକୁ ବେଶ୍ ମର୍ମିଳ କରିଛି । କବିତା କ'ଣ ? କାହିଁକି ? କବିତାର ଉତ୍ସ ସଂପର୍କରେ ପ୍ରାବନ୍ଧିକ ମତାମତ ପ୍ରଦାନ କରିଛନ୍ତି ଯାହା ଫଳରେ ପ୍ରବନ୍ଧ ଗୁଡ଼ିକ ସୁଖପାଠ୍ୟ ହୋଇଉଠିଛି । ଲୋକ ପ୍ରଚଳିତ ଶବ୍ଦ ମାଧ୍ୟମରେ, କବିତାର ଆତ୍ମକଥାକୁ କବି ସୌରୀନ୍ଦ୍ର 'ଅନ୍ୱେଷାର ସ୍ୱର' ପ୍ରବନ୍ଧ ପୁସ୍ତକରେ ପ୍ରକାଶ କରିଛନ୍ତି । ପ୍ରାବନ୍ଧିକ ପୁନଶ୍ଚ ପ୍ରକାଶ କରିଛନ୍ତି :- କବିର ପୃଥିବୀ ବିଚିତ୍ର । ତାର ଅନୁଭୂତି ଜଟିଳ । ତାର ପ୍ରକାଶ ନିହାତି ବ୍ୟକ୍ତିଗତ, ପ୍ରତୀକୀ ଉଚ୍ଚାରଣ । କେତେବେଳେ କବି ତା'ର କଳ୍ପନା, ଦିବ୍ୟଦୃଷ୍ଟି ଭବିଷ୍ୟତକୁ ସଞ୍ଚରି ଯାଏ । ମାତ୍ର ସବୁଥିରେ ସେ କହେ ମଣିଷର କଥା ବା ବଞ୍ଚିବାର କଥା ।୩୮।

'ଅନ୍ୱେଷାର ସ୍ୱର' ପ୍ରବନ୍ଧ ସଂକଳନଟି କବିଙ୍କ ଭାବ ଚେତନାରେବେଶ୍ ଋଦ୍ଧିମନ୍ତ ଓ ଶବ୍ଦ ପ୍ରୟୋଗରେ ବେଶ୍ ମନୋଜ୍ଞ । ମୌଳିକ ପ୍ରବନ୍ଧର ଏହାହିଁ ହେଉଛି ସର୍ବଶେଷ ଲକ୍ଷଣ ।

'ଚେତନାର ଚୌହଦୀ' କବି ସୌରୀନ୍ଦ୍ର ବାରିକଙ୍କ ଦ୍ୱିତୀୟ ସାହିତ୍ୟ ସମାଲୋଚନା ଗ୍ରନ୍ଥ । ସାହିତ୍ୟର ବିଭିନ୍ନ ଚେତନା ଉପରେ ଆଧାରିତ ଏକୋଇଶିଟି ପ୍ରବନ୍ଧକୁ ନେଇ 'ଚେତନାର ଚୌହଦୀ' ପ୍ରବନ୍ଧ ପୁସ୍ତକଟି ରଚିତ । ସୃଷ୍ଟିର ସ୍ୱରୂପ ଓ ଉତ୍ସ ସଂପର୍କରେ ପୁସ୍ତକରେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରିଛନ୍ତି । କାଳ ଓ କଳାର ସ୍ୱରୂପ ବିଶ୍ଳେଷଣ କରି ପ୍ରାବନ୍ଧିକ ପରିବର୍ତ୍ତିତ ପରିସ୍ଥିତିରେ ସାହିତ୍ୟର ଭୂମିକା ନିର୍ଣ୍ଣୟ କରିଛନ୍ତି 'ଚେତନାରଚୌହଦୀ' ପ୍ରବନ୍ଧ ପୁସ୍ତକରେ । କାଳର କପାଳରେ କଳା କିପରି ଅକ୍ଷୁର୍ଣ୍ଣ ହୋଇ ରହେ ତାର ସତ୍ୟତା ଉପଲବ୍ଧି କରି ପ୍ରାବନ୍ଧିକ ପ୍ରବନ୍ଧ ମାଧ୍ୟମରେ ପାଠକକୁ ଅଭିହିତ କରିଛନ୍ତି ।

'ଚେତନାର ଚୌହଦୀ' ପ୍ରବନ୍ଧ ପୁସ୍ତକରେ ସ୍ଥାନିତ 'ସୃଷ୍ଟି ଓ ସମାଲୋଚନା, ଏକ ଶୋଷିତ ସଂପର୍କ । ଏକ ବିଶେଷ ଉଲ୍ଲେଖଯୋଗ୍ୟ ପ୍ରବନ୍ଧ । ଉକ୍ତ ପ୍ରବନ୍ଧରେ ପ୍ରାବନ୍ଧିକ ଯଥାର୍ଥରେ ପ୍ରକାଶ କରିଛନ୍ତି ସୃଷ୍ଟିଶୀଳ ପ୍ରକ୍ରିୟାରେ ସମାଲୋଚନା ଗୋଟିଏ ପର୍ଯ୍ୟାୟ । ସୃଷ୍ଟିରୁ ସମାଲୋଚନାର ଜନ୍ମ, ପୁଣି ସମାଲୋଚନାରେ ହିଁ ସୃଷ୍ଟିର ପୂର୍ଣ୍ଣତା । ଭାବାବେଗ, ଦ୍ୟୋତନା ଯଦି ସୃଜନ ପ୍ରକ୍ରିୟାର ପର୍ଯ୍ୟାୟ, ସମାଲୋଚନା ତା'ର ସମାପ୍ତି । ଛବିଟିଏ ଆଙ୍କିଲା ପରେ ଶିଳ୍ପୀ ତାକୁ ନିରେଖି ଦେଖେ । କେଉଁଠି ନାଲି କେଉଁଠି ନେଳିର ସ୍ପର୍ଶ ଦିଏ । କବିତାଟିଏ କବି ଲେଖିସାରି ତାକୁ ପଢ଼େ । କେଉଁଠି ଶବ୍ଦଟିଏ କେଉଁଠି ଧାଡ଼ିଟିଏ ବଦଳାଏ । ମନ ମାନିବା ପର୍ଯ୍ୟନ୍ତ ଏହି ପ୍ରକ୍ରିୟା ଚାଲିଥାଏ । ବେଳେବେଳେ

ଏହି ପ୍ରକ୍ରିୟାରେ ପ୍ରଥମ ଲେଖାଟି ମୂଳ ଅଙ୍କନଟିର ରୂପ ବଦଳିଯାଏ । ଏହି ପଦ୍ଧତି ହିଁ ସମାଲୋଚନା, ଏହି ମନ ମାନିବାଟା ହିଁ ତା'ର ପୂର୍ଣ୍ଣତା । ଅର୍ଥାତ ଭାବାବେଶରେ ଶିଳ୍ପୀ ଯାହା ଅନୁଭବ କରିଥିଲା ତା'ର ପ୍ରକାଶର ସାର୍ଥକତା ହିଁ ସମାଲୋଚନାର ମୂଳ । ତେଣୁ ଗୋଟିଏ ଦୃଷ୍ଟିରୁ ସମାଲୋଚନା ଓ ସୃଷ୍ଟି ଅଙ୍ଗାଙ୍ଗୀ ଏବଂ କଳାର ପ୍ରଥମ ସମାଲୋଚକ ନିଜେକଳାକାର ।୩୯।

ସୃଷ୍ଟିରୁ ସମାଲୋଚନାର ଉତ୍ପତ୍ତି ଓ ସମାଲୋଚକ ନିଜେ ଜଣେ କଳାକାର ଏକଥା ବେଶ୍ ପ୍ରଣିଧାନଯୋଗ୍ୟ । ସୁଦକ୍ଷ ସୃଜନଶୀଳ ସମୀକ୍ଷକ ଅନୁଭବର ଅନ୍ତସ୍ଥଳର ଅଭିବ୍ୟକ୍ତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ସଚ୍ଚୋଟ ସମାଲୋଚକର ଦାୟିତ୍ୱକୁ ପ୍ରବନ୍ଧରେ ଉପସ୍ଥାପନ କରିଛନ୍ତି । 'ଚେତନାର ଚୌହଦୀ' ପ୍ରବନ୍ଧ ସଂକଳନରେ ସ୍ଥାନିତ 'ପ୍ରଲମ୍ବିତ ଗୋଧୂଳି' ଶୀର୍ଷକ ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି :- 'ସବୁ ଯୁଗରେ, ସବୁଦେଶରେ କଳାର ପ୍ରଭାବ ଦ୍ୱିବିଧ । ଏକ ଦିଗରେ ଏହା ଆନନ୍ଦ ଦିଏ ରସବୋଧରେ ମନକୁ ରସାଣିତ କରିଥାଏ । ଅନ୍ୟ ଦିଗରେ ଏହାର ସାମାଜିକ ଦାୟିତ୍ୱ ମଧ୍ୟ ଥାଏ । ମଣିଷର ବ୍ୟକ୍ତିଗତ ପୁଣି ସାମାଜିକ ଚଳଣିକୁ ପ୍ରଭାବିତ କରି ଆମରଚି ଓ ସଂସ୍କୃତିକୁ ଋଦ୍ଧିମନ୍ତକରିଥାଏ । କାଳର ଏ ଦୁଇଟି ଦିଗ ମଝିରେ କୌଣସି ଏକ ନିର୍ଦ୍ଦିଷ୍ଟ ସୀମାରେଖା ଟଣାଯାଇ ନପାରେ ଉତ୍ତମ କଳା ମଣିଷରମନ ପୁଣି ତା'ର ବାହ୍ୟ ଜଗତକୁ ଏପରିଭାବରେ ଆବୋରି ନେଇଥାଏ ଯେ ତା' ପାଖରୁ ଅଲଗା କରି ମଣିଷ ନିଜକୁ ବିଚାର କରିପାରେନାହିଁ । ଏହି ଜାତିର ସୃଷ୍ଟି ହେଉଛି ଆମ ସାରଳା ମହାଭାରତ । ଆମ ଜଗନ୍ନାଥ ଦାସଙ୍କ ଭାଗବତ । ଏମାନେ ଆମ ବଞ୍ଚିବାର ପୂର୍ଣ୍ଣତା, ଜଟିଳତାର ପ୍ରତୀକ । ଆମ ଚେତନାର ବିଭିନ୍ନ ସ୍ତରର ପ୍ରକାଶକ । ଖାଲି ବାହ୍ୟ ଜୀବନର ନିଛକ ପ୍ରତିଛବି ନୁହେଁ ତା'ର ଦିଗ୍‌ଦର୍ଶକ ମଧ୍ୟ । ସେଥିପାଇଁ ଯୁଗ ଯୁଗ ଧରି ଏମାନେ ଆମର ଏତେ ପ୍ରିୟ, ଏତେ ଆପଣାର ।୪୦।

କଳା ବ୍ୟକ୍ତି ଚେତନାକୁ କିପରି ପ୍ରସାରିତ କରେ ଓ କଳାକାରର ସାମାଜିକଦାୟିତ୍ୱ ସଂପର୍କରେ ପ୍ରାବନ୍ଧିକ 'ପ୍ରଲମ୍ବିତ ଗୋଧୂଳି' ପ୍ରବନ୍ଧରେ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

'ସତ୍ୟର କୁହୁକ' କବି ସମାଲୋଚକ ସୌରୀନ୍ଦ୍ର ବାରିକ୍‌ଙ୍କ ତୃତୀୟ ପ୍ରବନ୍ଧ ଗ୍ରନ୍ଥ । କବିତାର ଜନ୍ମ ଜାତକ ବିଷୟରେ ପୁଙ୍ଖାନୁ-ପୁଙ୍ଖ ଭାବରେ ପ୍ରାବନ୍ଧିକ ନିଜସ୍ୱ ମତ ପ୍ରବନ୍ଧ ଗୁଡ଼ିକରେ ଉପସ୍ଥାପନ କରିବାସଙ୍ଗେସଙ୍ଗେ ଗଦ୍ୟ ସାହିତ୍ୟର ବିଭିନ୍ନ ପ୍ରସଙ୍ଗ ଉପରେ ଆଲୋକପାତ କରିଛନ୍ତି । ଏକୋଇଶି ଗୋଟି ପ୍ରବନ୍ଧକୁ ନେଇ 'ସତ୍ୟର କୁହୁକ' ପ୍ରବନ୍ଧ ସଂକଳନଟି ଋଦ୍ଧିମନ୍ତ । ଅନୁଭୂତି ଓ ଅନୁଭବର ଦୃଷ୍ଟିଭଙ୍ଗୀ ପ୍ରବନ୍ଧ ଗୁଡ଼ିକୁ କରିଛି ରସୋତ୍ତୀର୍ଣ୍ଣ । ଓଡ଼ିଆ ଉପନ୍ୟାସର ଗତି ପ୍ରକୃତି ଓ ମାଇକେଲ ଆଞ୍ଜେଲୋଙ୍କ ଜୀବନ ଦର୍ଶନକୁ ପ୍ରାବନ୍ଧିକ ଉପସ୍ଥାପନ କରିଛନ୍ତି । ପ୍ରାବନ୍ଧିକ ସୌରୀନ୍ଦ୍ର ବାରିକ୍ 'ସତ୍ୟର କୁହୁକ' ପ୍ରବନ୍ଧ ସଂକଳନରେ ସ୍ଥାନିତ 'କବିତାରଭାଷା' ପ୍ରବନ୍ଧରେ ପ୍ରକାଶ କରିଛନ୍ତି:- ବଞ୍ଚିବା ଏବଂ ଜୀବନପ୍ରସଙ୍ଗରେ ହିଁ ହୃଦୟର ପ୍ରଶ୍ନ ଉଠିଥାଏ । ବିଜ୍ଞାନ ବଞ୍ଚିବାରେ ସାହାଯ୍ୟ କରେ

ବଞ୍ଚିବାର ଧାରା ସହଜ, ସୁନ୍ଦର ପୁଣି ଉନ୍ନତ କରିବାରେ ସାହାଯ୍ୟ କରିଥାଏ । ବଞ୍ଚିବାର ମାନ ବଦଳିଯାଏ । ଯେଉଁ ଭାବରେ ଆଜି ଆମେ ବଞ୍ଚିଛୁ ତାହା କେବଳ ସମ୍ଭବ ହେଉଛି ବିଜ୍ଞାନ ଦ୍ୱାରା ମାତ୍ର ଏଥିରେ ସବୁ ଶେଷ ହୋଇଯାଏ ନାହିଁ । ଭଲ ଭାବରେ ଏମିତି କି ବିଳାସ ପୂର୍ଣ୍ଣ ଭାବରେ ବଞ୍ଚିବା କେବେ ପୂର୍ଣ୍ଣ ଭାବରେ ବଞ୍ଚିବା ହୋଇପାରେ ନାହିଁ । ବଞ୍ଚିବା ଭିତରେ ପ୍ରଶ୍ନ ଉଠେ କ'ଣ ପାଇଁ ମଣିଷ କେଉଁ ଆଦର୍ଶକୁ ନେଇ ସେ ବଞ୍ଚିବ । ଅନ୍ୟ ମଣିଷ ସହ କେଉଁ ସଂପର୍କ ସ୍ଥାପନ କରିବ । ଏଇଠି ହୃଦୟର କଥା, ମଣିଷମନର ସଂଘର୍ଷର କଥା ଉଠେ । ମଣିଷ ମନକୁ ବୁଝିବାକୁ ପ୍ରଶ୍ନଉଠେ । ସାହିତ୍ୟ ତଥା କବିତାର ପ୍ରୟୋଜନୀୟତା ଏଇଠି ଉପଲବ୍ଧି କରାଯାଏ । ମଣିଷ ମନକୁ ବୁଝିବା ଅର୍ଥ ନୁହେଁ ତା' ବିଷୟରେ ବୈଜ୍ଞାନିକ ଡାଟା ସଂଗ୍ରହ କରିବା । ଡାଟା ଦ୍ୱାରା ଖବର ଜଣାଯାଏ, ତଥ୍ୟ ମିଳେ ମାତ୍ର ଉପଲବ୍ଧି କରାଯାଏ ନାହିଁ । କୌଣସି ପରିସ୍ଥିତିରେ କୌଣସି ଏକ ଜଟିଳ ମୁହୂର୍ତ୍ତରେ ମାନବିକ ପ୍ରତିକ୍ରିୟା ଦ୍ୱାରା ହିଁ ଏହାକୁ ଉପଲବ୍ଧ କରାଯାଇଥାଏ । ଆଉ କବିତା ଏହିପରି ପ୍ରତିକ୍ରିୟାର ସଫଳ ପ୍ରକାଶନ ।୪୧।

ବିଜ୍ଞାନ ସାହିତ୍ୟ ସଂପର୍କରେ ପ୍ରାବନ୍ଧିକ ସୁଚିନ୍ତିତ ମତାମତ ପ୍ରକାଶ କରିଛନ୍ତି । ବିଜ୍ଞାନ ଯୁଗରେ କବିତାର ଆବଶ୍ୟକତା ସଂପର୍କରେ ପ୍ରାବନ୍ଧିକ 'ସତ୍ୟର କୁହୁକ' ପ୍ରବନ୍ଧ ପୁସ୍ତକରେ ଆଲୋକପାତ କରିଛନ୍ତି ।

'ବାମନର ପାଦ' କବି ସମାଲୋଚକସୌରୀନ୍ଦ୍ର ବାରିକଙ୍କ ଚତୁର୍ଥ ସମାଲୋଚନା ଗ୍ରନ୍ଥ । ଆଧୁନିକ କ୍ଷୁଦ୍ରଗଳ୍ପର ସୃଷ୍ଟି ଓ ତା'ର ସଂଜ୍ଞା ପରିସରକୁ ନେଇ 'ବାମନର ପାଦ' ପ୍ରବନ୍ଧ ସଂକଳନଟି ଋଦ୍ଧିମନ୍ତ । ଓଡ଼ିଆ କ୍ଷୁଦ୍ରଗଳ୍ପର ବିଭିନ୍ନ ବିଭାଗକୁ ନେଇ କୋଡ଼ିଏଟି ପ୍ରବନ୍ଧ ପ୍ରାବନ୍ଧିକ ରଚନା କରିଛନ୍ତି 'ବାମନର ପାଦ' ପ୍ରବନ୍ଧସଂକଳନରେ । ପ୍ରବନ୍ଧ ସଂକଳନରେ ସ୍ଥାନିତ ପ୍ରବନ୍ଧ ଗୁଡ଼ିକ କ୍ଷୁଦ୍ରଗଳ୍ପର ପରିଚୟ ଦେବା ସଙ୍ଗେ ସଙ୍ଗେ ଗଳ୍ପରଉପାଦାନ ସଂପର୍କରେ ପରିଚୟ ପ୍ରଦାନ କରେ । କ୍ଷୁଦ୍ରଗଳ୍ପରେ ମନୋନିବେଶ ପାଇଁ ପାଠକକୁ ପ୍ରେରଣାଦିଏ ଓ ଉତ୍ସାହିତ କରେ । କ୍ଷୁଦ୍ରଗଳ୍ପ ସଂପର୍କରେ ଆଲୋଚନା ଗୁଡ଼ିକବେଶ୍ ବୁଦ୍ଧୀଦୀପ୍ତ ଓ ପ୍ରଜ୍ଞାଦୀପ୍ତ । 'ବାମନର ପାଦ' ସଂକଳନରେ ସ୍ଥାନିତ 'ଗୀତିଗଳ୍ପ' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି - ଆଜିର ଗଳ୍ପର ଗଦ୍ୟରେ ଲେଖା ଗୀତ କବିତା । ଆଜି ଆମ ଗଳ୍ପ ଆଉ କାହାଣୀ କହେନି । ଘଟଣା ପ୍ରବାହ ଭିତରେ ପାଠକକୁ ଭସାଇ ନେଇ ଉପସଂହାରର ବେଳାଭୂମିରେ ଛାଡ଼ି ଦେଉନି; ଯେଉଁଠିକି ପାଠକ ଅନୁଭବ କରେକିଛି ଗୋଟାଏ ଘଟିଗଲା । ଆଜି ବି ଗଳ୍ପରେ କିଛି ଘଟେ, ମାତ୍ର ଏହି ଘଟିବାଟା ସେତେବେଶୀ ବାହ୍ୟ ନୁହେଁ; ସଂପୂର୍ଣ୍ଣ ଅନ୍ତର୍ନିହିତ । ଆଜିରଗ ଳ୍ପରେ ଶିଳ୍ପୀ ଆଉ ତା'ର ଗଳ୍ପ ଭିତରେ ଥିବା ଦୂରତା ଧୀରେ ଧୀରେ କମି ଆସେ; ସେ ନିଜ କଥା ହିଁ କହି ବସେ । ତା' ଗଳ୍ପର ବିଷୟବସ୍ତୁ ଯା ହେଉନା କାହିଁକି ତା' କେନ୍ଦ୍ରରେ ଜଳିଉଠେ ଶିଳ୍ପୀର ଅନୁଭୂତି - ଦଗ୍ଧ ଅସ୍ତିତ୍ୱ । ପାଠକ ସେହି ଅସ୍ତିତ୍ୱ ସହ ଅନ୍ତରଙ୍ଗ ହୁଏ, ନିଜକୁ ଏକୀଭୂତ କରି ଜୀବନକୁ

ହୃଦୟଙ୍ଗମ କରେ । ଜୀବନର ବ୍ୟାପକତା ଯେତେ ନୁହେଁ, ତା'ର ଗଭୀରତା, ତା'ର ତୀକ୍ଷ୍ଣତା ତାକୁ ବେଶୀ ସ୍ପର୍ଶକରେ ।୪୨।

'ବାମନର ପାଦ' ପ୍ରବନ୍ଧ ପୁସ୍ତକରେ ପ୍ରାବନ୍ଧିକ ଗଳ୍ପର ଅସ୍ତିତ୍ୱ ସଂପର୍କରେ ସୂଚନା ଦେବାକୁ ଯାଇ ଅତୀତ କ୍ଷୁଦ୍ରଗଳ୍ପର ମାନଚିତ୍ର ଅଙ୍କନ କରିଛନ୍ତି । ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ ପ୍ରାବନ୍ଧିକ ପ୍ରବନ୍ଧଗୁଡ଼ିକୁ ରଚନା କରିଛନ୍ତି ।

'ଶବ୍ଦ ସବୁ ସରିଗଲେ' କବି ସମାଲୋଚକ ସୌରୀନ୍ଦ୍ର ବାରିକଙ୍କ ପଞ୍ଚମ ସମାଲୋଚନା ଗ୍ରନ୍ଥ । ଜ୍ଞାନପୀଠ ପୁରସ୍କାରବିଜେତା ସୀତାକାନ୍ତ ମହାପାତ୍ରଙ୍କ କାବ୍ୟକୃତିକୁ ନେଇ 'ଶବ୍ଦ ସବୁ ସରିଗଲେ' ସମାଲୋଚନା ଗ୍ରନ୍ଥଟି ରଚିତ । କବିଙ୍କ କବିତାର ଆଭିମୁଖ୍ୟ ଓ କବିତାରେ ଜୀବନ ଦର୍ଶନକୁ ଆଧାରକରି ପ୍ରାବନ୍ଧିକ ପ୍ରବନ୍ଧଗୁଡ଼ିକର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । କବି ସୀତାକାନ୍ତ ମହାପାତ୍ରଙ୍କ କାବ୍ୟକୃତିର ଏକ ମନୋଜ୍ଞ ପ୍ରବନ୍ଧ ସମାଲୋଚନାଗ୍ରନ୍ଥ 'ଶବ୍ଦ ସବୁ ସରିଗଲେ' । ମୁଖ୍ୟତଃ ସୌରୀନ୍ଦ୍ର ବାରିକ୍ ଜଣେ କବି ହୋଇଥିବାରୁ କବି ସୀତାକାନ୍ତ ମହାପାତ୍ରଙ୍କ କବିତାର ପ୍ରାୟୋଗିକ ସମୀକ୍ଷା ସୁନ୍ଦର ଭାବରେ କରିଛନ୍ତି । କବି କେବଳ ଜଣେ କବିର ଅନ୍ତର କଥା ବୁଝେ । ଠିକ୍ ସେହିପରି କବି ସୌରୀନ୍ଦ୍ର ସୀତାକାନ୍ତଙ୍କ କବିତାର ବ୍ୟୁହକୁ ଠିକ୍ ଭାବରେ ଭେଦ କରିଛନ୍ତି ଓ ପ୍ରବନ୍ଧରେ କବିତା ଉପରେ ନିଜର ମତାମତ ପ୍ରଦାନ କରିଛନ୍ତି ।

କବି ସୀତାକାନ୍ତଙ୍କ ଉପରେ ମନ୍ତବ୍ୟ ଦେବାକୁ ଯାଇ ଶବ୍ଦ ସବୁ ସରିଗଲେ ସମାଲୋଚନା ଗ୍ରନ୍ଥରେକବି ସୌରୀନ୍ଦ୍ର ବାରିକ୍ 'ସଜବାଜର ପର୍ବ' ଶୀର୍ଷକ ପ୍ରବନ୍ଧରେ ପ୍ରକାଶ କରିଛନ୍ତି ସୀତାକାନ୍ତଙ୍କ କବିତା 'ସଂପର୍କର କବିତା' । ଏହି ସଂପର୍କର ପ୍ରଥମ ସୋପାନରେ ଦେଖା ଦେଇଛି ଅହଂ ସହ ତାଙ୍କ ଗାଁ ଭୂଇଁ, ପାଣି ପବନ, ତାଙ୍କ ସହର ଅର୍ଥାତ ତାଙ୍କ ବିଚିତ୍ର ପରିବେଶର ସବୁଜ ସଂପର୍କ । ଏ ପରିବେଶ ତାଙ୍କ ଗାଁ ଦାଣ୍ଡ ପାଖରୁ ଆରମ୍ଭ ହୋଇ ଆଫ୍ରିକା ପର୍ଯ୍ୟନ୍ତ ବ୍ୟାପ୍ତ, ଏହା ବିଶ୍ୱବ୍ୟାପୀ । ପୁଣି ଏଥିରେ ପ୍ରିୟବ୍ରତ ବାବୁ ପାଖରୁ ଆରମ୍ଭ କରି ର୍ୟାମ୍ବୋ ପର୍ଯ୍ୟନ୍ତ ସମସ୍ତେ ଚଳ ପ୍ରଚଳ କରନ୍ତି ।୪୩।

କବି ସୌରୀନ୍ଦ୍ର ବାରିକ୍‌ଙ୍କ ଲେଖନୀ ସୃତ ସମାଲୋଚନା ଗ୍ରନ୍ଥ 'ଶବ୍ଦ ସବୁ ସରିଗଲେ' ଏକ ଉଚ୍ଚକୋଟୀର ମୌଳିକ ସମାଲୋଚନା ଗ୍ରନ୍ଥ ଏଥିରେ ସନ୍ଦେହର ଅବକାଶ ନାହିଁ ।

'ଉଦାର ନରସିଂହ' କବି ସମାଲୋଚକ ସୌରୀନ୍ଦ୍ର ବାରିକଙ୍କ ଷଷ୍ଠ ସମାଲୋଚନା ଗ୍ରନ୍ଥ । କବିତା କାହିଁକି ? କବିତାରେ ମିଥ୍, କବିତାରେ ଜୀବନ ଦର୍ଶନ, ସାହିତ୍ୟର ବିଭିନ୍ନ ବିଭାଗକୁ ନେଇ 'ଉଦାର ନରସିଂହ' ପ୍ରବନ୍ଧ ସମାଲୋଚନା ଗ୍ରନ୍ଥଟି ଋଦ୍ଧିମନ୍ତ । ଯେତେବେଳେ ଯେପରି ଭାବରେ ଅନୁଭବ ପ୍ରାବନ୍ଧିକଙ୍କୁ ବଶ କରିଛି ସେପରି ଭାବରେ ପ୍ରବନ୍ଧକୁ ପ୍ରକାଶ କରିଛନ୍ତି 'କଳା ସାହାଯ୍ୟରେ ମଣିଷ କାଳକୁ ଜୟ କରିବାର ପ୍ରୟାସ କରିଥାଏ । ଏକ ନିର୍ଦ୍ଦିଷ୍ଟ ସମୟ ଖଣ୍ଡ ଭିତରେ ବାସ୍ତବତା ସହ ବ୍ୟକ୍ତି କରିଥିବା ସଂଘର୍ଷ

ଏବଂ ସ୍ଥାପିଥିବା ସଂପର୍କକୁ କଳା ହିଁ ରୂପ ଦେଇଥାଏ। କଳା ପୁଣି ବ୍ୟକ୍ତିର ନିଜସ୍ୱ ଅନୁଭୂତିକୁ ଅନନ୍ୟ ଭାବରେ ଧରି ରଖେ। ତେଣୁ କଳା ଏକ ଅତି ସାଧାରଣ ବାସ୍ତବତାରୁଜନ୍ମ ନେଇଥିଲେ ମଧ୍ୟ ଏକ ଅନନ୍ୟତାକୁ ଧରି ରଖିବାର ସମର୍ଥ ହୋଇଥାଏ। ଏହା ପୁଣି ବାସ୍ତବ ସଂପର୍କୀୟ ମଣିଷ ଜ୍ଞାନର ଏକ ମାର୍ଗ। ଏହି କଳା ମାର୍ଗ ଏକ ଦିଗରେ ଅନ୍ୟ ମାର୍ଗ ପରି; ସେମାନଙ୍କ ସଂପର୍କିତ ପୁଣି ଅନ୍ୟ ଦିଗରେ ନିହାତି ସ୍ୱତନ୍ତ୍ର।୪୪।

'ଉଦାର ନରସିଂହ' ପ୍ରବନ୍ଧ ସଂକଳନରେ ସ୍ଥାନିତ ପ୍ରବନ୍ଧ ଗୁଡ଼ିକ ମନୋଜ୍ଞ ଓ ମର୍ମିଳ। କବି ସମାଲୋଚକ ସୌରୀନ୍ଦ୍ର ବାରିକଙ୍କ ଉପସ୍ଥାପନ ଶୈଳୀ ବେଶ୍ ସ୍ୱତନ୍ତ୍ର।

'ସାଂପ୍ରତିକ କାଳ ଓ ଚିରନ୍ତନ କବି' ସମାଲୋଚକ ସୌରୀନ୍ଦ୍ର ବାରିକଙ୍କ ସପ୍ତମ ସମାଲୋଚନା ଗ୍ରନ୍ଥ। ବାଇଶି ଗୋଟି ପ୍ରବନ୍ଧକୁ ପାଥେୟ କରି ସମାଲୋଚନା ଗ୍ରନ୍ଥଟି ଋଦ୍ଧିମନ୍ତ। ସାହିତ୍ୟର ବିଭିନ୍ନ ବିଭାଗରେ ନିଜର ସ୍ୱାଧୀନ ମତକୁ 'ସାଂପ୍ରତିକ କାଳ ଓ ଚିରନ୍ତନ କବି' ଗ୍ରନ୍ଥରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି। ସାହିତ୍ୟର ଚିରନ୍ତନ ମୂଲ୍ୟବୋଧକୁ ପ୍ରବନ୍ଧ ଗୁଡ଼ିକରେପ୍ରାବନ୍ଧିକ ପ୍ରକାଶ କରିବା ସଙ୍ଗେସଙ୍ଗେ କବିତା ଓ ରାଜନୀତି ଉପରେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରିଚନ୍ତି। ସାହିତ୍ୟ ଓ ଜୀବନ ସଂପର୍କରେ ନିଜର ମୌଳିକ ଦୃଷ୍ଟିଭଙ୍ଗୀକୁ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି। 'ସାଂପ୍ରତିକ କାଳ ଓ ଚିରନ୍ତନ କବି' ପ୍ରବନ୍ଧ ସଂକଳନରେ ସ୍ଥାନିତ 'ବିକଳ୍ପ ଈଶ୍ୱର' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି : - କଳା ଜଟିଳ ଜୀବନର ଜଟିଳତାକୁ ସରଳ ଅବା ଜଟିଳ ଭାବରେ ଦେଖାଇ ଦିଏ ନାହିଁ। ଏହା ଦେଖିବାର ନୂଆ ଦୃଷ୍ଟିଟି ଗଢ଼ିଦିଏ। ସଂଜୟର ଆଖିନେଇ ଯାହା ଘଟୁଛି ତାକୁ ସଠିକ୍ ଭାବରେ ଖାଲି ଦେଖେ ନାହିଁ କିମ୍ବା ବେଲାଲସେନ ପ୍ରରି ସବୁ ବାହ୍ୟ ନିଜସ୍ୱ ଘଟଣା ଭିତରେ ଲୁଚିଥିବା ଅସଲ ସତ୍ୟଟିକୁ ଦେଖେ ନାହିଁ। ଶିଳ୍ପୀ ନିଜସ୍ୱ ଦୃଷ୍ଟି ଟିଏ ସୃଷ୍ଟିକରେ। ସେ ରଚନା କରେ ବିକଳ୍ପ ପୃଥିବୀ ସେଥିପାଇଁ ତ ସିଏ ଏକ ବିକଳ୍ପ ଈଶ୍ୱର।୪୫।

ପ୍ରବନ୍ଧ ସଂକଳନରେ ସ୍ଥାନିତ ପ୍ରବନ୍ଧ ଗୁଡ଼ିକ ରସୋତ୍ତୀର୍ଣ୍ଣ ଓ କାଳଜୟୀ। 'ଭଗ୍ନାଂଶର ସଂହିତା' କବି ସମାଲୋଚକ ସୌରୀନ୍ଦ୍ର ବାରିକ୍ଙ୍କ ଅଷ୍ଟମ ସମାଲୋଚନା ଗ୍ରନ୍ଥ। ସାଂପ୍ରତିକ, ଆଧୁନିକ, ଉତ୍ତର ଆଧୁନିକ ଓଡ଼ିଆ କବିତାର ପରିଚର୍ଚ୍ଚା ସଂପର୍କରେ 'ଭଗ୍ନାଂଶର ସଂହିତା' ପ୍ରବନ୍ଧ ପୁସ୍ତକରେ ପ୍ରାବନ୍ଧିକ ଆଲୋଚନା କରିଛନ୍ତି। ଆଧୁନିକ ଓ ଉତ୍ତର ଆଧୁନିକ ଓଡ଼ିଆ କବିତାର ରସ ସୃଷ୍ଟି ସଂପର୍କରେ ଆଲୋଚକ ଆଲୋଚନା କରିବାସଙ୍ଗେ ସଙ୍ଗେ ସାଂପ୍ରତିକ, ଆଧୁନିକର ସଜ୍ଞା ନିରୂପଣ କରିଛନ୍ତି ପ୍ରବନ୍ଧ ସଂକଳନରେ। 'ଭଗ୍ନାଂଶର ସଂହିତା' ପ୍ରବନ୍ଧ ପୁସ୍ତକରେ ସ୍ଥାନିତ 'ଉତ୍ତର ଆଧୁନିକତାର ତାତ୍ତ୍ୱିକ ପୃଷ୍ଠଭୂମି' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି:- ଉତ୍ତର ଆଧୁନିକତା ସହ ସଂପର୍କିତ ଜୀବନ ଢ଼ଙ୍ଗ ଓ ବିଶ୍ୱା ବୋଧର ମୌଳିକ ଗୁଣଟି ହେଲା ଅସଂଲଗ୍ନ ବିଭିନ୍ନତା। ଏହିଥିରୁ ସ୍ପଷ୍ଟ ଏହାର ଜଟିଳତା।

ଏହି ଜଟିଳତା ଏକ ଗୁଣ ବିଶିଷ୍ଟ ନୁହେଁ; ଏହା ପୁଣି ଆଧୁନିକତା ବିରୁଦ୍ଧରେ ଏକ ସଚେତନ ଆନ୍ଦୋଳନ ହୋଇନଥିବାରୁ ପ୍ରତିକ୍ରିୟାଶୀଳ ମଧ୍ୟ ନୁହେଁ ।୪୬।

ପ୍ରବନ୍ଧ ସଂକଳନରେ ସ୍ଥାନିତ ପ୍ରବନ୍ଧ ଗୁଡ଼ିକ ମୌଳିକ ଓ ଉନ୍ନତ ବିଚାର ଧାରା ସଂପନ୍ନ ।

## (ଗ) କବି ସମାଲୋଚକ

କବି ମାତ୍ରେ ଦାର୍ଶନିକ । ବାହ୍ୟ ବସ୍ତୁର ସ୍ଥୁଳ ସୌନ୍ଦର୍ଯ୍ୟରେ କବି ଆତ୍ମହରା ହୁଏ ନାହିଁ; ନିଜର ସୂକ୍ଷ୍ମଦୃଷ୍ଟି ପ୍ରୟୋଗ କରି ତା'ର ଅନ୍ତରାଳରେ ଥିବା ଚିରନ୍ତନ ଲୁକ୍କାୟିତ ସତ୍ୟକୁ କବି ଆବିଷ୍କାର କରେ । କବିତା କବି ହୃଦୟର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି । ଜୀବନର ଅନ୍ତର୍ନିହିତ ଭାବସ୍ପନ୍ଦନକୁ କବି ମର୍ମେ ମର୍ମେ ଉପଲବ୍ଧି କରି ବାଙ୍ମୟ ରୂପ ପ୍ରଦାନ କରେ । ତା'ର ସେହି ବାଣୀ ରାଜ୍ୟରେ ସେ ରୂପ ଭିତରେ ଅରୂପରେସଂଧାନ ଦିଏ । ଅରୂପର ଅର୍ନିର୍ବଚନୀୟ ରସୋପଲବ୍ଧି ଦ୍ୱାରା ସେ ସହୃଦୟ ସାମାଜିକ ବ୍ୟକ୍ତିର ଅନ୍ତରରେ ସୃଷ୍ଟିକରେ ଗଭୀର ଆଲୋଡନ । ସେ ରମଣୀୟାର୍ଥ ପ୍ରତିପାଦକ ଶବ୍ଦ ବିନ୍ୟାସ ସାହାଯ୍ୟରେ ଲୋକୋତ୍ତର ଆହ୍ଲାଦ ଜନକ ଜ୍ଞାନ ଗୋଚରତା ସୃଷ୍ଟିକରେ । ନିଜର ବ୍ୟକ୍ତି ବିଶ୍ୱଚେତନାକୁ ବିଶ୍ୱ ବ୍ୟକ୍ତି ଚେତନାରେ ରୂପାନ୍ତରିତ କରି ଏକ ସାର୍ବଜନୀନ ରୂପ ପ୍ରଦାନ କରେ । କବିର ଅନୁଭବ ବ୍ୟକ୍ତିଗତ ହେଲେ ହେଁ ସେହି ବ୍ୟକ୍ତି ଗତ ଅନୁଭବ ସାର୍ବଜନୀନ ଭାବ ଗ୍ରହଣ କରିଆତ୍ମପ୍ରକାଶ କରେ । କବି ରାଜରାସ୍ତାରେ ଏକ୍‌ଲାପଥିକ । ତାର କାବ୍ୟ ପୁରୁଷ ଗଲାବେଳେ କେତେବେଳେ କଳ୍ପନାର ମଧୁର ସଂଗୀତ ସୃଷ୍ଟି କରେ ଆଉ କେତେବେଳେ ଜୀବନର ସଂଗୀତଶୁଣାଏ, କେତେବେଳେ ଗମ୍ଭୀର ମୁହୂର୍ତ୍ତର ଚିତ୍ତ ଉଲ୍ଲସକାରୀ ଭାବ ସ୍ପନ୍ଦନ ସୃଷ୍ଟିକରେ କେତେବେଳେ ନୈରାଶ୍ୟ ଓ ଶୋଚନୀୟତା, ବ୍ୟଥା ବିଫଳତାରେ ଭାଙ୍ଗିପଡ଼େ । ପୁଣି କେତେବେଳେ ପ୍ରେମ-ପ୍ରଣୟର କରୁଣ ମଧୁର ଅନୁଭବ ଦେଇ ଜୀବନର ସଂଗୀତ ଶୁଣାଏ । ତା'ର କାବ୍ୟ ପୁରୁଷ ଏକଲା ଯାଏ ସତ ମାତ୍ର ପଥ ଧାରରେ ସେ ଭେଟି ଭେଟି ଯାଏକେତେ ଅଜଣା ଜଣା, ଚିହ୍ନା ଅଚିହ୍ନା ବ୍ୟକ୍ତି ସତ୍ତାକୁ ସମସ୍ତଙ୍କ ହୃଦୟରୁ ସେ ଅଜ୍ଞାତ ସାରରେ ଭାବ ସଂଗ୍ରହ କରି ଆଣେ ନିଜ ହୃଦୟର ଭାବବଳୟରେ ତାକୁ ମିଶାଇ ଦିଏ । ପୁଣି ସେହି ମିଳିତ ଭାବକୁ ବ୍ୟକ୍ତି-ମାନସର କଷଟୀ ପଥରରେ ପରୀକ୍ଷା ନିରୀକ୍ଷା କରି ଏକ ସାର୍ବଜନୀନ ରୂପ ପ୍ରଦାନ କରେ । ସେଠି ବ୍ୟକ୍ତି ଓ ସମାଜ, କବିର ଆତ୍ମଜଗତ ଓ ତା'ର ଚତୁପାର୍ଶ୍ୱ ଜୀବଜଗତ ଏକାତ୍ମ ହୁଏ ।ଏକଗଭୀର ଆନନ୍ଦ ବୋଧ ଦେଇ ସମସ୍ତଜଗତ ସତେ ଯେପରି ଗତିଶୀଳ ହୁଏ. ପାଶ୍ଚାତ୍ୟ କବି ମନୀଷୀ ସେଲିଙ୍କ ଭାଷାରେ - Poetry is ever accompanied with pleasure all spirits which it falls open themselves to receive the Wisdom which is mingled with delight. ବ୍ୟକ୍ତିର ଯନ୍ତ୍ରଣା ବୋଧକୁ କବି ଯେତେବେଳେ ବାଣୀ - ରୂପ ପ୍ରଦାନ କରେ ସେତେବେଳେ ତାହା ସହୃଦୟ ଅନ୍ତରରେ ଦୁଃଖର

ଅବଧାରଣା ଦେଇ ଆନନ୍ଦ ବୋଧ ସୃଷ୍ଟି କରେ । କବିତା ହେଉଛି କଳ୍ପନାର ଅଭିବ୍ୟକ୍ତି - Expression of imagination କବି ନିଜର ଅର୍ନ୍ତଦୃଷ୍ଟି ଦ୍ୱାରାବର୍ତ୍ତମାନ ଅବସ୍ଥାର ନାନା ସମ୍ବନ୍ଧ ଦେଇ ଭବିଷ୍ୟତ ସମ୍ବନ୍ଧର କଳ୍ପନା କରେ । ମନୁଷ୍ୟର ଅଜ୍ଞାତ ଅଦୃଶ୍ୟ ଅନ୍ତଃପୁରର ଛନ୍ଦମୟ ବାକ୍ୟ ବିନ୍ୟାସ ଦେଇ କବିତା ଆତ୍ମପ୍ରକାଶ କରେ । ତେଣୁ ସେଲି ପ୍ରକାଶ କରିଛନ୍ତି:- "Poetry in a more restricted sense expresses those arrangements of Language and especially metrical language which are created by that empirical faculty whose throne is curtained within the invisible nature of man."

କବିତା ସ୍ରଷ୍ଟା-ଅନ୍ତଃପୁର ଅଦୃଶ୍ୟ ଭାବଧାରାର ଛନ୍ଦୋମୟ ଅଭିବ୍ୟକ୍ତି । ଏହି ପ୍ରକାଶ ଭଙ୍ଗୀ ସାହାଯ୍ୟରେ କବି ଅନ୍ତରର ଭାବକୁ ରୂପ ଦିଏ । ତା'ର କଳ୍ପନା ଭାଷାରୂପ ଗ୍ରହଣ କରେ ।

କବିତା ବାହ୍ୟ ଜଗତସହ ମଣିଷର ସଂପର୍କରୁ ଆରମ୍ଭ ହୋଇ ମନ ଜଗତର ରହସ୍ୟ ପର୍ଯ୍ୟନ୍ତ ବ୍ୟାପ୍ତ । ଏହା ସ୍ମୃତି, ସ୍ୱପ୍ନ ପୁଣି ଆଦର୍ଶକୁ ରୂପ ଦେଇଥାଏ । ତେଣୁ କବିତା ହିଁ କବି ଏବଂ ସାଧାରଣ ମଣିଷକୁ ଭାଷା ମାଧ୍ୟମରେ ବାନ୍ଧି ରଖିଥାଏ । ଏବଂ ଏପରି ବାନ୍ଧି ରଖି ସଂସ୍କୃତିର ଐତିହ୍ୟ ଗଢ଼ି ପାରିଥାଏ । ତେଣୁ କବିତା ହିଁ ସଂପର୍କର ସେତୁ, ସତ୍ୟର ଅନନ୍ୟ ପ୍ରକାଶ । ଏହା ପୁଣି ଚିନ୍ତା ଓ ଚେତନାର ଦ୍ୟୋତକ । ଜୀବନର ଅର୍ଥକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହାବଞ୍ଚିବାକୁ ଅର୍ଥମୟ କରିଥାଏ; ବାସ୍ତବତା ସହ ସଂଘର୍ଷ ପାଇଁ ସାମର୍ଥ୍ୟ ଯୋଗାଇଥାଏ । ଏହା ଅନୁଭବର ନିର୍ଯ୍ୟାସକୁ ରୂପଦିଏ ଏବଂ ଅନନ୍ୟତାର ସତ୍ୟଶୀଳ ମୁଖପାତ୍ର ହୋଇଯାଏ ।୪୭।

କବିତା ଏକାଧାରରେ ଏକ କୁହୁଟିଏ, କଳ୍ପନାର ମାୟାଜାଲ ବୁଣିଦିଏ । ନେଇଯାଏ ସ୍ୱପ୍ନର ଜଗତକୁ । ସବୁ ଭୁଲେଇ ଦିଏ, ସବୁ ରଙ୍ଗେଇ ଦିଏ ବାସ୍ତବତାର ରୁକ୍ଷ ଚେହେରାକୁ । ସତ୍ୟର କ୍ରୁରତାକୁ । ତେଣୁ କବିତାକୁ ଆମେ ସ୍ୱୀକାର କରୁ ବା ନକରୁ ଭାଷା ଏବଂଶବ୍ଦ ଏବଂ ମଣିଷର ଚେତନା ଥିବା ଯାଏ ଏହା ଥିବ । ଏହାର ପ୍ରଭାବ ଥିବ । କାହିଁକିନା ଜୀବନ ଏବଂ ବଞ୍ଚିବା ସହ ଏହାର ସଂପର୍କ । ଅନୁଭବର ଗଭୀରତା ଏବଂ ପ୍ରଖରତା କବିତାର ଉତ୍ସ । ସାଧାରଣ ଘଟଣାଟିଏର ପ୍ରଭାବ ହୁଏତ ତୀବ୍ର ହୋଇପାରେ ଏବଂ ଏହି ତୀବ୍ରତାରୁ ଜନ୍ମ ନିଏ କବିତା । ପ୍ରତ୍ୟେକ କବିତାତ ଶବ୍ଦିଭୂତ ସ୍ମୃତିଟିଏ । ପାଠକର ଚେତନାକୁ ସେ ସ୍ମୃତିକୁ ପୁର୍ନଜନ୍ମ ଦେଇଥାଏ । ତେଣୁ ଏହା ଏକ ଅନନ୍ୟ ଆତ୍ମାବିଷ୍କାର ।୪୮।

ସ୍ମୃତିକୁ କବି ଯେମିତି ଶବ୍ଦ ଭିତରେବନ୍ଦୀ କରିଦିଏସେହି ପରି ପାଠକ କବିଟିଏ ହୋଇ ସେ ସ୍ମୃତିକୁ ନିଜସ୍ୱ ଭାବରେ ଆବିଷ୍କାର କରିଥାଏ । ସ୍ମୃତି ସାହାଯ୍ୟରେ କବିକାଳଜୟୀ ହେବାର ପ୍ରୟାସ କରେ । ଅନନ୍ୟତା ତା' ହାତରେ ସାର୍ବଜନୀନତାରେ ରୂପାନ୍ତରିତ ହୁଏ । ତେଣୁ ସ୍ମୃତି ହିଁ କବିତାର ଜନନୀ ।ସବୁ କଳା ତ ଏହି ସ୍ମୃତି ଜରିଆରେ ଆବେଦନ କସୃଷ୍ଟି

କରିଥାଏ । ଏହା ମନରୁ ମନକୁ ସେତୁଟିଏ ହୋଇ ଯୁଗ ଯୁଗ ଲମ୍ବିଯାଏ । ଏଥିରେ ଆବେଦନର ଚାବିକାଠି । ବ୍ୟକ୍ତିଗତ ଅନୁଭବର ପ୍ରତିକ୍ରିୟା ସାହାଯ୍ୟରେ କବିତା ମଣିଷର ସୃଷ୍ଟିର ରହସ୍ୟମୟତାକୁ ସୂଚାଇ ଦେଇଥାଏ । କାରଣ ପ୍ରତେକ ବ୍ୟକ୍ତି ସେହି ଅନନ୍ୟ ଅନୁଭୂତିକୁ ନିଜସ୍ୱ ଭାବରେ ଅନୁଭବ କରିଥାନ୍ତି । ଶବ୍ଦଜରିଆରେ ଅନୁଭବ କରିଥାନ୍ତି; ପୃଥିବୀ ସହ ବକ୍ତିର ସଂପର୍କକୁ । ମନୋବିଜ୍ଞାନ ତ ମନ ଭିତରେ ସକ୍ରିୟ ଥିବ । ବିଭିନ୍ନ ଶକ୍ତିର ପ୍ରଭାବକୁ ବୁଝିବାପାଇଁ ଚେଷ୍ଟା କରିଥାଏ; ମାତ୍ର କବିତା ଅନୁଭବର ଆତ୍ମିକ ଅନନ୍ୟତାକୁ ଧରି ରଖେ । କବିତା ସାଧାରଣ ବାସ୍ତବତାର ଏକବ୍ୟକ୍ତିଗତ ଅସାଧାରଣ ସତ୍ୟ । ଏହା କୌଣସି ଯୁକ୍ତି, ନୀତି ଅବାନିୟମ ଦ୍ୱାରା ସୀମିତ ନୁହେଁ ।୪୯।

ନିଭୃତ ମୁହୂର୍ତ୍ତର ସ୍ମୃତିରୁ ସୃଷ୍ଟି କବିତାସାରା ଚେତନାକୁ ଛାଇଯାଏ । ଅନୁଭବର ବିଭିନ୍ନ ସୂକ୍ଷ୍ମତାକୁ ନିଜ ଭିତରେ କୋଳାୟିତ କରିଥାଏ । ବ୍ୟକ୍ତି ଏବଂ ବାସ୍ତବତାର ଜଟିଳ ସଂପର୍କକୁ ରୂପଦିଏ । ଏହା ସତ୍ୟାନୁଭବ ଓ ଆନନ୍ଦ । ଏହି ଆନନ୍ଦର ଉତ୍ସ ସତ୍ୟାନୁସନ୍ଧାନ । ଆତ୍ମାବିଷ୍କାର । ଏହା ଏକ ଦିଗରେ ନିଜର ପରିଚୟ । ଜୀବନସଂଗ୍ରାମର ବାସ୍ତବ ରୂପରେ ସୂଚନା ଦେବା ସଙ୍ଗେସଙ୍ଗେ ମଣିଷ ଭିତରେ ଲୁଚି ରହିଥିବା ସ୍ୱପ୍ନର ସମ୍ଭାବନାକୁ ଦେଖାଇଦିଏ । ଏହି ସମ୍ଭାବନାରେ ଥାଏ ବାସ୍ତବତାକୁ ଜୟକରି ଏକ ଅପହଞ୍ଚକୁ ନିଜର କରିବାର ବହପ । ସ୍ମୃତି, ସ୍ୱପ୍ନ, ଚେତନାରେ ରଙ୍ଗୁତା ଆଣେ, ଗଭୀରତା ଭରେ । ଆଉ ଏ ବହପ ଜୀବନ ଏବଂ ମୃତ୍ୟୁକୁ ସାମ୍ନାକରିବାପାଇଁ ମନରେ ସାହସ ଭରିଦିଏ । ଅତୀତ ପାଇଁ ଭବିଷ୍ୟତବାଣୀ କରିବା ସଙ୍ଗେସଙ୍ଗେ ଭବିଷ୍ୟତର ସ୍ମୃତିଚାରଣ କରିହୁଏ । ତେଣୁ କବିତାର ପ୍ରଭାବ ଚେତନା ସ୍ତରରେ । ଏହା ଅତି ସୂକ୍ଷ୍ମଭାବରେ ମନକୁ ରସାଣିତ କରେ, ରଶ୍ମିମନ୍ତ କରେ ନିଜସ୍ୱ ଭାବରେ ଚେତନାକୁ ଛାଇଯାଏ । ଏହି ଛାଇ ଯିବାଟା ହିଁ ଆନନ୍ଦ ସୌନ୍ଦର୍ଯ୍ୟବୋଧ । ମଣିଷ ଆଉ ପଶୁ ଭିତରେ ଥିବା ଭିନ୍ନତା ।୫୦।

ସମାଲୋଚନା କଳାରମୂଲ୍ୟାୟନ କରେ ନାହିଁ । ଏହା ପାଠକର ଚେତନାକୁ ରସାଣିତ କରିଥାଏ । ଜଣେ ଶିଳ୍ପୀକୁ କେବଳ ନୂଆ ଭାବରେ, ଭିନ୍ନ ଭାବରେ ନୁହେଁ ସଠିକ୍ ଭାବରେ ଉପଭୋଗ କରିବାକୁ ଚେତାଇ ଦିଏ । ତା'ର ସୂକ୍ଷ୍ମତାକୁ ଦେଖାଇଦିଏ । ଅନୁଭୂତିର ଗଭୀରତାକୁ ହୃଦୟଙ୍ଗମ କରିବାରେ ସାହାଯ୍ୟ କରେ; ଆନନ୍ଦ ପାଇବାର ମାର୍ଗ ଟା ଦେଖାଇ ଦିଏ । ଏହିଆନନ୍ଦ ମିଳିଥାଏ କଳାକୁ କଳା ହିସାବରେ ଗ୍ରହଣ କରି । ଇନ୍ଦ୍ରଧନୁକୁ ଇନ୍ଦ୍ରଧନୁ ଭାବେ ପାଇ; ତାର ରଙ୍ଗକୁ ବିଶ୍ଳେଷଣ କରି ନୁହେଁ । ଅର୍ଥାତ କଳାକୁ କଳାକରି, ବିଜ୍ଞାନ କରି ନୁହେଁ । କଳାତ ଜୀବନର ପ୍ରତୀକ । ରହସ୍ୟମୟ ଅବବୋଧର ମୂର୍ତ୍ତୀକରଣ । ତେଣୁ ଏହା ସୂଚନା ଧର୍ମୀ । କଳାର ମହତ୍ତ୍ୱ ଏଇଠି, ପ୍ରତୀକର ସୌନ୍ଦର୍ଯ୍ୟ ଏଇଠି । ଏହା କେବଳ୍ ଚିହ୍ନଟିଏ ନୁହେଁ; ଏହା ଏକ ସମନ୍ୱୟ- ବାସ୍ତବ - ଏବଂ ରହସ୍ୟର, ବ୍ୟକ୍ତିଗତ ଏବଂ ସାର୍ବଜନୀନ, ସଚେତନ ପୁଣି ଅଚେତନର ସମନ୍ୱୟ । ବିଶ୍ଳେଷଣ ଏହି ସମନ୍ୱୟକୁ ହତ୍ୟାକରେ । ଖୋଜିବା ପର୍ଯ୍ୟାୟରେ ଧ୍ୟେୟ ବସ୍ତୁଟି ହଜିଯାଏ ।

ସମାଲୋଚନା ଏହି ହଜାଇ ଦେବାର ଧାରା ନୁହେଁ। ଏହା ପାଇବାର ପନ୍ଥା ଏକ ଆନ୍ତରିକ ବ୍ୟାକୁଳତା ।୫୧।

ସମାଲୋଚନା ଏକ ଗ୍ରହଣ ଓ ସମନ୍ୱୟ ପ୍ରକ୍ରିୟା । ସମାଲୋଚକର ମନଗ୍ରହୀତାର ମନ । ଏହା ଏକ ଚେତନା ବଞ୍ଚିବାର ଧାରା ଏବଂ ଜୀବନକୁ ଦେଖିବାର ଭଙ୍ଗୀ ସହ ଜଡ଼ିତ । କଳା କେବଳ ମାନସିକ ପ୍ରକ୍ରିୟା ନୁହେଁ । ଏହା ସହ ଜଡ଼ିତ ସାମାଜିକ, ନୈତିକ ଏବଂ ନାନ୍ଦନିକ ମୂଲ୍ୟବୋଧ । ଏହି ସମସ୍ତଙ୍କୁ ଗ୍ରହଣ କରି ଏକ ଉତ୍ତରିତ ସ୍ତରକୁ ସମାଲୋଚନା କଳାକୁ ଗ୍ରହଣ କରେ; ବିଚାର କରେ ନିଜର କରେ । ଯାନ୍ତ୍ରିକ ମାନଦଣ୍ଡରେ ମାପି ଭଲ ଖରାପ କହିବା ସୁସମାଲୋଚନା ନୁହେଁ। ସମାଲୋଚନା କଳାକୁ କଳା ଭାବରେ ଦେଖିବାର ଧାରା । ତା'ର ରହସ୍ୟମୟତାକୁ ବୁଝିବାର ପ୍ରୟାସ, ତାକୁ ବିଭିନ୍ନ ଭାବରେ ଦେଖି ତା'ର ପ୍ରକୃତ ସ୍ୱରୂପକୁ ହୃଦୟଙ୍ଗମ କରିବାର ପ୍ରୟାସ ।୫୨।

ସୌରୀନ୍ଦ୍ର ବାରିକ୍ ମୁଖ୍ୟତଃ ଜଣେ କବି ପରେ ସମାଲୋଚକ। କବିରଦୃଷ୍ଟି ସମାଲୋଚନାକୁବଳିଷ୍ଠ କରିଛି ।ସୌରୀନ୍ଦ୍ରଙ୍କ କବିତା ଯେପରି ଶବ୍ଦ ଭିତରେ ଜଡ଼ିତ ରହିଥିବା ପୁରୁଣା ସଂପର୍କ ଭିତରୁ ନୂଆ ଅର୍ଥରେ ଗରୀୟାନ ହୋଇ ଉଠେ, ଅନୁରୂପ ଭାବରେ ତାଙ୍କର ସମାଲୋଚନାର ଦିଗଟି ମଧ୍ୟ ସେଇଆ । ସେଇ ସାଧାରଣ ଶବ୍ଦ ଅଥଚ କେମିତି ଚୁମ୍ବକୀୟ ହୋଇଉଠେ ।ନୂଆ ସଂପର୍କ, ନୂଆ ଅର୍ଥ ଓ ନୂଆ ଅନୁଭବକୁଧରିରଖେ । ତେଣୁଶବ୍ଦପଛରେ ମୁଁ ଧାଏଁନି । ନିଜର ପାଣ୍ଡିତ୍ୟ ଦେଖେଇ ତାକୁ ତଉଲେ ନାହିଁ। ମୁଁ ସେହି ଶବ୍ଦକୁ ଧରି ନିଏ ଯହିଁରେ ମୋ' ଅନୁଭବ ଅନୁରଣିତ ହୁଏ । ମୁଁ ଅନୁଭବ କରେ । କାରଣ ଶବ୍ଦ ଜରିଆରେ ତ ମୋର ଏହି କାବ୍ୟ ଜଗତ ସହ ପରିଚୟ ।୫୩।

ଯଦିଓ ସେ ଭାବନ୍ତି କବିତା ବ୍ୟତୀତ ଅନ୍ୟ କିଛି ଲେଖି ପାରିବେ ନାହିଁ ତଥାପି ସେ ପ୍ରବନ୍ଧ ସମାଲୋଚନା ଲେଖନ୍ତି ପୁଣି ଏମିତିକି ପ୍ରବନ୍ଧ ଲେଖିବାକୁଯାଇ କବିତା ଲେଖେ ବୋଲି ସେ କହନ୍ତି। କାରଣ କବିତା ଆବେଗମୟୀ ସମୁଦ୍ର ମନ୍ଥନରୁ ଅମୃତକଳସପରି ଜନ୍ମଲାଭ କରିଥାଏ। ତା' ଆବିର୍ଭାବ ପରେ ଚେତନାରେ ସ୍ଥିରତା ଆସେ। ନିଃଶେଷ ହୋଇ ସବୁ ପାଇଯିବା ପରି ଲାଗେ। ତେଣୁ କବିତା ଲେଖିଲା ବେଳେ ବୋଧହୁଏ ମୁଁ ମତେ ଲେଖୁଥାଏ ଏବଂ ଲେଖୁଥାଏ ବିଭିନ୍ନ ମନସ୍ଥିତିକୁ ମୋ' ଅହଂର ବିଭିନ୍ନ ସ୍ୱରୂପକୁ ।୫୪।

କବିତାରେ ସେ ଯେଉଁ ଚେତନାର କଥା, ସଂପର୍କର କଥାକୁ କହନ୍ତି ସମାଲୋଚନା ଭିତର ଦେଇ ସେହି ବଳିଷ୍ଠ ଦିଗକୁ ସେ ଆବିଷ୍କାର କରନ୍ତି । ତାଙ୍କ ସଂପର୍କ କେବଳ ଯୁକ୍ତି ଅବା ନିର୍ଦ୍ଦିଷ୍ଟତା ଦ୍ୱାରା ବନ୍ଧା ନୁହେଁ; ଅହଂ ବାହ୍ୟ ବାସ୍ତବତାଦ୍ୱାରା ପ୍ରଭାବିତ ହୁଏ ସତ; ମାତ୍ର ଏ ସଂପର୍କ ଠିକ୍ ପାଖେଇ ଆସିଲେ ଅହଂବାହ୍ୟ ସେ ତାକୁ ନିଜ ସ୍ୱଭାବରେ ରୂପାନ୍ତରିତ କରି ଏକ ନୂଆ ସଂପର୍କ ସ୍ଥାପନ କରେ। ଫଳରେ ବାହ୍ୟ ବାସ୍ତବତା ରୂପାନ୍ତରିତ ହୁଏ । ଏହିପ୍ରସଙ୍ଗରେ ମୋର ଅହଂ ଏବଂ ସାଇକେଲ କଥା ମନକୁ ଆସେ ।

ଏଇ ସାଇକେଲଟି କେତେବେଳେ ମୋର ବାହ୍ୟ ବାସ୍ତବତା ଓ କେତେବେଳେ ଏହା ମୋ'ସ୍ମୃତି, ମୋ ସ୍ୱପ୍ନ ! ଲୁହାର ଏଇ ଦୁଇ ଚକିଆ ଯାନଟିକୁ ପଇଁତିରିଶ ବର୍ଷ ଧରି ମୁଁ ନିଜର କରିଛି । ସେ ମୋତେ ମଧ୍ୟ ନିଜର କରିଛି । ମାତ୍ର ଏପରି ସଂପର୍କର କେଉଁ ଏକ ଖଇଫୁଟା ମୁହୂର୍ତ୍ତରେ ମୋ ଅହଂ ସାଇକେଲ ଚଢ଼ାଳି ମଣିଷଟିଏ ନହୋଇ ବାବୁ ପାଲଟି ଯାଉଛି ଏବଂ ସାଇକେଲଟି ରୂପାନ୍ତରିତ ହୋଇଛି ପକ୍ଷୀରାଜରେ, ନୂଆ ସଂପର୍କ ନୂଆ ବାସ୍ତବତାର ସିନ୍ଦୁରା ଫାଟିଛି ।୫୫।

ସୌରୀନ୍ଦ୍ର ବାରିକଙ୍କ ସମାଲୋଚନାର ଧାରାଟି ସରଳ, ଯୁକ୍ତିନିଷ୍ଠ ଓ ଶାଣିତ । ତାଙ୍କର ଯୁକ୍ତି କେବଳ ତତ୍ତ୍ୱାଶ୍ରୟୀ ନୁହେଁ ମଧ୍ୟ ପରନ୍ତୁ ସାବଲୀଳ ଓ ସମ୍ବେଦନଶୀଳ । ବୌଦ୍ଧିକତା ଓ ରସିକତା ଉଭୟର ସମନ୍ୱୟ ହିଁ ତାଙ୍କ ସମାଲୋଚନାର ବଳିଷ୍ଠ ଦିଗ । ସ୍ରଷ୍ଟା ଓ ସୃଷ୍ଟି ଉଭୟରେ ଥିବା ଅଭେଦ୍ୟ ସଂପର୍କର ରହସ୍ୟଟିକୁ ସେ କେବଳ ଉନ୍ମୋଚନ କରନ୍ତି ନାହିଁ ବରଂ ସ୍ରଷ୍ଟାର ସୃଷ୍ଟିକୁ ଆଲୋଚନା କଲାବେଳେ ସେ ଆଲୋଚନାଟି ମଧ୍ୟ ଆଉ ଏକ ସୃଷ୍ଟିରେ ପରିଣତ ହୋଇଯାଏ । ତେଣୁ ସର୍ଜନଶୀଳ ସୃଷ୍ଟିରେ ପରିଣତ ହୋଇଯାଏ । ତେଣୁ ସର୍ଜନଶୀଳ ସୃଷ୍ଟିର ଆଉ ଏକ ଗୁଣବୋଲି ଅଭିହିତ ହୁଏ । ସୌରୀନ୍ଦ୍ରଙ୍କ ଭାଷାରେ, ସ୍ରଷ୍ଟାର ସୃଷ୍ଟିକୁ ଦେଖି ତା' ଭିତରେ ସ୍ରଷ୍ଟା ହୋଇଯିବା ହିଁ ସବୁଠୁ ବଡ଼କଥା । ମୁଁ ସମାଲୋଚନା କଲାବେଳେ ଏକ ଆତ୍ମିକ ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଯାହାକି ଗୋଟିଏ ଶିଳ୍ପୀ ଆଉ ଗୋଟିଏ ଶିଳ୍ପୀର ଆତ୍ମିକ ଅନୁଭବକୁ ନେଇଥାଏ ତା'ର ଦୃଷ୍ଟିଭଙ୍ଗୀରେ । ମୁଁ ଯଦି ପ୍ରାକ୍ ବିଚାର କବଳିତ ହୋଇ ଖାଲି ପ୍ରଶଂସା ବା ନିନ୍ଦା କରିବି ତେବେ ମୁଁ ଭାବଟିଏ ମାତ୍ର ହେବିସିନା ସମାଲୋଚକ ହୋଇପାରିବିନି । ତଥାପି ସମାଲୋଚକ ଓ ସ୍ରଷ୍ଟା ମଧ୍ୟରେ ଗୋଟାଏ ଦୂରତା ରହିବା ଉଚିତ... । ସେ ଦୂରତ୍ୱ ନୈର୍ବ୍ୟକ୍ତିକ (Objectivity) ଓ ସବୁବେଳେ ଦୋସ୍ର ହେବା ଦରକାର ।୫୬।

ସମ୍ବେଦନଶୀଳତା ଓ ସହୃଦୟତା ହିଁ ସମାଲୋଚନାର ଅନ୍ୟ ଏକ ବଳିଷ୍ଠ ଦିଗ । ଯାହା ଉପରେ ଆଲୋଚକ ସୌରୀନ୍ଦ୍ର ବେଶୀ ଗୁରୁତ୍ୱ ଦିଅନ୍ତି । ବୌଦ୍ଧିକତା ଓ ସମ୍ବେଦନଶୀଳତା ମଧ୍ୟରେ ଏକ ସମନ୍ୱୟ ରକ୍ଷା କରିବା ଦିଗରେ ସେବିଶେଷ ଗୁରୁତ୍ୱ ଆରୋପ କରନ୍ତି । ସେଥି ପାଇଁ ସୌରୀନ୍ଦ୍ର କହନ୍ତି ଆମର ସମାଲୋଚକ ମାନେ ପଣ୍ଡିତ ହୋଇ ଯାଇଛନ୍ତି । ରସିକ ପଣଟି ପ୍ରାୟତଃ ଅନେକଙ୍କ ପାଖରେ ନାହିଁ । କଳା ସୃଷ୍ଟିକୁଗୋଟିଏ External Object ଭାବରେ ରଖି ତାକୁ ବ୍ୟବଚ୍ଛେଦ କରୁଛନ୍ତି । କଳାର ମାର୍ମିକ ଅଭିବ୍ୟକ୍ତିକୁ ଗ୍ରହଣ କରିବା ପାଇଁ ଗୋଟିଏ ରସିକ ପଣର ଆବଶ୍ୟକତା ଅଛି । ସମ୍ବେଦନଶୀଳତାର ଆବଶ୍ୟକତା ଅଛି । ବୌଦ୍ଧିକତା ଓ ସମ୍ବେଦନଶୀଳତା ମଧ୍ୟରେ ସନ୍ତୁଳନ ରହୁନାହିଁ । କେତେବେଳେ ବୌଦ୍ଧିକତା ଉପରେ ଗୁରୁତ୍ୱ ଦିଆଯାଉଛିତ କେତେବେଳେ ଆବେଗ ଉପରେ । ଭାରସାମ୍ୟ ଦିଗକୁ ଆମେ କ୍ରମଶଃ ଗତି କରୁଛେ । ମୁଁ ଖୁବ୍ ଆଶାବାଦୀ । ସବୁ କଳା ମଧ୍ୟରେ ଏହି ସହୃଦୟତା ରହିବା କଥା ।୫୭।

## (ଘ) ସ୍ରଷ୍ଟାଙ୍କ ଅନୁବାଦର ଅନନ୍ୟତା:

'ଅନୁ' ଏକ ଉପସର୍ଗ । ଏହାର ଅର୍ଥ ହେଲା ପରେ ବା ପଛରେ । 'ବାଦ୍' ବଦ୍ ଧାତୁରୁନିଷ୍ପନ୍ନ ହୋଇଥିବାରୁ ଏହି ଶବ୍ଦର ଅର୍ଥ ହେଲା କହିବା । ସୁତରାଂ ଉଭୟରମିଳିତରୂପ ଅନୁ-ବାଦ ଅର୍ଥାତ୍ 'ଅନୁବାଦ'ର ଆଭିଧାନିକ ଅର୍ଥ ହେଲା ପରେ କହିବା ବା 'ପଶ୍ଚାତକଥନ' ଆଉ ଟିକିଏ ବୁଝାଇ କହିଲେ ଗୋଟିଏ ଭାଷାରେ ଯାହା କୁହାଯାଇଛି, ତାହାକୁ ପରେ ଅନ୍ୟ ଏକଭାଷାରେ ଅବିକଳ ଭାବରେସେମିତି କହିବାବା ରୂପ ଦେବା ହିଁ ଅନୁବାଦ । ତେଣୁ ଅନୁବାଦରନାମାନ୍ତର ହେଲା ଭାଷାନ୍ତରୀକରଣ ।୫୮।

ଅନେକ ଇଂରାଜୀ ଟ୍ରାନ୍ସଲେସନ ଶବ୍ଦର ପାରିଭାଷିକ ଶବ୍ଦରୂପେ ଅନୁବାଦକୁ ଗ୍ରହଣ କରିଥାଆନ୍ତି । ଅନୁବାଦ କିନ୍ତୁ ଟ୍ରାନ୍ସଲେସନର ଯଥାର୍ଥ ପ୍ରତିଶବ୍ଦ ନୁହେଁ । Translation ଶବ୍ଦରମୂଳ ଅର୍ଥ ହେଲା - ଅନ୍ୟତ୍ର ବହନ କରି ନେବା । ଅବଶ୍ୟ ଗୋଟିଏ ଭାଷାର ଭାବଧାରାକୁ ଅନ୍ୟ ଏକ ଭାଷାକୁ ବହନ କରିନେବା ଅର୍ଥରେ ମଧ୍ୟ ଟ୍ରାନ୍ସଲେସନ କରାଗଲା ବୋଲି କୁହାଯାଇଥାଏ । ଆମେ 'ଅନୁବାଦ' କହିଲେ କେବଳ ଭାଷାନ୍ତର କରଣକୁ ବୁଝୁଥିବା ସମୟରେ ଇଂରାଜୀ ଶବ୍ଦ ଟ୍ରାନସ୍ଲେସନ ଅଧିକ ବ୍ୟାପକ ଅର୍ଥରେ ନିଜକୁ ପ୍ରକାଶ କରିଥାଏ । କଥାକୁ କାର୍ଯ୍ୟରେ ପରିଣତ କରିବାକୁ ମଧ୍ୟ ଟ୍ରାନସ୍ଲେସନ ବୋଲି କୁହାଯାଇ ଥାଏ । ଏପରିକି ପ୍ରକୃତିର ସୌନ୍ଦର୍ଯ୍ୟକୁ ସଙ୍ଗୀତରେ ଟ୍ରାନସ୍ଲେଟ କରିବା ଭଳି ପ୍ରୟୋଗ ମଧ୍ୟ ଇଂରାଜୀ ଭାଷାରେ ଥିବାର ଲକ୍ଷ୍ୟ କରାଯାଏ ।୫୯।

ଅନୁବାଦର ସ୍ୱରୂପ ନିର୍ଦ୍ଧାରଣ କରିବାକୁ ଯାଇ ବିଭିନ୍ନ ସମାଲୋଚକଭିନ୍ନ ଭିନ୍ନ ମତ ପ୍ରଦାନ କରିଥିବାର ଦେଖାଯାଇଥାଏ । ଉଡ୍ରୋ ଇଲସନଙ୍କ ଭାଷାରେ ଅନୁବାଦ ପାଠ କରିବା ଅର୍ଥ ମୂଳ ଗ୍ରନ୍ଥର ଖଣ୍ଡିତ ଓ ବିକଳାଙ୍ଗ ରୂପ ସନ୍ଦର୍ଶନ କରିବା । ଗ୍ରାଣ୍ଟ ସାଓ୍ବରମେନଙ୍କ ମତରେ ଅନୁବାଦ କରିବାପାପ । ବିଶିଷ୍ଟ ଚିନ୍ତାନାୟକ ଭଲ୍‌ଟେୟାର ମଧ୍ୟ କହିଥିଲେ - କୌଣସି କୃତିର ଅନୁବାଦ ତାହାର ଦୋଷକୁ ବଢ଼ାଇ ଦେଇଥାଏ ଓ ତା'ର ଗୁଣକୁ ବିଦ୍ରୂପ କରିଥାଏ । ସେହିପରି ବେଞ୍ଜାମିନ ଜାଓ୍ବେଟ୍ ମାଥ୍ୟୁ ଆରନୋଲଡ, ଡଃ ଜନ୍‌ସନ, ଭରଜିନିଆ ଉଲ୍‌ଫ, ଜେନସ ହୋଓ୍ବଲ କ୍ରୋଚେ, କଲିଙ୍ଗ ଉଡ୍, ଭିକ୍ଟର ହ୍ୟୁଗୋ, କାରଭାନଟିସି ଏବଂ ନିଉମେନ ପ୍ରମୁଖ ବହୁ ବିଶିଷ୍ଟ ସାହିତ୍ୟିକ ଓ ସମୀକ୍ଷକ ମୂଳ ରଚନାର ଯଥାର୍ଥ ଅନୁବାଦ କସ୍ମିନ କାଳେ ସମ୍ଭବ ନୁହେଁ ଏବଂ ତାହା କେବଳ ମିଥ୍ୟାଚାର ଅଥବା ତହିଁରେ ଆଂଶିକ ସଫଳତା ହୁଏତ ମିଳିପାରେ ବୋଲି ମତବ୍ୟକ୍ତ କରିଅଛନ୍ତି । ବିଖ୍ୟାତ ଫରାସୀ କଥା ଶିଳ୍ପୀ ଆନାତୋଲ ଫ୍ରାଙ୍କଙ୍କ ମତରେ Translations like women are either faithful or beautiful but rarely both।୬୦।

ବାସ୍ତବରେ ଅନୁବାଦପ୍ରାୟତଃ ବିଶ୍ୱସ୍ତ ଅଥବା ସୁନ୍ଦର ହୋଇପାରେ; କିନ୍ତୁ କ୍ୱଚିତ ଉଭୟ ଗୁଣର ଅଧିକାରୀ ହୋଇଥାଏ । ଏହି ଉଭୟ ଗୁଣ - ଅର୍ଥାତ୍ ବିଶ୍ୱସ୍ତ ଓ ସୌନ୍ଦର୍ଯ୍ୟର

ମଧୁର ସମନ୍ୱୟ ଯେଉଁ ଅନୁବାଦରେ ପରିଦୃଷ୍ଟ ହୋଇଥାଏ, ତାହାକୁ ନିର୍ବିବାଦରେ ଯେ ସାର୍ଥକ ଅନୁବାଦ କୁହାଯାଇପାରେ, ଏଥିରେ କାହାରି ଦ୍ୱିମତ ହେବାରନାହିଁ। ଇତାଲୀୟ ଭାଷାରେ ଏକ ପ୍ରବାଦ ରହିଅଛି - 'ଟ୍ରେଡୁଟୋରୀ ଟ୍ରେଡ୍‌ଟୋରାଇ' ଯାହାର ଅର୍ଥ Translators are traitors ବା ଅନୁବାଦକମାତ୍ରେ ହିଁ ପ୍ରବଞ୍ଚକ। ପ୍ରକୃତରେ ଉପରୋକ୍ତ ମତାମତ ଗୁଡ଼ିକ ସମ୍ପୂର୍ଣ୍ଣତଃ ଉପେକ୍ଷଣୀୟ ନୁହେଁ। ପ୍ରତ୍ୟେକ ଭାଷାର କିଞ୍ଚିତ ପରିମାଣରେ ନିଜସ୍ୱ ବୈଶିଷ୍ଟ୍ୟ ନିଶ୍ଚିତଭାବରେ ରହିଛି। ତାହାର କେତେକ ଶବ୍ଦରେ ଆନୁଷଙ୍ଗିକ କିଛି ଭାବ ବିଳାସ ରହିଛି। ସେହି ଦୃଷ୍ଟିରୁମୂଳ ରଚନାର ଆକ୍ଷରିକ ବା ଅବିକଳ ଅନୁବାଦ ସର୍ବଦା ସମ୍ଭବ ନୁହେଁ।୬୧।

ସମ୍ଭବ ହେଲେ ବି ପାଠକ ନିକଟରେ ସମୟ ସମୟରେ ତାହା ରସହୀନ ଓ ବିରକ୍ତିକର ହୋଇପାରେ। ଫଳତଃ ସ୍ଥଳ ବିଶେଷରେ ଅନୁବାଦକମୂଳ ରଚନା ପ୍ରତି ବିଶ୍ୱସ୍ତ ନହୋଇ ନିଜର ଇଚ୍ଛା ବିରୁଦ୍ଧରେ ମଧ୍ୟ ବାଧ୍ୟହୋଇ ପ୍ରବଞ୍ଚକ ସାଜିଥାଏ।

ଅନ୍ୟ ଦୃଷ୍ଟିରୁ ଅନୁବାଦର ସପକ୍ଷରେ ମଧ୍ୟ କେତେକ ସମୀକ୍ଷକ ଦୃଢ଼ ଭାବରେ ଯୁକ୍ତି ଉପସ୍ଥାପନ କରିଥାନ୍ତି। ବରେଣ୍ୟ ସାହିତ୍ୟିକ ଗେଟେଙ୍କଭାଷାରେ - 'ଏକ ଉତ୍ତମ ଅନୁବାଦ ଆମ୍ଭମାନଙ୍କୁ ବହୁଦୂର ପଥର ଯାତ୍ରୀ କରେ।' ଇଂରାଜୀ ସାହିତ୍ୟର ସର୍ବଶ୍ରେଷ୍ଠ ଅନୁବାଦକ ଓ ବିଶିଷ୍ଟ କବି ଏଡ୍‌ୱାଡ୍ ଫିଜ୍ କେରାଲଡ୍‌ଅନୁବାଦ ସଂପର୍କରେ ନିଜର ଅଭିମତ ଦେବାକୁ ଯାଇ ପ୍ରକାଶ କରିଛନ୍ତି - ମୃତ ସିଂହ ଅପେକ୍ଷା ଜୀବନ୍ତ କୁକୁର ଅଧିକ ଶ୍ରେୟ।' ତାଙ୍କର ଅନୁଦିତ ରୁବାୟତ୍ ଅଫ୍ ଓମର ଖାୟାମ୍ ୧୮୫୯ରେ ପ୍ରକାଶିତ ଇଂରାଜୀ ଭାଷାର ଏକ ଅନନ୍ୟ ଅନୁପମ ଅନୁବାଦଗ୍ରନ୍ଥ ଭାବରେ ବିଶ୍ୱ ପ୍ରସିଦ୍ଧି ଲାଭ କରିଛି। ସେହି ଭଳି ଅନୁବାଦର ସପକ୍ଷରେ ମତଦେବାକୁ ଯାଇ ଅନ୍ୟ ଯେଉଁ ବିଶିଷ୍ଟ ସମୀକ୍ଷକ ଗଣ ବିଭିନ୍ନ ଦୃଷ୍ଟିକୋଣରୁ ଅନୁବାଦର ମହତ୍ୱ ଓ ଗୁରୁତ୍ୱ ପ୍ରଦର୍ଶନ କରିଅଛନ୍ତି, ସେମାନଙ୍କ ମଧ୍ୟରେ - ହୁମବୋଲ୍‌ଟ, ଫିଲିମୋର, ଲିରେଞ୍ଜୋ ଲାଞ୍ଜ ଏବଂ ସାଭେରୀ ପ୍ରମୁଖଙ୍କ ନାମ ଉଲ୍ଲେଖ ଯୋଗ୍ୟ।

ସାହିତ୍ୟର ଅନ୍ୟ ସମସ୍ତ ବିଭାଗ ଭଳି ଅନୁବାଦ ମଧ୍ୟ ବହୁ ପ୍ରାଚୀନ କାଳରୁ ରୂପପାଇ ଆସିଛି। ଆଲୋଚକ T.H. Savoryଙ୍କ ଭାଷାରେ Translation is almost as old as original authorship and has a history as honourable and as complex as that of any other branch of literature।୬୨।

ଅନୁବାଦର ଦୁଇଟି ଦିଗ। ଗୋଟିଏ ଆବେଦନ ଅନ୍ୟଟି ସୃଷ୍ଟି। ଏହି ଦୁଇଟି କ୍ଷେତ୍ରରେ ଅନୁବାଦକର କ୍ଷେତ୍ର ସୀମିତ। ମୂଳଲେଖାର ଅନୁଭୂତିଟି ଅନୁବାଦକର ନିଜସ୍ୱ ନୁହେଁ ପୁଣି ଯେଉଁ ଭାଷାରୁ ଅନୁବାଦକ ଅନୁବାଦ କରନ୍ତି ସେ ଭାଷା ମଧ୍ୟ ତାଙ୍କର ନିଜସ୍ୱ ନୁହେଁ। ମୂଳ ରଚନାର ଅନୁଭୂତି ସହ ଜଡ଼ିତ ଥାଏ ତାହାର ଜଗତ, ସଂସ୍କୃତି ପୁଣି ତା'ର ସମୟ ଓ ଇତିହାସ। ଏହା ସହିତ ଜଡ଼ିତ ତା'ର ନିତିଦିନିଆ ଚଳଣୀ। ଏ

ସମସ୍ତଙ୍କୁ ସାମ୍ନା କରିବାକୁ ପଡ଼ିଥାଏ ଅନୁବାଦକକୁ । ସୃଷ୍ଟିର ମୂଳମନ୍ତ୍ର ଆନ୍ତରିକତା, ଆତ୍ମିକତା ମାତ୍ର ଅନୁବାଦକକୁ ପ୍ରଥମେ ଦୂରତା ଓ ଭିନ୍ନତା ସହ ଭେଟିବାକୁ ପଡ଼େ । ନିଜସ୍ୱ ଜଗତ, ଅନୁଭୂତି ଓ ଭାଷା ଧରି ସେ ଅନ୍ୟ ଏକ ଭିନ୍ନ ଜଗତକୁ ନିଜର କରିଥାଏ । ସେ ନିଜର କରେ ଉଭୟ ବୌଦ୍ଧିକଏବଂ ଆତ୍ମିକ ସ୍ତରରେ । ଏଇ ଭିନ୍ନତାର ଆତ୍ମିକତା ହିଁ ଅନୁବାଦର ପ୍ରଥମ ପାହାଚ । ଏପରି ଆତ୍ମୀକରଣର ସମ୍ଭବ ହୁଏ ଭଲ ପାଇବା ଓ ସହୃଦୟତାରୁ । ଏହା ବ୍ୟତୀତ ଅନ୍ୟ ଏକ କାରଣ ହେଉଛି ପ୍ରୟୋଜନୀୟତା ବୋଧ । ଅନୁବାଦକ ଅନୁଭବ କରେ ମୂଳ ରଚନାର ଗୁରୁତ୍ୱ, ତା'ର ପ୍ରଭାବ ଏବଂ ତହିଁରେ ଥିବା ସୂକ୍ଷ୍ମ ଅନୁଭବର ସାର୍ବଜନୀନତା । ତେଣୁ ଏ ସଂପର୍କ ଅତି ନିବିଡ଼ ଓ ଜଟିଳ । ଏସଂପର୍କରେ ସମନ୍ୱିତ ହୁଏ ଆବେଗ, ଜ୍ଞାନ ଓ ଉପଲବ୍ଧି । କେବଳ ଜ୍ଞାନ ଏବଂ ପାଣ୍ଡିତ୍ୟକୁ ଆଧାରକରି ଜଣେ ଶିଳ୍ପୀକୁ ନିଜର କରିବାକୁ ଗଲେ ଏହା ଅପୂର୍ଣ୍ଣତାର ଶିକାର ହୁଏ । କେବଳ ଶବ୍ଦାର୍ଥର ବୁଝାମଣା ଭିତରେ ଏ ଅନୁଭୂତି ଛନ୍ଦି ହୋଇଯାଏ ।୬୩। ବନ୍ଦୀ ହୋଇଯାଏ ଭାଷାର ବ୍ୟାକରଣଗତ ସଠିକତା ସ୍ତରରେ ଏବଂ ଏପରି ନିଜସ୍ୱ କରଣକୁ ସୃଷ୍ଟିଶୀଳ ଅନୁବାଦକମାନେ ପାଷାରନାକଙ୍କ ପରି ହସି ହସି ଉଡାଇ ଦେଇଥାନ୍ତି । ତେଣୁ ଅନୁବାଦକର ଆତ୍ମୀକରଣରଧାରା ଜଟିଳ । ଏହା କେନ୍ଦ୍ରାଭିମୁଖୀ । ଏହା କାବ୍ୟିକ ବୌଦ୍ଧିକତାର ପରିଧିରୁ ଆନ୍ତରିକତାର କେନ୍ଦ୍ର ଆଡକୁ ଧାବିତ ଏକ ଚେତନା । ସଚେତନ ବୌଦ୍ଧିକ ସାଧନା ବିଶେଷରେ ଅହଂର ଉପଲବ୍ଧିରେ ଏକୀଭୂତ ହୁଏ । ଲେଖକ ଓ ଅନୁବାଦକର ଅହଂ ଏକ ହୁଏ । ତେଣୁ ଏହା ଅନ୍ଧ ଅନୁରାଗ ନୁହେଁ; ଏକ ସଚେତନ ଉପଲବ୍ଧି, ଏକ ରହସ୍ୟମୟୀ ଆବିଷ୍କାର । ଅନ୍ତରଂଗତା ଏବଂ ଅବୈ୍ୟକ୍ତିକତାର ବିରୋଧାଭାସୀ ସମନ୍ୱୟ । ଏହି ସମନ୍ୱୟରୁ ଜନ୍ମ ନିଏ ସୃଷ୍ଟି, ତାହା ହୁଏ ସଫଳ ଅନୁବାଦ ।୬୪।

ଅନୁବାଦକର ମୁଖ୍ୟତଃ ତିନୋଟି ଭୂମିକା ସଂବେଦନଶୀଳ । ପ୍ରଥମେ ପାଠକ ଭାବରେ ସେ ମୂଳ ଲେଖାର ଭାବ ଏବଂ ଅର୍ଥକୁ ଗ୍ରହଣ କରେ, ନିଜସ୍ୱ କରେ । ଦ୍ୱିତୀୟ ସ୍ତରରେ ମୂଳ ଲେଖାର ଅନୁଭୂତ ଭାବ ଏବଂଅର୍ଥକୁ ଗ୍ରହଣ କରେ । ନିଜସ୍ୱ କରେ ଦ୍ୱିତୀୟ ସ୍ତରରେ ମୂଳ ଲେଖାର ଅନୁଭୂତ ଭାବ ଏବଂ ଅର୍ଥକୁ । ଅନ୍ୟ ଏକ ଭାଷା ଏବଂ ସଂସ୍କୃତିପରିପ୍ରେକ୍ଷୀରେ ପରିବେଷଣ କରେ । ଏହି ପରିବେଷଣ ମୁଖ୍ୟତଃ ଦୁଇଟି ଧାରାରେ ହୋଇଥାଏ । ଗୋଟିଏ ଭାଷା ଅନ୍ୟଟି ସଂସ୍କୃତି । ପରିଶେଷରେ ପରିବେଶିତ ବସ୍ତୁଟିକୁ ନିଜସ୍ୱ ଭାବରେ ଗଢ଼ିତୋଳେ । ସିଏ ପାଲଟିଯାଏ ସ୍ରଷ୍ଟା । ସ୍ରଷ୍ଟା ଚାହେଁ ସ୍ୱାଧୀନତା । ନିଜ ପାଖରେ ସତ୍ୟଶୀଳତା । ମାତ୍ର ଅନୁବାଦକ ଏପରି ଜଣେ ସ୍ରଷ୍ଟା ଯାହାର ସ୍ୱାଧୀନତା ସୀମିତ । ଅନୁଭୂତି ତା'ର ନିଜସ୍ୱ ନୁହେଁ । ଲେଖକ ଯେପରି ଭାବରେ ବାସ୍ତବତାକୁ ଅନୁଭବିଛି ଏବଂ ରୂପ ଦେଇଛି, ସେହି ଭାବରେସେ ତାକୁ ନିଜସବ କରେ ।୬୫।

Edmund Burkeଙ୍କର ଇଂରାଜୀ ପୁସ୍ତକ "Philosophical inquiry into the origin of our ideas of the sublime and beautiful"ର ଓଡ଼ିଆ ଅନୁବାଦ କବି ସୌରୀନ୍ଦ୍ର ବାରିକ୍‌ଙ୍କ ଅନୁବାଦ ସାହିତ୍ୟ ଜଗତକୁ ଅନନ୍ୟ ଅର୍ଘ୍ୟ । ମହାନ୍ ଓ ସୁନ୍ଦର

ଧାଣ୍ଣୋର ମୂଳଉସ - ଏକତାତ୍ତ୍ୱିକ ଜିଜ୍ଞାସା' ଶୀର୍ଷକ ଅନୁବାଦ ଗ୍ରନ୍ଥଟି ଏକ ଉପାଦେୟ ଅନୁବାଦ ପୁସ୍ତକ। ବାର୍କଙ୍କର ମହାନ ଏବଂ ସୁନ୍ଦର ସଂପର୍କରେ ପୁସ୍ତକଟି ଅଷ୍ଟାଦଶ ଶତାବ୍ଦୀର ଜଟିଳ ଚେତନା ଏବଂ ବିଶ୍ଳେଷଣାତ୍ମକ ଦୃଷ୍ଟିକୋଣର ସାର୍ଥକ ପରିପ୍ରକାଶ। ଏହି ଚେତନା ପୁଣି ପ୍ରକାଶିତ ହୋଇଛି ବାର୍କଙ୍କର ଶୈଳୀର ଜଟିଳତା ମାଧ୍ୟମରେ। ଜଟିଳ ଭାଷାକୁ ଯେତେ ଦୂରସମ୍ଭବ ଅନୁବାଦକ ସୌରୀନ୍ଦ୍ର ନିଜ ଭାଷାରେ ଲେଖକର ସୂକ୍ଷ୍ମ ଚିନ୍ତାକୁ ବ୍ୟାହତ ନକରି କଥିତ ଭାଷା ଓ ଭଙ୍ଗୀକୁ ମାଧ୍ୟମ ରୂପରେ ଗ୍ରହଣ କରି ଅନୁବାଦ କରିଛନ୍ତି।

ବିଶ୍ୱବିଖ୍ୟାତ ଜର୍ମାନ ଔପନ୍ୟାସିକ ଫ୍ରାଁ କାଫ୍‌କାଙ୍କ 'The Trial'ର ଓଡ଼ିଆ ଅନୁବାଦ କବି ସୌରୀନ୍ଦ୍ର ବାରିକ 'ବିଚାର' ଶୀର୍ଷକରେ ରଚନା କରିଛନ୍ତି। ଅସଂପୂର୍ଣ୍ଣ ଉପନ୍ୟାସକୁ ସୁନ୍ଦର ଭାବରେ ଅନୁବାଦ କରିଛନ୍ତି ଅନୁବାଦକ ସୌରୀନ୍ଦ୍ର। ସ୍ୱଭାବ ସୁଲଭ ଶବ୍ଦରେ ଯେପରି ଅନୁବାଦ କରିଛନ୍ତି ତାହା ଅନନ୍ୟ ସାଧାରଣ। ଓଡ଼ିଆ ସାହିତ୍ୟ ଏାକଡେମୀ ଦ୍ୱାରା ପ୍ରକାଶିତ 'ବିଚାର' ଅନୁବାଦ ପୁସ୍ତକଟି ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଛି।

ବଙ୍ଗଳାର ବିଶିଷ୍ଟ ଲେଖକ ବୁଦ୍ଧଦେବ ଗୁହଙ୍କ ପୁସ୍ତକ 'ନଗ୍ନ ନିର୍ଜନ' ଶୀର୍ଷକରେ ଅନୁବାଦ କରି ସୌରୀନ୍ଦ୍ର ବାରିକ ନିଜସ୍ୱ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି। ଅସଂପୂର୍ଣ୍ଣ ଉପନ୍ୟାସକୁ ସୁନ୍ଦର ଭାବରେ ଅନୁବାଦ କରିଛନ୍ତି ଅନୁବାଦକ ସୌରୀନ୍ଦ୍ର। ସ୍ୱଭାବ ସୁଲଭ ଶବ୍ଦରେ ଯେପରି ଅନୁବାଦ କରିଛନ୍ତି ତାହା ଅନନ୍ୟ ସାଧାରଣ। ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ବିଚାର' ଅନୁବାଦ ପୁସ୍ତକଟି ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଛି।

ବଙ୍ଗଳାର ବିଶିଷ୍ଟ ଲେଖକ ବୁଦ୍ଧଦେବ ଗୁହଙ୍କ ପୁସ୍ତକ 'ନଗ୍ନ ନିର୍ଜନ' ଶୀର୍ଷକର ଅନୁବାଦ କରି ସୌରୀନ୍ଦ୍ର ନିଜସ୍ୱ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି।

ସଙ୍କେତ ସୂଚୀ :-

୧- ମୂଲ୍ୟାୟନ : ପୃଷ୍ଠା : ୯୬
ପ୍ରଥମ ସଂକଳନ : ୧୯୭୬, ସଚ୍ଚିରାଉତ ରାୟ : ସିଡ଼ି ଓ ଚଷମା

୨- ସତ୍ୟର କୁହୁକ : ପୃଷ୍ଠା : ୧୩୫-୧୩୬
ପ୍ରଥମ ସଂସ୍କରଣ : ୧୯୯୦, ସୌରୀନ୍ଦ୍ର ବାରିକ୍

୩- ତତ୍ରୈବ : ପୃଷ୍ଠା : ୧୩୫

୪- ତତ୍ରୈବ : ପୃଷ୍ଠା : ୧୩୬

୫- ସଂଯୋଗ : ପୃଷ୍ଠା : ୯୯
ପ୍ରକାଶ କାଳ : ୧୯୮୩, ନଟବର ପାଣିଗ୍ରାହୀ : ମୋ ଦୃଷ୍ଟିରେ ଉପଭାରତ

୬- ଉପଭାରତ : ପୃଷ୍ଠା : ୨୮
ପ୍ରଥମ ପ୍ରକାଶ : ୧୯୮୨, ସୌରୀନ୍ଦ୍ର ବାରିକ୍

୭- ପାଠକୀୟ ମନ୍ତବ୍ୟ : ପୃଷ୍ଠା : ୭୦
ପ୍ରଥମ ପ୍ରକାଶ : ୧୯୯୮, କୁମୁଦରଂଜନ ପାଣିଗ୍ରାହୀ

୮- ସଂଯୋଗ : ପୃଷ୍ଠା : ୧୦୦
ପ୍ରକାଶ କାଳ : ୧୯୮୩, ନଟବର ପାଣିଗ୍ରାହୀ : ମୋ ଦୃଷ୍ଟିରେ ଉପଭାରତ

୯- ପାଠକୀୟ ମନ୍ତବ୍ୟ : ପୃଷ୍ଠା : ୭୨
ପ୍ରଥମ ପ୍ରକାଶ : ୧୯୯୮, କୁମୁଦରଂଜନ ପାଣିଗ୍ରାହୀ

୧୦- କ୍ରାନ୍ତିଧାରା : ପୃଷ୍ଠା : ୧୫
ପ୍ରକାଶ ସଂଖ୍ୟା : ୧୯୯୮, ଅଶୋକ କୁମାର ତ୍ରିପାଠୀ :
ସୌରୀନ୍ଦ୍ରଙ୍କ କାବ୍ୟମାନସ ଓ ଆକାଶ ପରି ନିବିଡ଼।

୧୧- ସାଂପ୍ରତିକ କବିତା ସମୀକ୍ଷା : ପୃଷ୍ଠା:୯୫
ପ୍ରଥମ ପ୍ରକାଶ : ୧୯୯୦, ରୋହିଣୀକାନ୍ତ ମୁଖାର୍ଜି

୧୨- ଆକାଶ ପରି ନିବିଡ଼ : ପୃଷ୍ଠା : ୧୪
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ

୧୩- ଇସ୍ତାହାର : ପୃଷ୍ଠା : ୯
ସଂଖ୍ୟା: ୭, ଜୟନ୍ତ କୁମାର ବିଶ୍ୱାଳ : ଶୂନ୍ୟତାର ଛନ୍ଦ କବି ସୌରୀନ୍ଦ୍ର ବାରିକଙ୍କ କବିତାର ଏକ ଆଲୋଚନା

୧୪- ଗୁଣୁ ଗୁଣୁ ଚିତ୍ରପଟ : ପୃଷ୍ଠା : ୧
ପ୍ରଥମ ପ୍ରକାଶ : ୧୯୮୬, ସୌରୀନ୍ଦ୍ର ବାରିକ

୧୫- ସ୍ୱପ୍ନ ସଂପର୍କ ସ୍ୱୀକାରୋକ୍ତି : ପୃଷ୍ଠା:୧୦
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୧୬- Intimacy of Eptiness: Page : 109
First Published : 1989, Bidhubusan Das

୧୭- ଆଧୁନିକ ଓଡ଼ିଆ କବିତାର ପରିଚୟ : ପୃଷ୍ଠା : ୧୨୧
ପ୍ରଥମ ପ୍ରକାଶ : ୨୦୦୨, ନାରାୟଣ ପଣ୍ଡା

୧୮- ଅନୁଭାରତ : ପୃଷ୍ଠା : ଖ
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ

୧୯- ଆଧୁନିକ ଓଡ଼ିଆ କବିତାର ପରିଚୟ : ପୃଷ୍ଠା: ୧୨୨
ପ୍ରଥମ ପ୍ରକାଶ : ୨୦୦୨, ନାରାୟଣ ପଣ୍ଡା

୨୦- ଅନୁରୂପ : ପୃଷ୍ଠା : ୫୪
ପୂଜା ସଂଖ୍ୟା : ୧୯୯୮, ମନମୋହନ ଦାଶ : ଚକ୍ରବ୍ୟୂହରେ ଜୀବନ ଓ ଉପଭାରତ ବନାମ ମହାଭାରତ।

୨୧- ପଶ୍ଚିମା : ପୃଷ୍ଠା : ୩୮
ପୂଜାସଂଖ୍ୟା : ୧୯୯୮, ମନମୋହନ ଦାଶ : ଅସଫଳ
ବିଜୟର କୁଆଁରାବ : ଆମେ ଦୁହେଁ ।

୨୨- ଆମେ ଦୁହେଁ : ପୃଷ୍ଠା : ପଦେ
ପ୍ରଥମ ପ୍ରକାଶ : ୧୯୯୧, ସୌରୀନ୍ଦ୍ର ବାରିକ୍

୨୩- ତତ୍ରୈବ : ପୃଷ୍ଠା : ୧

୨୪- ଚହଲା ଛାଇରେ ଘଡ଼ିଏ : ପୃଷ୍ଠା : ମୁଖବନ୍ଧ
ପ୍ରଥମ ପ୍ରକାଶ : ୧୯୯୫, ସୌରୀନ୍ଦ୍ର ବାରିକ୍

୨୫- ତତ୍ରୈବ : ମୁଖବନ୍ଧ

୨୬- ପଢ଼ ବା ନପଢ଼ : ପୃଷ୍ଠା : ୧
ପ୍ରଥମ ପ୍ରକାଶ : ୧୯୯୭, ସୌରୀନ୍ଦ୍ର ବାରିକ୍

୨୭- ତତ୍ରୈବ

୨୮- ହଳଦୀ ବସନ୍ତ : ପୃଷ୍ଠା : ୪
ପ୍ରଥମ ପ୍ରକାଶ : ୧୯୯୯, ସୌରୀନ୍ଦ୍ର ବାରିକ୍

୨୯- ଆମ ଦୁହିଁଙ୍କ କଥା : ପୃଷ୍ଠା : ପଦେ
ପ୍ରଥମ ପ୍ରକାଶ : ୨୦୦୧, ସୌରୀନ୍ଦ୍ର ବାରିକ

୩୦- ଯେତେ ସବୁ ବୀଥିକୁ ନେଇ : ପୃଷ୍ଠା: ୧୦୦
ପ୍ରଥମ ପ୍ରକାଶ : ୨୦୦୩, ସୌରୀନ୍ଦ୍ର ବାରିକ

୩୧- ମସୀର ମନୀଷା : ପୃଷ୍ଠା : ଭୂମିକା
ପ୍ରଥମ ପ୍ରକାଶ : ୨୦୦୬, ନାରାୟଣ ପଣ୍ଡା

୩୨- ଝଙ୍କାର : ପୃଷ୍ଠା : ୬୫୯
୪୦ ଶ ବର୍ଷ : ଶାରଦୀୟ ସଂଖ୍ୟା : ୧୯୮୮, ଚିନ୍ତାମଣି ବେହେରା
ସୃଷ୍ଟି, ସ୍ରଷ୍ଟା ଓ ସମୀକ୍ଷା

୩୩- ତତ୍ରୈବ

୩୪- ତତ୍ରୈବ

୩୫- ତତ୍ରୈବ

୩୬- ତତ୍ରୈବ

୩୭- ଅନ୍ୱେଷାର ସ୍ୱର : ପୃଷ୍ଠା:୧
ପ୍ରଥମ ପ୍ରକାଶ : ୧୯୮୦, ସୌରୀନ୍ଦ୍ର ବାରିକ୍

୩୮- ତତ୍ରୈବ

୩୯- ଚେତନାର ଚୌହଦୀ : ପୃଷ୍ଠା : ୨୩
ପ୍ରଥମ ପ୍ରକାଶ : ୧୯୮୩, ସୌରୀନ୍ଦ୍ର ବାରିକ୍

୪୦- ତତ୍ରୈବ: ପୃଷ୍ଠା : ୭୭

୪୧- ସତ୍ୟର କୁହୁକ : ପୃଷ୍ଠା ୫
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୪୨- ବାମନର ପାଦ : ପୃଷ୍ଠା:୧
ପ୍ରଥମ ପ୍ରକାଶ : ୧୯୯୧, ସୌରୀନ୍ଦ୍ର ବାରିକ୍

୪୩- ଶବ୍ଦ ସବୁ ସରିଗଲେ : ପୃଷ୍ଠା : ୮
ପ୍ରଥମ ପ୍ରକାଶ : ;୧୯୯୪, ସୌରୀନ୍ଦ୍ର ବାରିକ୍

୪୪- ଉଦାର ନରସିଂହ : ପୃଷ୍ଠା : ୬୬
ପ୍ରଥମ ସଂସ୍କରଣ : ୧୯୯୬, ସୌରୀନ୍ଦ୍ର ବାରିକ୍

୪୫- ସାଂପ୍ରତିକ କାଳ ଓ ଚିରନ୍ତନ କବି : ପୃଷ୍ଠା : ୧୧
ପ୍ରଥମ ସଂସ୍କରଣ : ୧୯୯୯, ସୌରୀନ୍ଦ୍ର ବାରିକ୍

୪୬- ଭଗ୍ନାଂଶର ସଂହିତା : ପୃଷ୍ଠା : ୩୧
ପ୍ରଥମ ପ୍ରକାଶ : ୨୦୦୮, ସୌରୀନ୍ଦ୍ର ବାରିକ୍

୪୭- ଉଦାର ନରସିଂହ : ପୃଷ୍ଠା : ୯୫
ପ୍ରଥମ ସଂସ୍କରଣ : ୧୯୯୬, ସୌରୀନ୍ଦ୍ର ବାରିକ୍

୪୮- ତତ୍ରୈବ : ପୃଷ୍ଠା : ୯୫

୪୯- ତତ୍ରୈବ : ପୃଷ୍ଠା : ୯୬

୫୦- ତତ୍ରୈବ : ପୃଷ୍ଠା : ୯୬

୫୧- ସତ୍ୟର କୁହୁକ : ପୃଷ୍ଠା : ୫୭
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୫୨- ତତ୍ରୈବ : ପୃଷ୍ଠା : ୫୭

୫୩- ଉଦାର ନରସିଂହ : ପୃଷ୍ଠା : ୧୧୫
ପ୍ରଥମ ସଂସ୍କରଣ : ୧୯୯୬, ସୌରୀନ୍ଦ୍ର ବାରିକ୍

୫୪- ତତ୍ରୈବ : ପୃଷ୍ଠା : ୧୧୨

୫୫- ତତ୍ରୈବ : ପୃଷ୍ଠା : ୧୧୩

୫୬- ଜନସୁଧା : ମଇ : ୨୦୦୩
କବି ସୌରୀନ୍ଦ୍ର ବାରିକଙ୍କ ସହ ଏକ ଅନ୍ତରଂଗ
ସାକ୍ଷାତକାର : ପୃଷ୍ଠା : ୭-୮

୫୭- ତତ୍ରୈବ : ପୃଷ୍ଠା : ୭

୫୮- ଅନୁବାଦ ତତ୍ତ୍ୱ ଓ ପ୍ରୟୋଗ : ପୃଷ୍ଠା : ୧୭
ପ୍ରଥମ ପ୍ରକାଶ : ୨୦୦୦, ସଂକଳକ : ଡ. ମନୋରଞ୍ଜନ ପ୍ରଧାନ
ଲେଖକ : ଡ. ସୁବୋଧ କୁମାର ଚାଟାର୍ଜୀ : ଅନୁବାଦର ସଂଜ୍ଞା ଓ ସ୍ୱରୂପ

୫୯- ତତ୍ରୈବ : ପୃଷ୍ଠା : ୧୭

୬୦- ତତ୍ରୈବ : ପୃଷ୍ଠା : ୧୭

୬୧- ତତ୍ରୈବ : ପୃଷ୍ଠା : ୧୮

୬୨- The Art of Translation : Page : 37
Published : 1969. T.H. Savory

୬୩- ସଂପ୍ରତିକ କାଳ ଓ ଚିରନ୍ତନ କବି : ପୃଷ୍ଠା : ୯୮
ପ୍ରଥମ ପ୍ରକାଶ : ୧୯୯୯, ସୌରୀନ୍ଦ୍ର ବାରିକ

୬୪- ତତ୍ରୈବ : ପୃଷ୍ଠା : ୯୯

୬୫- ତତ୍ରୈବ : ପୃଷ୍ଠା : ୯୯

# ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଆଙ୍ଗିକ ଓ ଆତ୍ମିକ ବିଶ୍ଲେଷଣ

## କବିସୌରୀନ୍ଦ୍ର ବାରିକ୍‌ଙ୍କ କବିତାରେ ଭାଷା, ଶବ୍ଦ, ଛନ୍ଦ, ଶୈଳୀର ସ୍ୱତନ୍ତ୍ରତା

ଭାଷା ଶବ୍ଦ : କବିତାରେ ଭାଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭାଷା ଜୀବନ୍ୟାସ ପାଏ କବିତାରେ । ଭାବ ଭାଷା ମାଧ୍ୟମରେ ପ୍ରକାଶିତ ହୁଏ କବିତାରେ । ଭାବକୁ ନେଇ ଭାଷା କବିତାକୁ ପରିପୁଷ୍ଟ କରେ । କବି କବିତାରେ ସ୍ଥାନ କାଳ ପାତ୍ର ଅନୁସାରେ ଭାଷା ବ୍ୟବହାର କରେ । କେତେବେଳେ କବି ଗ୍ରାମୀଣ ଶବ୍ଦ ବ୍ୟବହାର କରି କବିତା ରଚନା କରେ ତ ଆଉ କେତେବେଳେ କବି ମଣିଷ ମୁଖର ଭାଷାକୁ କବିତାରେ ଉପସ୍ଥାପନା କରେ । ଭାଷାର ଉପସ୍ଥାପନ ଶୈଳୀ କବିତାରେ ସ୍ୱତନ୍ତ୍ର । ଭାଷା ହିଁ କବିତାକୁ ରସୋତ୍ତୀର୍ଣ୍ଣ କରେ ।

କବିତାରେ ଭାଷା ଓ ଶବ୍ଦ ବିଷୟରେ ମତ ପ୍ରଦାନ କରବାକୁ ଯାଇ ପଲ ଭାଲେରୀ ପ୍ରକାଶ କରିଛନ୍ତି :- What is poetry ? It is an art whose productions are made of words and forms of speech, an art of language ।୧।

ଭାଲେରୀଙ୍କ ଏ ଉକ୍ତି କିଛିଟା ଅତିରଂଜିନ ନିଶ୍ଚିତ ; ତେବେ କବିତାରେ ଭାଷାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ସାର୍ତ୍ତ କବିତାରେ ଶବ୍ଦର ଅର୍ଥବ୍ୟବହାରକୁ ସହ୍ୟ କରିପାରନ୍ତି ନାହିଁ । କବିତାରେ ଅର୍ଥ ପ୍ରତି କିଛିଟା ଅବହେଳା ଅଶୁଭଙ୍କର । କବିତାରେ ଶବ୍ଦ ମାତ୍ରେ ଅର୍ଥବାହୀ । ଶବ୍ଦର ଶକ୍ତି ତା'ର ଅନ୍ତର୍ନିହିତ ଅର୍ଥରେ । ଅନୁଭୂତିର ଗଭୀରତାକୁ ସୂଚିତ କରିପାରିବାରେ ଶବ୍ଦର ମର୍ଯ୍ୟାଦା ପ୍ରାଣବନ୍ତ ନହୋଇ ପାରିଲେ ଭାଷାର ନିର୍ଜୀବ ପ୍ରହେଳିକାଟିଏ ସୃଷ୍ଟି ହେବ ସିନା କବିତା ହୋଇ ପାରିବ ନାହିଁ ।

ହୃଦୟ ସଂବେଦ୍ୟ ଭାବଟିକୁ ବହନ କରିପାରିବାର ସମର୍ଥ ପ୍ରତି ଭାଷାକୁ ଦୃଷ୍ଟି ଦେବାକୁ ହେବ । ଶବ୍ଦ ସଚେତନତା ଆବଶ୍ୟକ ନିଶ୍ଚିତ । ................ they must take the place of wife and sweet heart' କଥାଟି ଅସ୍ୱୀକାର ନୁହେଁ । ତେବେ ଶବ୍ଦ ସୌନ୍ଦର୍ଯ୍ୟ ସମଗ୍ର ସମ୍ଭାବନା ଅନ୍ତର୍ନିହିତ ଶକ୍ତିଶାଳୀ ଅର୍ଥ ନିର୍ଭର ନିଶ୍ଚିତ । ଆପଣା ଗଭୀର ଅନୁଭୂତିଟିକୁ ସତ୍ୟଶୀଳ ରୂପ ପ୍ରଦାନରେ ଶବ୍ଦ ସଂଘର୍ଷକୁ ସ୍ୱାଗତ କରାଯିବ । ଆଧୁନିକ କବି ମାତ୍ରେ ଶବ୍ଦ ସହ ସଂଘର୍ଷରତ । ବିଫଳତାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ମଧ୍ୟ । ଇଲିୟଟ୍‌ଙ୍କଠୁ ସୀତାକାନ୍ତ ଯାଏ । କାବ୍ୟିକ ଅନୁଭୂତିର ଗଭୀରତମ ପ୍ରଦେଶରେ ଭାଷାର ଅକ୍ଷମତା ସ୍ୱୀକାର କରବାକୁ ହୁଏ ।

ପାଶ୍ଚାତ୍ୟ କବି ମନୀଷୀ T.S. Eliot ଯଥାର୍ଥରେ ପ୍ରକାଶ କରିଛନ୍ତି :-

Word Straia
Crack and sometimes break, under the burden,
Under the tension, slip, slide, perish
Decay with imprecision will not stay
in place will not stay still. (୨)

ଆଧୁନିକ ଓଡ଼ିଆ କବିତାର ମର୍ମଜ୍ଞ ଜ୍ଞାନପୀଠ ପୁରସ୍କାର ବିଜେତା କବି ସୀତାକାନ୍ତ 'ଶବ୍ଦ' ଉପରେ ପ୍ରକାଶ କରିବାକୁ ଯାଇ 'ଆରଦୃଶ୍ୟ' କବିତା ସଂକଳନରେ ସ୍ଥାନିତ 'ମୁଗ୍ଧ ଲଲାକାରେ' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି:-

କୁଆଡ଼େ ଉଡ଼ିଯାଆନ୍ତି ଶବ୍ଦ ସବୁ
ଗୋଟିକ ପରେ ଗୋଟିଏକି ଅଦ୍ଭୁତ କଳରବ
ଅନ୍ଧକାର ଅଶ୍ରୁତ ସାନାଇ
ମାୟା କୁହୁକ ବଜାଏ ଶୂନ୍ୟତାର ସ୍ନିଗ୍ଧ ସାହାନାଇ
ଯେତେ ଶବ୍ଦ ଯୋଡ଼ିଲେ ବି
ସେର ମାଣ ପୂରେ ନାହିଁ, ପୂଡା ଉଠେ ନାହିଁ । ୩ ।

ସଂପୂର୍ଣ୍ଣ ସତ୍ୟ ପ୍ରସ୍ଫୁଟିତ ହେବାର ନୁହେଁ । ସମଗ୍ର ସୌନ୍ଦର୍ଯ୍ୟ ଚିରକାଳ ଅନୁଦ୍‌ଭାସିତ । ପରମ ଅନୁଭବଟିକୁ ରୂପାୟନ କରିବା ଅସମ୍ଭବ । ଅରୂପକୁ ରୂପାୟନ କରିବା ଅର୍ଥହୀନ । କିନ୍ତୁ ଈଶ୍ୱର ଦର୍ଶନ ସମ୍ଭବ ନହୋଇପାରେ ଭକ୍ତର ବ୍ୟାକୁଳତା ଅର୍ଥହୀନ ନୁହେଁ । ଅନ୍ୱେଷା ଅସ୍ୱୀକାରର କଥା ନୁହେଁ । ତେଣୁ କବି ସ୍ଥିର ନୀରବତାରେ ନିଷ୍ପ୍ରୁପ୍ତିକୁ ବରିନେବ ନାହିଁ । ଅନ୍ୱେଷା ଅବ୍ୟାହତ ରହିବ । ୪ ।

ଅନୁଭୂତିକୁ ସାକାର କରିବାର ବ୍ୟାକୁଳତାରେ ଶବ୍ଦ ଖୋଜିବ । କବିତା ଲେଖିବ ହିଁ ଲେଖିବ । ବାରମ୍ବାର ବିଫଳତାକୁ ଭେଟ ପଛେ, ନିୟତି ନିଷ୍ଠୁର ହେଉ ପଛେ । ଏଥିପାଇଁ ଶବ୍ଦ ଆବଶ୍ୟକ; ଗଭୀର ଅନୁଭୂତିଟିକୁ ଶେଷ ପର୍ଯ୍ୟନ୍ତ ସୂଚିତ କରିପାରିବାର ସାମର୍ଥ୍ୟ

ରଖିଥିବା ଶବ୍ଦ; କବିର ଅନନ୍ୟ ଅନୁଭୂତିକୁ ଅନନ୍ୟ ଭାବେ ରୂପାୟନ କରି ପାରୁଥିବା ଶବ୍ଦ । ଶକ୍ତଶାଳୀ ଭାବଟିର ସାର୍ଥକ ସମୁଦ୍‌ଭାସନରେ ଶବ୍ଦର ଗୌରବ । ସେହି କ୍ଷେତ୍ରରେ ହିଁ ଶବ୍ଦର ନାନ୍ଦନିକତା ବିଚାର୍ଯ୍ୟ । ଏ ଭାଷା କୃତ୍ରିମ ଅବା ଅସାଧାରଣ ନୁହେଁ, ଦୁର୍ଲ୍ଲଭ କିମ୍ବା ପାଣ୍ଡିତ୍ୟ ପୂର୍ଣ୍ଣ ନୁହେଁ । ଅନୁଭୂତିର ନିଚ୍ଛକତାକୁ ଫୁଟାଉଥିବା ଭାଷା ଶବ୍ଦ ଶବ୍ଦ ମଧ୍ୟରେ ସଂପର୍କ, ଯାହା କେବଳ ସେଇ ଅନୁଭୂତିଟି ପାଇଁ ଗୋଟିଏ ମାତ୍ର ବିକଳ୍ପହୀନ ସମ୍ପର୍କ । ଏହି ବିକଳ୍ପ ହୀନ ଶବ୍ଦ ସଂପର୍କ ଭିତରେ ହିଁ ଅନନ୍ୟତା ରୂପ ପାଏ । ଏହାହିଁ କବିତାର ସ୍ୱଚ୍ଛନ୍ଦତା ।୫।

ଭାଷା ଅନୁଭବର; ବ୍ୟବହାରର ନୁହେଁ । ଏଥିପାଇଁ ଆଧୁନିକ କବିତା କ୍ଷେତ୍ରରେ କବିତାର ଭାଷା ଓ ଗଦ୍ୟ ଭାଷାର ପାର୍ଥକ୍ୟ ସ୍ୱୀକୃତ ନୁହେଁ । ସାଧାରଣ କଥିତ ଭାଷା ମଧ୍ୟ ଉଚ୍ଚକୋଟୀର କବିତାପାଇଁ ବ୍ୟବହାର ହୋଇପାରେ । Words Worth ବି ସେଦିନ ତାଙ୍କ ରୋମାଣ୍ଟିକ୍ କବିତା କ୍ଷେତ୍ରରେ ଯେତେଦୂର ସମ୍ଭବ Language really used by men କୁ ବ୍ୟବହାର କରିଥିଲେ । କବିତାର ଭାଷା ଓ ସାଧାରଣ ଭାଷା ଭିତରେ ତଫାତ ଏତିକି ଯେ କବିତାରେ ସେହି ସାଧାରଣ ଶବ୍ଦ ସବୁ ଅସାଧାରଣ ଭାବଟିକୁ ପରିବହନ କରିଥାନ୍ତି । ଅକସ୍ମାତ ସେମାନଙ୍କର ପ୍ରଚଳିତ ସୀମିତ ଅର୍ଥରୁ ମୁକ୍ତି ପାଇଁ ବିଶେଷ ଭାବରେ ସୂଚିତ ହୋଇପଡନ୍ତି ।୬ ।

ସୌରୀନ୍ଦ୍ର ବାରିକ୍ ଆପଣାର ପରିଚିତ ଜଗତର ଶବ୍ଦ ଚୟନ କରନ୍ତି । ତାଙ୍କ କବିତାର ଭାଷା, ପାଣ୍ଡିତ୍ୟପୂର୍ଣ୍ଣ ନୁହେଁ; ସାଧାରଣ ମଣିଷର ନିତିଦିନିଆ କଥାବାର୍ତ୍ତାର ଭାଷା । କବିତା ତାଙ୍କର ସବୁଜ ସମ୍ପର୍କ ସୃଷ୍ଟିକରେ । ଏହି ସମ୍ପର୍କର ଉପଲବ୍ଧିଟି ଭିତରେ ଶବ୍ଦ ସ୍ୱତଃ ସୃଷ୍ଟି ହୁଏ । ଏଣୁ ଅସାଧାରଣ ଶବ୍ଦ-ପ୍ରାପ୍ତିର ଆଶାରେ ତାଙ୍କର ଶବ୍ଦ ସଂଘର୍ଷ ନୁହେଁ; ଆପଣା ଅନୁଭୂତିଟିକୁ ସତ୍ୟଶୀଳ ଭାବେ ରୂପାୟନ କରିବାରେ ଯେଉଁ ସାର୍ଥକ ଶବ୍ଦଟି ଆବଶ୍ୟକ ସେତକ ପାଇଁ ସଂଘର୍ଷ ଯାହା, ପ୍ରାୟ ସେ ସଂଘର୍ଷର ପାଖ ମାଡନ୍ତି ନାହିଁ; ତାହା ଭାବଟି ସହ ସ୍ୱତଃ ଉଦ୍‌ଭାସିତ ହୁଏ । ଆପଣା କବିତା ଲେଖାର ଭାଷା ସମ୍ପର୍କିତ ଉପଲବ୍ଧିଟିକୁ ତାଙ୍କ ନିଜ ସ୍ୱୀକାରୋକ୍ତିରୁ ସଂଗ୍ରହ କରିବା । 'ସାଧାରଣ ମଣିଷ ସାହାଯ୍ୟରେ ମୁଁ ମୋ ଭାଷା ସହ ସମ୍ପର୍କିତ ଭଲ ମନ୍ଦ ଶବ୍ଦ, ସାଧୁ ଶବ୍ଦ, ଅପରିଚିତ ନୂଆ ଶବ୍ଦ ମୁଁ ଜାଣେ ନାହିଁ, ବୁଝେ ନାହିଁ । ମୋ' ପାଖରେ କେବଳ ପ୍ରୟୋଜନୀୟ ଶବ୍ଦ, ଦରକାରୀ ଶବ୍ଦ । ପରିଚିତି ଅଗଣାର ଶବ୍ଦ । ହଠାତ୍ ଆଘାତ ଆସିଲେ ପାଟିକୁ ଯେଉଁ ଶବ୍ଦ ଆସେ ସେ ହିଁ ଶବ୍ଦ । ତେଣୁ ମୁଁ ଶବ୍ଦ ଖୋଜି ବୁଲେ ନାହିଁ । ମୋ' ଅନୁଭୂତି ତା'ର ଶବ୍ଦ ଖୋଜି ପାଏ । କବିତା ତ ମୋ ପାଇଁ କଥାବାର୍ତ୍ତାରେ ହିଁ ଲୁଚି ରହିଛି । ତା'ର ସ୍ୱଚ୍ଛନ୍ଦ ଗତି ଏବଂ ତାର ଧ୍ୱନିରେ ରୂପ ପାଇଛି । ସାଧାରଣ ଶବ୍ଦର ସ୍ୱଚ୍ଛନ୍ଦ ସଂପର୍କ ହିଁ ତ ମୋ' ପାଖରେ କବିତା । ଏହି ସ୍ୱାଚ୍ଛନ୍ଦ୍ୟ ହିଁ ମୋର ମନ୍ତ୍ର । ଏକ ଅନନ୍ୟ ଅନୁଭୂତିକୁ ଅତି ସାଧାରଣ ଓ ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ କରିବାକୁ ମୁଁ ଚାହେଁ । ଗଭୀର କାବ୍ୟିକ ଅନୁଭୂତିକୁ ଯେମିତି ପାରମ୍ପରିକ କବିତା ବାଧା ନଦିଏ । ସତ୍ୟ-ଯେମିତି ସତ୍ୟଶୀଳ

ଏବଂ ସିଧାସଳଖ ହୁଏ । ତେଣୁ ଅସାଧାରଣ ଅପରିଚିତ ଶବ୍ଦ ପଛରେ ମୁଁ ଧାଏଁ ନାହିଁ । ଏକ ଅନନ୍ୟ ଅନୁଭବର ପରିପ୍ରେକ୍ଷୀରେ ସାଧାରଣ ଶବ୍ଦଟିଏ ଅତି ଅସାଧାରଣ ହୋଇଉଠେ । ତେଣୁ ମୋ' କବିତା ଏକ ନିବିଡ଼ କଥୋପକଥନ ପରି । କେତେବେଳେ ସ୍ୱାଗତୋକ୍ତି ପ୍ରଳାପ ମାତ୍ର; କେବେ ଏକ ପୂର୍ବ ପ୍ରସ୍ତୁତ ଭାଷଣ ନୁହେଁ । ୭ ।

କବିତା କ୍ଷେତ୍ରରେ ଏହି ପୂର୍ବ ପ୍ରସ୍ତୁତି କଥା କାରିଗରଙ୍କୁ ସେ ସବୁ କ୍ଷେତ୍ରରେ ବିରୋଧକରି ଆସିଛନ୍ତି । ଅନୁଭୂତିଟି ସହ ଶବ୍ଦର ଅଭିନ୍ନତାରେ ସେ ବିଶ୍ୱାସୀ । ଭାଷାର ସ୍ୱଚ୍ଛନ୍ଦ ସାବଲୀଳତା ତାଙ୍କର ବୈଶିଷ୍ଟ୍ୟ । ସମସାମୟିକ ଆଧୁନିକ ଓଡ଼ିଆ କବି ମାନଙ୍କ ପରିପ୍ରେକ୍ଷୀରେ ସେ ଅପେକ୍ଷାକୃତ ପରିଚ୍ଛନ୍ନ । ଏହି ପରିଚ୍ଛନତା ତାଙ୍କ ଭାଷାର ପ୍ରାଣ । ଅନୁଭୂତିର ତୀବ୍ରତା ତାଙ୍କ ଏକର ସୌନ୍ଦର୍ଯ୍ୟ । କବିତା ଭିତରେ ହିଁ ସେ ଗୁଡ଼ିକର ବୈଶିଷ୍ଟ୍ୟ । ବାହାରେ ତାହା ବେଶ୍ ସାଧାରଣ କଥିତ ଭାଷା । ୮ ।

ସୌରୀନ୍ଦ୍ର ବାରିକ୍‌ଙ୍କ ପ୍ରଥମ କବିତା ସଂକଳନ 'ସାମାନ୍ୟ କଥନ' ର ଭାଷାରେ ସମକାଳୀନ ବିଷଣ୍ଣବାଦୀ କାବ୍ୟ ପରମ୍ପରାର ପ୍ରଭାବ ଦେଖିବାକୁ ମିଳେ । କିଛିଟା ହତାଶା ଓ ଅସ୍ଥିରତାର ଭାବ ବହନ କରୁଥିଲେ ମଧ୍ୟ ପରିଚ୍ଛନ୍ନତାର ଅଭାବ ଉପଲବଧ ହୁଏ ନାହିଁ । ତତ୍‌ସମ ଓ ତଦ୍‌ଭବ ଶବ୍ଦପ୍ରତି ଆକର୍ଷଣ ଲକ୍ଷ୍ୟ କରାଯାଇପାରେ । 'ଆକାଶ ପରି ନିବିଡ଼', ଗୁଣୁଗୁଣୁ ଚିତ୍ରପଟ', 'ଲୁହଟୁ ବି ଅନ୍ତରଂଗ' ଓ 'ଆମେ ଦୁହେଁ' କବିତା ସଂକଳନ ଗୁଡ଼ିକର ଭାଷା, ସାଧାରଣ ଜନ ମାନସର କଥୋପକଥନର ଭାଷା ଆବେଦନରେ ଆନ୍ତରିକତା ଓ ଆବେଗ ପ୍ରବଣତା ଅଧିକ । ସ୍ନେହସିକ୍ତ ସଂପର୍କର ପରିବେଶଟିଏ ଗଢ଼ି ପାରିବାରେ, ଜୀବନର ଶୁଭ ସ୍ନିଗ୍ଧତାକୁ ମୂର୍ତ୍ତିତ କରିପାରିବାରେ ଏହା ସାର୍ଥକତା ସ୍ୱୀକାର୍ଯ୍ୟ । 'ଉପଭାରତ' ଓ 'ଅନୁଭାରତ'ର ଭାଷା ଯୁଗପତ୍ ଗମ୍ଭୀର ଓ ଆବେଗ ପ୍ରବଣ, କିଛିଟା ଦାର୍ଶନିକ ମଧ୍ୟ । ସାଂପ୍ରତିକ ମନନେଇ ମହାଭାରତୀୟ ପରିବେଶ ସୃଷ୍ଟିପାଇଁ ତତ୍‌ସମ ଓ ତଦ୍‌ଭବ ଶବ୍ଦର ବ୍ୟବହାର ପ୍ରତି କବି ସଚେତନ ଥିବା ଦେଖାଯାଏ । ତେବେ ସାମଗ୍ରିକ ଭାବରେ ତାଙ୍କ କାବ୍ୟ କବିତାରେ ବହୁ ଦେଶଜ ଶବ୍ଦ ଓ ଦେଶଜ କ୍ରିୟାର ପ୍ରଚଳନ ଲକ୍ଷ୍ୟ କରାଯାଏ । କଥିତ ଭାଷାକୁ ଆପଣା କବିତା ପାଇଁ ଶ୍ରେୟ ମଣିଥିବାରୁ ଏହା ସ୍ୱାଭାବିକ ମନେହୁଏ । ୯ ।

ତାଙ୍କ କବିତା ଗୁଡ଼ିକର ଆଲୋଚନା ପରିସରରେ ସେ ସବୁ ଦୁର୍ଲକ୍ଷ୍ୟ ରହିନାହିଁ । ଏଠାରେ ସେ ଗୁଡ଼ିକର ତାଲିକା ପ୍ରସ୍ତୁ କରାଯାଉନାହିଁ । କେବଳ ଯେଉଁ ଶବ୍ଦ ପ୍ରୟୋଗ ଶୈଳୀ ତାଙ୍କ କବିତ୍ୱକୁ ଅଧିକ ସୂଚିତ କରୁଛି ସେଥି ପ୍ରତି ଦୃଷ୍ଟି ଦିଆଯାଇଛି । ଦ୍ୱନ୍ଦ୍ୱାତ୍ମକ ସ୍ଥିତି କି ବ୍ୟକ୍ତିତ୍ୱ କି ପରିବେଶକୁ ସାର୍ଥକ ଭାବରେ ସୂଚାଇବାରେ ସେ ପରସ୍ପର ବିପରୀତାର୍ଥ ବୋଧକ ଶବ୍ଦ ନେଇ ଚମତ୍କାର ଭାବୋଦ୍ଦୀପକ ପରିବେଶ ସୃଷ୍ଟି କରିଛନ୍ତି । ଗଭୀର ଉପଲବ୍ଧିର ସତ୍ୟଶୀଳ ରୂପାୟନରେ, ପାଠକ ପାଖରେ ଭାବବସ୍ତୁତର ବିରୋଧାଭାସକୁ ପହଞ୍ଚାଇ ପାରିବାରେ ଏହି ଶବ୍ଦ ପ୍ରୟୋଗ କୌଶଳର ସାର୍ଥକତା ଅଛି । ଆଧୁନିକ କବିତା କ୍ଷେତ୍ରରେ

ଏହା ଏକ ପରିଚିତ କୌଶଳ । କବିଙ୍କ କବିତା ସଂକଳନ ଗୁଡ଼ିକରେ ବ୍ୟବହାର ହୋଇଥିବା ଶବ୍ଦ ଗୁଡ଼ିକ ହେଉଛି :-

ସନ୍ନ୍ୟାସ ଆସକ୍ତି, ଦୀନହୀନ କୁବେର,
ପରିଚିତ ଅଜ୍ଞାତ, ଆସକ୍ତ ବୈରାଗୀ,
ଦେହହୀନ ଦେହ, ଜୀଅନ୍ତା ଜଡ଼,
କାକଳୀତ ନୀରବତା, ମୁଖରିତ ନୀରବତା,
କ୍ଷଣିକ ଚିରନ୍ତନତା, ଉଦାସୀନ ଆସକ୍ତି
ପରିଚିତ ଅଚିହ୍ନା, ବିଜୟ ମଣ୍ଡିତ ପରାଜୟ,
ଚିରନ୍ତନ, କ୍ଷଣିକ, ଅନିଶ୍ଚିତ ନିଶ୍ଚିତତା
ଅଭିଶପ୍ତ ଆଶୀର୍ବାଦ, ମଧୁର ଅନ୍ତର୍ଜ୍ୱାଳା
କଳଙ୍କ, ଗୌରବ, ଚଳନ୍ତିକା ଶବ, ଆସକ୍ତ, ତ୍ୟାଗ
ପବିତ୍ର ପାପ, ସାନ୍ନିଧ୍ୟ ଦୂରତା, ଶେଷହୀନ ଶେଷ ।
କ୍ଷତ୍ରିୟ, ଅକ୍ଷତ୍ରିୟ, ସ୍ୱାର୍ଥପର ତ୍ୟାଗୀ,
ଦରଦୀ ନିଷ୍ଠୁର, ଅନାସକ୍ତ ମୋହ ।

ଏତଦ୍ ଭିନ୍ନ କେତୋଟି ଚମତ୍କାର ବିଶେଷଣ ପ୍ରୟୋଗକୁ ସ୍ମରଣ କରାଯାଇପାରେ । ବ୍ୟାକରଣ ଦୃଷ୍ଟିରୁ ଏ ଗୁଡ଼ିକରେ ତ୍ରୁଟି ଦେଖାଯାଇପାରେ; କିନ୍ତୁ କବିତାର ଇଲାକା ବ୍ୟାକରଣର ପରିଧିରୁ ମୁକ୍ତ । ଶବ୍ଦ ବ୍ୟବହାରରେ କବିର ସ୍ୱାଧୀନତା ସ୍ୱୀକୃତ । କବିତା ସଂକଳନ ଗୁଡ଼ିକରେ ବ୍ୟବହୃତ ଶବ୍ଦଗୁଡ଼ିକରୁ କବିଙ୍କ କବିତ୍ୱ ଲକ୍ଷଣୀୟ । କବି ସୌରୀନ୍ଦ୍ର ବାରିକ 'ସାମାନ୍ୟ କଥନ' କବିତା ସଂକଳନରେ ବ୍ୟବହାର କରିଛନ୍ତି :-

ଲୋମଶ ମୃତ୍ୟୁ, ଲୋମଶ ଆନନ୍ଦ, ରଙ୍ଗୀନ ଚପଳତା
ଅଜଗରୀ ସ୍ଥବିରତା
(-ସାମାନ୍ୟ କଥନ-)

'ଆକାଶ ପରି ନିବିଡ଼' କବିତା ସଂକଳନରେ ପ୍ରକାଶ କରିଛନ୍ତି :-

ଲୁଣି ନୀରବତା, କଣ୍ଟକିତ କୋଟିକମ,
ଶିଶିରିତା ସୂର୍ଯ୍ୟ, କରୁଣ ଗୌରବ,
ରଙ୍ଗୀନ ନୀରବତା

କବି 'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ପ୍ରକାଶ କରିଛନ୍ତି :-

ଜୀବନ୍ତ ଉଦାସୀନତା, ସେଲୁଲୟେଡ୍ ଅସ୍ତିତ୍ୱ
କଣ୍ଟକିତ ଉଦାରତା, ଶିରାଳ ଉଷ୍ଣତା
ଶିରାଳ ସାନ୍ନିଧ୍ୟ, କେଁ କଟର ବର୍ତ୍ତମାନତା

ରେକେଟା ଶୂନ୍ୟତା, କାଗଜ ବ୍ୟକ୍ତିତ୍ୱ
ଲୁଣିଆ ଅନ୍ଧାର, ହାଇଁ ପାଇଁ ନିଃସଂଗତା
ବିଳାସୀ ବିପ୍ଳବୀ, ଗୁଲୁଗୁଲିଆ ନିମନ୍ତ୍ରଣ
ଇସ୍ପତି ଅସ୍ତିତ୍ୱ

'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନରେ କବି ସୌରୀନ୍ଦ୍ର ବାରିକ ଯେଉଁ ଶବ୍ଦ ବ୍ୟବହାର କରିଛନ୍ତି ସେ ଗୁଡ଼ିକ ହେଲା :-

ନିରୀହ ପାପ, ଶନ୍ତ ଭୀଷଣତା, ରସାଳ ଶୂନ୍ୟତା
ହଳଦୀ ଅନ୍ଧାର

'ଆମେ ଦୁହେଁ' କବିତା ସଂକଳନ ସବୁଜ ସଂପର୍କର ସୂଚୀପତ୍ର କବି ସୌରୀନ୍ଦ୍ର ବାରିକଙ୍କ ଶବ୍ଦ ଗୁଡ଼ିକ ବେଶ୍ ମର୍ମିଳ ଓ ଚିତାକର୍ଷକ । ଯଥାର୍ଥରେ କବିଙ୍କ ବ୍ୟବହୃତ ଶବ୍ଦ ଗୁଡ଼ିକ ହେଉଛି :-

ନିବିଡ଼ ଦୂରତା, କଅଁଳ ଖିଆଲ, ଆକାଶୀ ପୂର୍ଣ୍ଣତା
ହାଉଯାଉ ଶୂନ୍ୟତା, ମିଠା ଅବହେଳା
ନିରୀହ ଆନନ୍ଦ

ଉପଭାରତ ଓ ଅନୁଭାରତ କବି ସୌରୀନ୍ଦ୍ର ବାରିକ୍‌ଙ୍କ ଏକ ଚମତ୍କାର କବିତା ସଂକଳନ । କବିତା ସଂକଳନରେ କବି ଯେଉଁ ଶବ୍ଦ ବ୍ୟବହାର କରିଛନ୍ତି ତାହା ବେଶ୍ ମର୍ମିଳ ଓ ଭାବୋଦ୍ଦୀପକ । କବିତା ସଂକଳନରେ ବ୍ୟବହୃତ ହୋଇଥିବା ଶବ୍ଦ ଗୁଡ଼ିକ ହେଉଛି:-

ଫୁରୁଫୁରୁ ଖରା, ଅନ୍ତରଂଗ ପ୍ରହେଳିକା
ଆମିଷ ଅନ୍ଧାର, ଜାନ୍ତବ ଭୀରୁତା,
କ୍ରନ୍ଦସୀ ଘାତକ, କ୍ରୂର ଆର୍ଶୀବାଦ,
ଜାନ୍ତବ ସ୍ୱର୍ଗ, ତାମସୀ ଆଲୋକ, ପଙ୍ଗୁନୀରବତା,
ହୀରକ ହାହାକାର, ମହାନ ଅପୂର୍ଣ୍ଣତା
ରସିକ ସନ୍ନ୍ୟାସ, ଲୁଣ୍ଠିତ ପୂର୍ଣ୍ଣତା
ଲୋମଶ ହେଣ୍ଟାଳ, ଶୁଭ୍ର ନୀରବତା

"ଚହଲା ଛାଇରେ ଘଡ଼ିଏ' କବିତା ସଂକଳନ କବି ସୌରୀନ୍ଦ୍ର ବାରିକଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭାର ଅନ୍ୟତମ ଦିଗ । ନୂତନ ଶବ୍ଦ ପ୍ରୟୋଗ କରି କବିତା ସଂକଳନଟିକୁ ରସୋତ୍ତୀର୍ଣ୍ଣ କରିଛନ୍ତି । କିବତା ସଂକଳନରେ ପ୍ରୟୋଗ ହୋଇଥିବା ଶବ୍ଦ ଗୁଡ଼ିକ ହେଉଛି:-

ରଂଗର ନଈ, ଆଖି ଆଗରେ ଦାଉ ଦାଉ
ଢ଼ହ ଢ଼ହ ଇଚ୍ଛା, ରଂଗର ତାରକା
ଟୁକୁରା ପ୍ରଜାପତି, ଶ୍ରାବଣୀ ନଈ

ଛେଲା ଛେଲା ମାଂସ ଭୋଗ,
ସବୁଜ ଚୁମା, ବିକଳାଙ୍ଗ କବନ୍ଧ
କଅଁଳ ଓଠ, ଛନ୍ ଛନ୍ ପତ୍ର
ଗମ୍ ଗମ୍ ଝାଳ, ବାମନ ଛାଇ
ବଉଳର ବାଣ, ରୁନ୍ଧା ଆକାଶ
ଘାଉଲା ଦେହ, ଆକାଶ ଥରି ଯାଏ
ଅନାଥ ଚଢେଇ, ବିକଳ ରାବ,
ସବୁଜ ସଂସାର, କଅଁଳ କରୁଣା,
କୁଆ-ପଥୁରିଆ ଚାହାଁଣି, ଟାଆଁସା ଆକାଶ,
କଳା ବଉଦ, ଝରଝର ବର୍ଷା
ପକ୍ଷୀଙ୍କ କାନ୍ଦଣା, ସୁନା ବାଲି
ହସ କୁଡ଼ି ଝିଅ, କଇଁ କଇଁ କାନ୍ଦ
କୁନି କୁନି ମାଛ, ସ୍ୱପ୍ନ ବୁଣି ବୁଣି
ଆଲୁଅ ପକ୍ଷର ଜହ୍ନ, କଞ୍ଚି କଞ୍ଚି ଡାଳ
ସବୁଜ ଗୀତ, ଲହ ଲହ ଶୀତଳ ନିଆଁ,
ବୃକ୍ଷମେଧ ଯଜ୍ଞ, ଲଙ୍ଗଳା ଛୁଆ
ହସରେ ଝଟକିବ ଫୁଲ

କବି ସୌରୀନ୍ଦ୍ର ବାରିକ୍ଙ୍କ 'ପଢ ବା ନପଢ' ଏକ ବିରୋଧାଭାସର କବିତା ସଂକଳନ । ସଂକଳନରେ ବ୍ୟବହୃତ ଶବ୍ଦ ଗୁଡ଼ିକ ବିଶେଷ ଭାବରେ ମାପଚୁପ୍ ଓ ସଂକ୍ଷିପ୍ତ । ଆବଶ୍ୟକ ଶବ୍ଦର ସାହାଯ୍ୟରେ କବିତା ଗୁଡିକ ହୋଇଛି ସରୋତ୍ତୀର୍ଣ୍ଣ । କବିତା ସଂକଳନରେ ବ୍ୟବହୃତ ଶବ୍ଦ ଗୁଡ଼ିକ ହେଉଛି:-

ଯୁକ୍ତି କଳକା, ଭୂଆଁ ବୁଲିବା,
ବାସନ୍ତୀ ତୁମ ପ୍ରେମ
ଛାତିର ଦୁକୁଦୁକୁ, ମୁହୂର୍ତ୍ତେ ଅନନ୍ତ,
କଢେଇ ଉଠୁଥିବା ଗଛ
ଆକାଶେ ଚଢେଇଙ୍କ ଗୀତ, ଈଶ୍ୱରେ ରହସ୍ୟ,
ଝିପିଝିପି ବର୍ଷା, ଶୁଖିଲା ଖଡ଼ଖଡ଼ ମହୁଫେଣା
ନିବିଡ଼ ଦୂରତା, ଅଜବ ଗପ, ପାହାନ୍ତି ଘାସ,
ଢେଉ ଭାଙ୍ଗୁଛି କାଶତଣ୍ଡି, ଅଣଖାର ନହକା ଅଗରେ,
ଦୋହଲୁଛି ନାଲି କଂକୀ,

ପଥର ଭାଷା, ଘନିଷ୍ଠ ବେଳାର ଆଖି,
ମୁଦା ଆଖିର ଅନ୍ଧାର
ଆକାଶରେ ଭଉଁରୀ ଖେଳିବା
ପଲକେ ଅନନ୍ତ
ଅଦେଖା ଆରପଟ
ପ୍ରଳୟର ମଳୟ, ତୁମ୍ଭେ ମୂର୍ଖାମୀ
ଆକାଶରେ ମଳୟ, ତୁମ୍ଭେ ମୂର୍ଖାମୀ
ତୁମ୍ଭେ ପାଗଳାମି
ଦିନ କଟିଗଲା ଦୂରେଇ ଦୂରେଇ

ଆଧୁନିକ ଓଡ଼ିଆ କାବ୍ୟ ଭଣ୍ଡାରକୁ 'ହଳଦୀ ବସନ୍ତ' କବି ସୌରୀନ୍ଦ୍ର ବାରିକଙ୍କର ଅନ୍ୟତମ ଅନନ୍ୟ ଅର୍ଘ୍ୟ । ଅନନ୍ୟ ଆତ୍ମିୟତା କବିତା ସଂକଳନଟିକୁ କରିଛି ସମୃଦ୍ଧ ! ସ୍ୱଚ୍ଛନ୍ଦ ଭାବ ଓ ସରଳ ଭାଷା କବିତା ଗୁଡ଼ିକର ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଛି କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । 'ହଦଳୀ ବସନ୍ତ' କବିତା ସଂକଳନରେ ସ୍ଥାନିତ ଶବ୍ଦ ଗୁଡିକ ହେଉଛି :-

ତୋଟାର ଅନ୍ଧାର, ନାଗଫେଣୀ ଡାକ
ପଦ୍ମ ତୋଳା ଡାକ, ସୁନା ଦେହ ଝଲ୍‌ସି ଉଠେ
ହଦଳୀ ଅନ୍ଧାର, ଘଡ଼ିଏ ଗହନ
ପୁରୁଣା ଆକାଶ, ପୁରୁଣା ସୂର୍ଯ୍ୟ, ନୂଆ ନିଆଁ,
ମାଳ ମାଳ ସୂର୍ଯ୍ୟ, ଆଦିଗନ୍ତ ଆଦିମ ଅନ୍ଧାର
ଡେଣାର କମ୍ପନ, ଅନାଦି ଅନନ୍ତ
ରସାଳ ଶୂନ୍ୟତା, ଡାକରେ ମହା ନୀରବତା
ଉଡ଼ନ୍ତା ବିଶ୍ୱରୂପ, ଶାନ୍ତ ଭୀଷଣତା
ସବୁଜ ଅନ୍ଧାର, ମିଛ କଳ୍ପନା,
ସତ ପୀତବାସ, ଗାଁ ବୋହୂ
କଅଁଳ ଖରା, କଅଁଳା ଛୁଆ
କିମିଆ କରିବା, ପାଟିକୁ ହଳଦିଆ ଲାଗିବା
ସୁନ୍ଦରିଆ ସୁନାର ପର, ଅନ୍ଧାରି ଅସ୍ତିତ୍ୱ,
କମ୍ ଗଉଁ, ଝକଝକ ହଳଦୀ ଖରାର,
ଡହଳ ବିକଳ, ସବୁ ଫୁର୍ ଫୁର୍ ରାବ
ହଦଳୀ ଗୁରୁଗୁରୁ ଚାଲାକି ଚାଲ, ଭେଲିକିର ବାଜିମାତ୍,
ବଇଁଶୀର ନିଶୂନ୍ ନୀଳ, ଆକାଶୀ ଫୁର୍ ଫୁର୍

ହଳଦୀ ହଳା ହଳ, ସମୟର ଖିଲ ଖିଲ ଛାଇ,
ଦୁକୁଦୁକୁ ଓଲଟ ଡାକ, ଝାଇଁ ମରା ଛାଇ,
ଆଷାଢର ଗର୍ଭିଣୀ ମେଘ, ଉଡ଼ିଗଲା ରାବ,
ଉକୁଟି ଉଠିବ, ଛାଇର ଗୁଣ୍ଡୁଗୁଣ୍ଡୁ, ଛନ୍‌କା ପଶାଏ,
ନୀଳକାନ୍ତି କପାଳ, ଗୋରୋଚନା ବୁନ୍ଦା,
ଫୁର୍ ଫୁର୍ ବର୍ତ୍ତମାନ, ପ୍ରାଣ ଖାଇଲାଣି
ପରାଗ ରୂପ

ଜଡ଼ବସ୍ତୁକୁ ଜୀବନ୍ୟାସ ଦେବାରେ କବି ସୌରୀନ୍ଦ୍ର ବେଶ୍ ସିଦ୍ଧହସ୍ତ । 'ଆମ ଦୁହିଁଙ୍କ କଥା' ସବୁଜ ସମ୍ପର୍କର ପ୍ରତିଫଳନ ମାତ୍ର । କବିଙ୍କ ସାଇକେଲ୍ ପ୍ରତି ଅହେତୁକ ମମତାରୁ ଜନ୍ମ ନେଇଛି 'ଆମ ଦୁହିଁଙ୍କ କଥା' କବିତା ସଂକଳନ । କବିତା ସଂକଳନରେ କବି ଯେଉଁ ଶବ୍ଦ ପ୍ରୟୋଗ କରିଛନ୍ତ ତାହା ଗ୍ରାମୀଣ ଓ ବେଶ ମର୍ମିଳ । କବିତା ସଂକଳନରେ ବ୍ୟବହୃତ ହୋଇଥିବା ଶବ୍ଦ ଗୁଡ଼ିକ ହେଉଛି :-

ଛଞ୍ଚାଣ ଚାହାଁଣି, ବଦଳା ବଦଳି, କଚଡା ଦାଗ
ରଂଗ ଛଡା ଧଡ଼ ଧଡ଼ି, ଚନ୍ଦା ମୁଣ୍ଡିଆ ଠକରାଗାଲିଆ ବାବୁ
ସଂପର୍କର କେଁ କଟର ଗୀତ, ଆମ୍ଭୁଡା କାମୁଡା
ବୁଢା ହଡ଼ାର ରଂଗ, ଧୁତୁଡା ଦେହ, ଗେବି ଯାଉଥାଏ,
ଦହଗଞ୍ଜ ସହିବା, ହଂସା ଉଡ଼ିଯିବା,
ଜଳକା ଆଖିରେ, ପର୍ବତ ପ୍ରମାଣେ ମାଲ,
ଉପରେ ସବାର, ମେରୁ ହାଡ ଭାଙ୍ଗିଯିବା,
ପ୍ରାଣ ବାହାରି ଯିବା, ଜହ୍ନ ପୋହିଁବା, ଘାଇଲାବଳଦ
ତେରିରେ ବୁଡ଼ିବା, ଖାଁ ଖାଁ ସ୍ୱର,
ଭଳି ଭଳି ରଂଗ, ଚକ୍ ଚକ୍ ଡାକ
କାନ ତଡ଼ା କିଚିରି ମିଚିରି, ଟଳ ଟଳ ଚାଲି
ଗୁଲୁ ଗୁଲୁ ଯୋଡ଼ି ସାଧବ ବୋହୂ
ମିଠା ମରଣର ମହକ, ଡେରା ଭଙ୍ଗା ପ୍ରଜାପତି,
ଧୂଳି ବଲବଲ ।

'ଯେତେ ସବୁ ବୀଥିକୁ ନେଇ' କବି ସୌରୀନ୍ଦ୍ର ବାରିକଙ୍କ ଭିନ୍ନ ଶୈଳୀର ଅନବଦ୍ୟ କଳା କୋଣାର୍କ । ଅଭିନବ ଶବ୍ଦ ସଂଯୋଜନାରେ କବିତା ସଂକଳନଟି ରସୋତ୍ତୀର୍ଣ୍ଣ । 'ଯେତେ ସବୁ ବୀଥିକୁ ନେଇ କବିତା ସଂକଳନରେ ପ୍ରକାଶିତ ହୋଇଥିବା ଶବ୍ଦ ଗୁଡ଼ିକ ହେଉଛି:-

ମେଘ ଭେଦି ପାହାଡ, ସ୍ନେହରଙ୍କୁଣୀ ପ୍ରାନ୍ତର
ଦିଗଂତି କୋଳ, ଦୁକୁଦୁକୁ ଅସ୍ତିତ୍ୱ

କଇଁ ଫୁଲିଆ ଜହ୍ନ, ଚୋରା ଚୁମାର ଓଠ
ସ୍ୱପ୍ନ ଛେଉଣ୍ଡ ଆଖି, ଆଶା ଆଇଁସା ମନ
କୁଂଢେ ଦିଗ୍‌ବଳୟ ତାତି, ନୁଖୁରା ସତ
ଅର୍ଥର ଶିଉଳି, ଚିରନ୍ତନର ଉତ୍ତରଣ
ମୁହୂର୍ତ୍ତେ ବର୍ତ୍ତମାନ, ଆଷାଢ଼ର ଛଳ ଛଳ ସଂଜ
ସବୁଜ ଶିହରଣ, ଝିପିଝିପି ଅନ୍ଧାର,
ଗୋଳିଆ ପାଣିର ଫେଣ ।

ସଂଯୋଗ କ୍ଷେତ୍ରରେ ହିଁ ଶବ୍ଦ ଗୁଡ଼ିକର ସୌନ୍ଦର୍ଯ୍ୟ । କବିତା ଗୁଡ଼ିକର ଆଲୋଚନା କାଳରେ ଏହା ସୂଚୀତ । ଏ ସବୁର ପ୍ରୟୋଗ ଛାଡ଼ିଦେଲେ କବି କେତେକ ଭାବ, ଦୃଶ୍ୟ ଶବ୍ଦ ଗନ୍ଧ ଆଦିକୁ ସୁଚାଇବାକୁ ଯାଇଁ କେତେକ ଶବ୍ଦ ଦ୍ୱୈତର ପ୍ରୟୋଗ କରିଛନ୍ତି । ସରଳ ସାବଳୀଳ ଶବ୍ଦ ପ୍ରୟୋଗ ଭିତରେ କବିଙ୍କ ପ୍ରତିଭା ବିକଶିତ ହୋଇଛି । ଉପଯୁକ୍ତ ଶବ୍ଦ ବସାଣରେ କବି ଧୂରୀଣ ଓ ଶବ୍ଦର ଯାଦୁକର ।

## ଛନ୍ଦ ଓ ଶୈଳୀ :

ଆଧୁନିକ କବିତାର ଛନ୍ଦ ଅର୍ଥାନୁସାରୀ । ମାତ୍ର ଯୁକ୍ତତା, ଚରଣ ସଙ୍ଖ୍ୟା, ସ୍ତବକ ବିନ୍ୟାସ କି ଯତିପାତର ନିର୍ଦ୍ଦିଷ୍ଟତା ଖୋଜିଲେ ନିରାଶ ହେବା ସ୍ୱାଭାବିକ୍ । କବି ସୌରୀନ୍ଦ୍ର ବାରିକଙ୍କ କବିତାରେ ଛନ୍ଦ କ୍ଷେତ୍ରରେ ଏହି ନିର୍ଦ୍ଦିଷ୍ଟତା ହିଁ ଲକ୍ଷ୍ୟ କରାଯାଏ । ଛନ୍ଦ ଏଠି ସ୍ୱତନ୍ତ୍ର ପ୍ରୟୋଗଶୀଳତାର ଅପେକ୍ଷା ରଖେନାହିଁ । ଭାବକୁ ଅନୁସରଣ କରି ଆପଣାକୁ ପ୍ରକାଶ କରିଥାଏ । ନିରୋଳା ଗଦ୍ୟର ବ୍ୟବହାର ଭିତରେ ସାଂଗୀତିକତାର ମନ୍ତ୍ର ଶୁଣି ହୁଏ । ଅନ୍ତର୍ସଂଗୀତିକତା ହିଁ ପାଠକର ସୂକ୍ଷ୍ମ ଅନୁଭବଟିକୁ ଖୁସୀ କରାଇଥାଏ । ୧୦ ।

'ସାମାନ୍ୟ କଥନ' କବିତା ସଂକଳନରେ ନିରୋଳା ଗଦ୍ୟରେ ଲିଖିତ କବିତା ଯେପରି ସ୍ଥାନ ପାଇଛି, ସେପରି ପାଇଛନ୍ତି ଚରଣ ପ୍ରାନ୍ତରେ ଧ୍ୱନି ମେଳାକୁ ଆଶ୍ରୟିଥିବା କବିତା । 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନୀତ 'ବାବା ଓ ବୁବୁ' କବିତାର ଉଦାହରଣ ଦେଲେ ସହଜରେ ହୃଦୟଙ୍ଗମ କରିହେବ । କବି ସୌରୀନ୍ଦ୍ର ବାରିକ୍ 'ବାବା ଓ ବୁବୁ' କବିତାରେ ପ୍ରକାଶ କରିଚ୍ଛନ୍ତି :-

'ସେ ମୂର୍ତ୍ତମନ୍ତ ବଞ୍ଚିବା, ଜୀବନ ବ୍ୟାକରଣରେ ବିରଳ ବ୍ୟତିକ୍ରମ
ନୁହେଁ କେବଳ ପରିଚିତ ନିୟମଟିଏ' (୧୧)
ପୁନଶ୍ଚ କବି ପ୍ରକାଶ କରିଛନ୍ତି :-
ମନ ଚାହେଁ ଧାଇଁବାକୁ ଗୋଡ଼ ଯାଏ ଥକି

ପ୍ରାଣ ଖୋଜେ ଶିହରଣ ଦେହ ଦିଏ ଫାଙ୍କି
ଅଣ୍ଟାବ୍ୟଥା, ଅଗ୍ନିମାଦ୍ୟ, ନିଦନାହିଁ ଜମା
ମିଛ ଦାନ୍ତ, ହାତବାଡ଼ି, ବହଳ ଚଷମା
ଏ ଯେମିତି ପୁରୁଣାରେ ତାଳି ପକାଇବା
ବିଦୂଷକ ସାଜି ଖାଲି ନିଜକୁ ଠକିବା । ୧୨ ।

କବିତାରେ କେଉଁଠି କେଉଁଠି ଭାବାନୁସାରୀ ଛନ୍ଦର ବ୍ୟବହାର ମଝିରେ ହଠାତ୍ ପ୍ରାନ୍ତ ମେଳାର ପ୍ରୟୋଗ ଦୃଷ୍ଟିଗୋଚର ହୁଏ । ଅନେକାଂଶରେ ସୌରୀନ୍ଦ୍ର ଛନ୍ଦକୁ ବ୍ୟବହାର କରନ୍ତି ନାହିଁ । କବି ସୌରୀନ୍ଦ୍ରଙ୍କୁ ଛନ୍ଦ ଅନୁସରଣ କରେ । ସେ ନିର୍ଦ୍ଦିଷ୍ଟ ରୀତି ଯୁକ୍ତ ଛନ୍ଦ ପ୍ରତି ସତର୍କତା ଅବଲମ୍ବନ କରିନାହାଁନ୍ତି । ଅର୍ଥ ସାଙ୍ଗୀତିକତାର ନୀରବ ପ୍ରବାହଟି ବିଶ୍ୱସ୍ତ ଭାବରେ ଅନୁସରଣ କରି ଚାଲିଛି ଭାବ ବସ୍ତୁକୁ । ଗଦ୍ୟ ଭିତରେ ବି ଶୁଭିଯାଉଛି ସଙ୍ଗୀତର ମୃଦୁ ଗୁଞ୍ଜରଣ । ୧୩ ।

କବିତାରେ କେଉଁଠି କେଉଁଠି ପ୍ରାନ୍ତ ମେଳାର ଆକସ୍ମିକ ପରିସ୍ଫୁଟନ ମଧ୍ୟ । ଲୟ ଅନୁପସ୍ଥିତ ନୁହେଁ; ହେଲେ ଅର୍ଥ ଲୟ ମୁଖ୍ୟ । ଅର୍ଥର ସଂକ୍ରମଣ ଭିତ୍ତିରେ ଚରଣ ସଜ୍ଜା ଓ ସ୍ତବକ ବିନ୍ୟାସ ବେଶ ଉଚ୍ଚକୋଟୀର । କବି 'ଉପଭାରତ' ଓ 'ଅନୁଭାରତ' କବିତା ସଂକଳନରେ ଧ୍ୱନ୍ୟାତ୍ମକ ଶବ୍ଦ ଚୟନ ପ୍ରତି କିଛିଟା ସତର୍କତା ଅବଲମ୍ବନ କରିଛନ୍ତି । ମହାଭାରତୀୟ ପୃଷ୍ଠଭୂମିରେ ଚରିତ୍ର ମାନଙ୍କର ଭାବ ପ୍ରକାଶ ଲକ୍ଷ୍ୟ ଥିବାରୁ ପରିବେଶ ପ୍ରତି ଦୃଷ୍ଟି ରଖି ଛନ୍ଦ ପ୍ରୟୋଗର ସାମାନ୍ୟ ପ୍ରୟୋଜୀନୟତାକୁ ସେ ସ୍ୱୀକାର କରିଥିବା ଅନୁମେୟ । 'ରକ୍ତ ନଇ କୂଳେ', 'ଦିବ୍ୟଚକ୍ଷୁ' ଆଦି କବିତାର ଏପରି ପ୍ରୟୋଗକୁ ଲକ୍ଷ୍ୟ କରାଯାଇ ପାରେ । ଆଧୁନିକ କବିତାର ଅନ୍ୟ ଏକ କୌଶଳ ପୁନରାବୃତ୍ତି (Repetion) କୁ ସେ କେତେକ କ୍ଷେତ୍ରରେ ମଧ୍ୟ ସଫଳତାର ସହ ପ୍ରୟୋଗ କରିଛନ୍ତି । କବି ସୌରୀନ୍ଦ୍ର ବାରିକ 'ଉପଭାରତ' କବିତା ସଂକଳନରେ ସ୍ଥାନିତ 'ମହାଯାତ୍ରା' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି :-

ତା'ପରେ ଶିଖରୀ ନାହିଁ, ଯାତ୍ରୀ ନାହିଁ, ଯାତ୍ରା ନାହିଁ
କୁଜ୍‌ଝଟିକା ନାହିଁ, ଝଡ଼ ନାହିଁ, ନୀଳିମା ବି ନାହିଁ
ଆଲୁଅ ଅନ୍ଧାର ନାହିଁ, ଆଦି ଅନ୍ତ କିଛି ନାହିଁ
ଏ ଯେମିତି ଶେଷର ଶେଷ, ଶୂନ୍ୟର ଶୂନ୍ୟତା
ଧର୍ମବୀର ଯୁଧିଷ୍ଠିର ନୁହେଁ, ଲହ ଲହ ଯୁଧିଷ୍ଠିରତ୍ୱ । ୧୪ ।

ଛନ୍ଦ ଦୃଷ୍ଟିରୁ 'ଉପଭାରତ' କବିତା ସଂକଳନରେ ସ୍ଥାନିତ 'ନରକ ଦର୍ଶନ' ଏକ ବୁଦ୍ଧିଦୀପ୍ତ କବିତା । ଶବ୍ଦ ଓ ଛନ୍ଦର ମନୋଜ୍ଞ ପରିପ୍ରକାଶ 'ନରକ ଦର୍ଶନ' । କବିତା କବି ସୌରୀନ୍ଦ୍ର ବାରିକ୍ 'ନରକ ଦର୍ଶନ' କବିତାରେ ପ୍ରକାଶ କରିଛନ୍ତି :-

ସତ୍ୟ ପାଇଁ ନୀରବରେ ନିଜ ସ୍ତ୍ରୀ ଲାଞ୍ଛନା ଦେଖିବା
ସତ୍ୟ ପାଇଁ ବର୍ଷ ବର୍ଷ ଘନ ଘୋରବନସ୍ତେ ଘୂରିବା
ସତ୍ୟ ପାଇଁ ଅଠର ଦିବସ ନିଜ ଭାଇ ବନ୍ଧୁକୁ ମାରିବା
ସତ୍ୟ ପାଇଁ ସବୁ ମାୟା ମମତାକୁ ଛାଡ଼ି ଏକା ଏକା ବରଫର ପାହାଡ଼ ଚଢିବା
ଏବଂ ଶେଷ କେଉଁ ସତ୍ୟ ପାଇଁ ଏଇ ମହା ସତ୍ୟକୁ ଲଭିବା । ୧୫ ।

ସୌରୀନ୍ଦ୍ର ବାରିକ୍ ପ୍ରାୟତଃ ଗଦ୍ୟ ଓ ପଦ୍ୟ ମଧ୍ୟରେ ପାର୍ଥକ୍ୟ ଦେଖନ୍ତି ନାହିଁ । 'ଆମେ ଦୁହେଁ' କବିତା ସଂକଳନ ଏହାର ସାର୍ଥକ ଦୃଷ୍ଟାନ୍ତ । କବିତା କ୍ଷେତ୍ରରେ ସାଙ୍ଗୀତିକତାର ଆବଶ୍ୟକତା ପ୍ରତି ସେ ଅସତର୍କ ନୁହଁନ୍ତି; କିନ୍ତୁ ନିର୍ଦ୍ଦିଷ୍ଟ ରୀତିଯୁକ୍ତ ଛନ୍ଦ ପ୍ରୟୋଗରେ ସେ ଅବିଶ୍ୱାସୀ । ସେ ସାଧାରଣତଃ କଥା କହିବାର ଛନ୍ଦ ବା 'ବାକ୍‌ଛନ୍ଦ' ବ୍ୟବହାର କରିଛନ୍ତି । କବିଙ୍କ ପାଇଁ ସଙ୍ଗୀତର ଲୟ ଅର୍ଥରେ । ଭାବର ଅନୁରତାନ ଭିତରେ ଛନ୍ଦର ସୌନ୍ଦର୍ଯ୍ୟ । ନିରୋଳା ଗଦ୍ୟ ଭିତରେ ବି ସାଙ୍ଗୀତିକତାର ଅପୂର୍ବ ଶିହରଣ । ରୀତିଯୁକ୍ତ ଛନ୍ଦ ପ୍ରତି ଅସତର୍କତା ତାଙ୍କର ଦୁର୍ବଳତା ନୁହେଁ, ବରଂ ନିର୍ଦ୍ଦିଷ୍ଟ ଯାନ୍ତ୍ରିକ ଶୃଙ୍ଖଳାରୁ ସଚେତନ ମୁକ୍ତ ପ୍ରୟାସ । ଗଦ୍ୟ ଓ ପଦ୍ୟର ନିର୍ବିରୋଧ ସାଧନ କରି କବିତା ମନସ୍କ ହେବା ତାଙ୍କ ପାଖରେ ମୁଖ୍ୟ । ୧୬ ।

ଭାବବସ୍ତୁର ରୂପାୟନ କ୍ଷେତ୍ରରେ ଆବଶ୍ୟକ ଶୈଳୀ ପ୍ରତି ସୌରୀନ୍ଦ୍ର ଅସଚେତନ ନୁହଁନ୍ତି । ସେ କ୍ଷେତ୍ରରେ ସେ ସ୍ୱକୀୟତାର ପ୍ରମାଣ ଦେଇଛନ୍ତି । ଏକ ସ୍ୱତନ୍ତ୍ର ଆବେଦନ ଫୁଟାଇବାରେ ତାଙ୍କ ଶୈଳୀର ସାର୍ଥକତାର ସ୍ୱୀକାର୍ଯ୍ୟ । ଭାବ ଓ ଶୈଳୀ ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖା ଟାଣିବା ତାଙ୍କ କବିତା କ୍ଷେତ୍ରରେ ସମ୍ଭବ ନୁହେଁ । ଏହି ସମନ୍ୱୟ ହିଁ କବିତାକୁ କୃତ୍ରିମ କାରିଗରି ହାତରୁ ମୁକ୍ତି ଦେଇଥାଏ । ତାଙ୍କ କାବ୍ୟ ଜୀବନର ଆରମ୍ଭରୁ ସେ ଏ ସଂପର୍କରେ ସଚେତନ । ପ୍ରଥମ କବିତା ସଂକଳନ 'ସାମାନ୍ୟ କଥନ' ସମୀକ୍ଷା ପରିପ୍ରେକ୍ଷୀରେ କବି ସଚ୍ଚିଦାନନ୍ଦ ରାଉତରାୟ ସୌରୀନ୍ଦ୍ର ବାରିକଙ୍କ କବିତାରେ ଭାବ ଓ ଶୈଳୀ ମଧ୍ୟରେ କିଛିଟା ଭାରସାମ୍ୟ ଲକ୍ଷିତ ହୁଏ ବୋଲି ଯାହା ମନ୍ତବ୍ୟ ଦେଇଛନ୍ତି ତାହା ଯଥାର୍ଥ ମନେ ହୁଏ । ୧୭ ।

ପରବର୍ତ୍ତୀ ପର୍ଯ୍ୟାୟରେ ଏଥିରେ ଅନେକ ଉନ୍ନତି ଘଟିଛି । ଅନେକାଂଶରେ ଭାବବସ୍ତୁର ସଂକ୍ରମଣ ସହିତ ଶୈଳୀର ସ୍ୱତଃ ଜନ୍ମ କବିତା ଗୁଡ଼ିକୁ ଉଭୟ ଦିଗରୁ ସାର୍ଥକ କରି ତୋଳିଛି । ତାଙ୍କ କବିତାର ନିର୍ମାଣ ଶୈଳୀ ଓ ଆବେଦନର ମୁଖ୍ୟ ଦିଗ ଗୁଡ଼ିକୁ ଆଲୋଚନାରେ ଉଲ୍ଲେଖ କରାଯାଇଛି । କବିତା ସଂକଳନର ଆରମ୍ଭ କିମ୍ବା ଶେଷ ପଙ୍‌କ୍ତିରେ ଶୈଳୀ ଦୃଷ୍ଟି ଗୋଚର ହୁଏ । 'ଆକାଶ ପରି ନିବିଡ଼' କବିତା ସଂକଳନରେ କବି ପ୍ରକାଶ କରିଛନ୍ତି :-

"ଏ କବିତା ତୁମ ପାଇଁ
ତୁମେ ପଢିଲେ ହେଲା
ସେଇ ଢେର" । ୧୮ ।

ତତ୍ତ୍ୱ ଫତ୍ତ୍ୱ ବହୁତ ହେଲା
ସେଥିରୁ ଭଲା ଘଡିଏ ମୁକ୍ତି ମିଳନ୍ତା । ୧୯ ।
ଆସ ବା ନଆସ
ମୁଁ କିନ୍ତୁ ତୁମକୁ ଅନେଇ ବସିବି । ୨୦ ।
ମୁଁ କ'ଣ ତୁଚ୍ଛା ଦେହଟିଏ.......... । ୨୧ ।

ଅନେକ କବିତା ସଂକଳନରେ କବି ସ୍ମୃତି ରୋମନ୍ଥନ ସମୟରେ ଗଳ୍ପ କଥନ ଶୈଳୀ ବ୍ୟବହାର କରିଛନ୍ତି । ସେ ସର୍ବ ସାଧାରଣ କଥୋପକଥନ ପରି ସଂଳାପ ବ୍ୟବହାର କରିଛନ୍ତି କବିତାରେ । ୨୨ ।

ଉଦାହରଣ ସ୍ୱରୂପ :-
ଏଯି ଉଠ
ପରା ସକାଳ ହେଲାଣି ! -ଲୁ : ଅ : ୭୩-
ଶୁଣୁଚ ଏମାନେ କ'ଣ କହୁଛନ୍ତି -ଆମେ ଦୁହେଁ- ୨୭
ସାର ଏଥର ଆଉ ଏ ସାଇକେଲ
ଚଳିବ ନାହିଁ । -ଆମେ ଦୁହେଁ- ୨୭
ବାପା ଆଜିଠୁ ସାଇକେଲ ବନ୍ଦ
ସେ ବୁଢା ହଡ଼ାର ସବୁଦିନ ପାଇଁ ଛୁଟି -ଆମେ ଦୁହେଁ- ୨
ଗଳ୍ପ ତୁମେ ସାଇକେଲ ଚଢା ଶିଖ ସ୍ମାର୍ଟ ହୁଅ
ସମୟ ସହ ନିଜକୁ ପୁରା ମିଶାଇ ଦିଅ -ଆମେ ଦୁହେଁ- ୩୦

**ସ୍ୱୀକାରୋକ୍ତି ଓ ସ୍ୱଗତୋକ୍ତି :**

ଆତ୍ମଜୀବନୀ ମୂଳକ ଉଦାହରଣ ଅନେକ କବିତା ସଂକଳନରେ କବି ପ୍ରକାଶ କରିଛନ୍ତି । 'ଆମେ ଦୁହେଁ', 'ଆକାଶ ପରି ନିବିଡ଼', 'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନ ସ୍ୱଗତୋକ୍ତିର ଅନନ୍ୟ ଉଦାହରଣ । ସୂକ୍ଷ୍ମ ବିରୋଧାଭାସ ପ୍ରକାଶରେ ଚମତ୍କାର ପରିବେଶ ସୃଷ୍ଟି କରିଛନ୍ତି କବି ସୌରୀନ୍ଦ୍ର ବାରିକ୍ । 'ଗୁଣୁ ଗୁଣୁ ଚିତ୍ରପଟ' ଓ 'ଅନୁଭାରତ' କବିତା ସଂକଳନରେ ସ୍ଥାନିତ 'ଦଉଡ଼ି ଦେଇଥିବା ଯୁବକ', 'ମଧୁର ବେଳା' କବିତା ବିରୋଧାଭାସର ଅନନ୍ୟ ଦୃଷ୍ଟାନ୍ତ । ଉଦାହରଣ ସ୍ୱରୂପ :-

..................ଏକ ଦୋସରୀୟ
ଝୁଲନ୍ତା ଶୂନ୍ୟତା ଯା' କୋଳରେ ଶୁଣି ହୁଏ
ମହାନୀରବତାର ମିଠା ବାଜେ କଥା । -ଗୁ.ଚି- ୩୫
..................ଖାଲି ରହିଯାଏ ଯାହା
ଶେଷହୀନ ଶେଷ ଏବଂ

ଆରମ୍ଭ ବିହୀନ ଏକ ଶୁଭାରମ୍ଭ -ଅ.ଭା- ୨୭
ଛାତି ଫଟାଇ ନିରବ ଚିତ୍କାର କଲି -ସା.କ- ୨୫
ଅରୂପରେ ତୋତେ ଯେ ମୋହିବ
ନୀରବତାର ବେଣୁକୁ ବାଇବ
ତା' ପରେ କୋଳକୁ ତା'ର ଟାଣିନେବ
ଉଦାସୀନ ଆସକ୍ତିରେ ଭରି -ଆ. ପ. ନି- ୯
ଆଉ ମୁଁ ଉଡ଼ି ଚାଲିଛି
ମୋର ଚିହ୍ନା ଅଜଣା ଆଡ଼କୁ
ପରିଚିତ ଅଚିହ୍ନା ଆଡକୁ
ଖାଲି କେବେ ନପାଇବାର
ପୂର୍ଣ୍ଣତା ପାଇଁ (ଆ.ପ.ନି-୬୬)
କେତେ କେତେ ପାଖ ଲାଗିଲା
ମୋର ଏ ଦୂରତା (ଆମେ ଦୁହେଁ - ୩୫)

କବିଙ୍କ କଣ୍ଠସ୍ୱରରେ ଆବେଗ ପ୍ରବଣତା ଓ ଆତ୍ମୀୟତା ପ୍ରକାଶ ପାଇଛି । ସୌରୀନ୍ଦ୍ର ବାରିକ୍‌ଙ୍କ ସମଗ୍ର କାବ୍ୟଜଗତରେ ଏହି ଆବେଗ ପ୍ରବଣ ଆତ୍ମୀୟତା ଅନୁଭୂତ । ପତ୍ନୀ ପ୍ରେମ ଓ ପାରିବାରିକ ସଂପ୍ରୀତି ଠାରୁ ସମାଜ ସଂପର୍କ, ବସ୍ତୁ ସଂପର୍କ ଓ ମହାଭାରତୀୟ ଅନୁକ୍ରିୟା ଯାଏ ଆବେଦନରେ ସର୍ବଦା ନିବିଡ଼ ଆତ୍ମୀୟତା ଓ ଆବେଗ ପ୍ରବଣତାର ସ୍ୱାକ୍ଷର ସୁନ୍ଦର ଭାବରେ ଆଲୋଚିତ । ପୁନର୍ବାର ଉଦାହରଣ ଉଲ୍ଲେଖର ଆବଶ୍ୟକତା ଅନୁଭୂତ ହୁଏ ନାହିଁ ।୨୨।

ସାମୟିକ ଭାବେ ପରିବେଶକୁ ଲକ୍ଷ୍ୟ କରି କବି ସୌରୀନ୍ଦ୍ର ବାରିକ୍ ଦାର୍ଶନିକ ମନ୍ତବ୍ୟ ପ୍ରକାଶ କରିଛନ୍ତି ଉଦାହରଣ ସ୍ୱରୂପ :-

ମୃତ୍ୟୁ ବୋଧ ହୁଏ
ଶୂନ୍ୟତାରେ ଭରପୁର କାଳହୀନ ଗୋଟିଏ ପୂର୍ଣ୍ଣତା
ଆଉ ସେ ପୂର୍ଣ୍ଣତା ପାଇଁ
କାଳର କୋଳରେ ଶୂନ୍ୟ ହୋଇଯିବା
ହୁଏତ ଜୀବନ । -ଗୁ: ଚି: ୩୦
...........ଜୀବନ ଆଦ୍ୟ କିମ୍ବା ଶେଷ ପଙ୍‌କ୍ତି ନୁହେଁ

କୌଣସି ପରିଚ୍ଛେଦ କିମ୍ବା ଅଧ୍ୟାୟ ନୁହେଁ । ଜୀବନ ଏକ ମହାକାବ୍ୟ ଆଉ ମୃତ୍ୟୁ ଯେମିତି ସେ ମହାକାବ୍ୟର ଫଲ୍‌ଗୁ ଗଭୀର ତତ୍ତ୍ୱ । -ସା : କ : ୪୨

"କେଉଁ ନାଲିର ଉଦୟ ଏ କେଉଁ ଅସ୍ତାଚଳ
ଜ୍ୱଳନ୍ତ ସୂର୍ଯ୍ୟର ଏ ଯେ ଅନ୍ଧାରିତ ଖେଳ
ଅଜଣା ଅନ୍ୱେଷ ଇଏ ଚିର ଚିହ୍ନାଟିର
ତୁମର ଓ ମୋର ।" (ଆ.କା.ପ.ନି. ୭୫)
ଜୀବନଟା ଖାଲି ଏକ ଶୂନ୍ୟର ଅନ୍ୱେଷା
ଶୂନ୍ୟତା କସ୍ତୁରୀ ଗନ୍ଧେ ପ୍ରତାରିତ ହେବା
ରଚିଯିବା ପରେ କୁରୁକ୍ଷେତ୍ରର ଶ୍ମଶାନ
ରକ୍ତ ନଈକୂଳେ ପୁଣି ଶୂନ୍ୟକୁ ଚାହିଁବା । -ଉ : ଭା: ୧୯

ସାମାଜିକ ଦୁଃସ୍ଥିତିର ଚିତ୍ରଣ ପରିପ୍ରେକ୍ଷୀରେ ଈଷତ୍ ବ୍ୟଙ୍ଗାତ୍ମକ ମନ୍ତବ୍ୟ ପ୍ରଦାନ କରିଛନ୍ତି ।

ଉଦାହରଣ ସ୍ୱରୂପ :-

ବିଳାସୀ ବିପ୍ଳବୀ, ମଣିଷ ଠାକୁର, କପି କରୁଥିବା ଯୁବକଟି 'ଆଜିର ଈଶ୍ୱର' ଆଦି ଅନେକ କବିତାରେ ଏହା ପ୍ରୟୋଗ ଦେଖିବାକୁ ମିଳେ । ସରଳ ବାକ୍ୟର ଅନ୍ତରାଳରେ ଗଭୀର ବ୍ୟାକୁଳତା ଓ ବେଦନାର ସୂଚନା କବିତାରେ ଦୃଷ୍ଟିଗୋଚର ହୁଏ । ଉଦାହରଣ ସ୍ୱରୂପ :-

"ଘର କରିବା ଟଙ୍କାରୁ ଦେଉନ ତ ?
କେବେ ତ କିଛି ଦେଇ ପାରିଲିନି
କବିତାଟେ ଲେଖିଛି
ଟିକେ ପଢ଼ିବ ।" -ଆ : ପ : ନି - ୪୨ -
ସ୍ନେହ କାଙ୍ଗାଳ କବିଟିଏ ମୁଁ
ମୋତେ ଥରେ ପଢ଼ିବନି ? - ଆ : ପ : ନି - ୪୨ -

ଅଯଥା ଦୀର୍ଘ ଓ ବାକ୍ ସର୍ବସ୍ୱ ନ୍‌ହୋଇ ଯଥା ସମ୍ଭବ ସଂକ୍ଷିପ୍ତ ଶବ୍ଦ ବ୍ୟବହାର କରିଛନ୍ତି କବି । ଭାବ ବସ୍ତୁର ପରିସ୍ଫୁଟନ ଓ ସଂକ୍ରମଣରେ ପ୍ରତୀକ ଓ ଚିତ୍ରକଳ୍ପବାଦୀ ପରମ୍ପରାର ଅନୁସରଣ କବିତା ଗୁଡ଼ିକୁ କରିଛି ହୃଦୟସ୍ପର୍ଶୀ । କଥୋପକଥନ ଶୈଳୀର ସ୍ୱାତନ୍ତ୍ର୍ୟ "ଆମ ଦୁହିଁଙ୍କ କଥା' କବିତା ସଂକଳନର ବୈଶିଷ୍ଟ୍ୟ । ଉଦାହରଣ ସ୍ୱରୂପ :-

ଘାଣ୍ଟ ତରକାରି ପାଇଁ ପରିବା ଧରି ଫେରୁଥିଲୁ
ବାଟରେ ଦେଖା ହେଲା ଜଣେ ବନ୍ଧୁଙ୍କ ସହ ।
ବନ୍ଧୁ ପଚାରିଲେ ଆଉ କ'ଣ ସବୁ କିଣିଲେ
ବାସ୍, ଏତିକିରେ ବାବୁ ଆରମ୍ଭ କରିଦେଲେ
ହେଇ ଦେଖୁ ନାହାଁନ୍ତି କାକୁଡ଼ି ପରି

ଏଡ଼େ ଟିକେ ଖମ୍ବ ଆଳୁଟାକୁ ପାଞ୍ଚଟଙ୍କା ଦେଇ ଆଣିଛି
ଅଥଚ ସେଦିନ ଖମ୍ବାଳୁ ବାଣ୍ଟି ବାଣ୍ଟି ଦେଇ ଆଣିଛି
ଅଥଚ ସେଦିନ ଖମ୍ବାଳୁ ବାଣ୍ଟି ବାଣ୍ଟି ଦିନ ସରିନି
ଆଉ ସେଇ ଖମ୍ବାଳୁ ପାଇଁ
ଦିନ ଦିନ ଧରି ଛଟପଟ ବି ହୋଇଛି -ଆ : ଦୁ : କ -୩୯-

x x x x x

ଧନ୍ୟବାଦ କହି ସେ ଉଠିଲା । ତା' ସହ ମୁଁ ବି ଉଠିଲି
ନିଦ ଭାଙ୍ଗି ଯାଇଥିଲା । ବାହାରେ ମୁଁ ଡ଼େରା ପକାଇଥିଲି
ସେଇମିତି ଏକୁଟିଆ । -ଆ : ଦୁ : କ -୮୭-

ସର୍ବୋପରି ଏକ ବୌଦ୍ଧିକ ଜଟିଳତା ଓ କୃତ୍ରିମ କାରିଗରି ହାତରୁ ଆଧୁନିକ ଓଡ଼ିଆ କମିତାକୁ ମୁକ୍ତ କରିବାରେ କବିଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ ।

(ଖ) **ସୌରୀନ୍ଦ୍ରଙ୍କ କବିତାରେ ମିଥ, ଚିତ୍ରକଳ୍ପ ପ୍ରତୀକର ପ୍ରୟୋଗ :**

ମିଥ- କବି ସୌରୀନ୍ଦ୍ର ବାରିକ୍‌ଙ୍କ ଭାଷାରେ କୁହାଯାଇ ପାରେ ଯେ ଏହା ଦାର୍ଶନିକ, ବୈଜ୍ଞାନିକ ବା ଆଧାତ୍ମିକ ଯାହା କିଛି ହେଉନା କାହିଁକି ମଣିଷ ଆଗରେ ରହସ୍ୟମୟ ସୃଷ୍ଟିର ବିଭିନ୍ନ ଶକ୍ତି ଗୁଡ଼ିକ ମଧରେ ଯେଉଁ ଅବିରତ ସଂଘର୍ଷ ଘଟି ଯାଉଛି, ଯେଉଁ ଝଡ଼ ତୋଫାନରେ ମଣିଷ ଅସହାୟ ପତ୍ର ଟିଏ ପରି କୁଆଡେ ଉଡ଼ିଯାଉଛି; ତାକୁ ସେ ବୁଝିବାକୁ ଚେଷ୍ଟା କରିଛି ଅଥଚ ଅନେକ ସମୟରେ ବୁଝି ପାରୁନି; ସେହି ସବୁ ଶକ୍ତି ଗୁଡ଼ିକର ସଂଘର୍ଷ ଓ ପ୍ରଭାବର ନାଟକୀୟ ବର୍ଣ୍ଣନା ହେଉଛି ମିଥ୍ । ସେହି ଚିରନ୍ତନ ସଂଘର୍ଷର ମାନବିକ ଅବବୋଧ ହିଁ ମିଥ୍ ।୨୩ ।

ମିଥ୍ ଚେତନାଟି ମଣିଷର ଜୀବନ ଓ ଜଗତ ସମ୍ବନ୍ଧରେ ଯିକ୍ତି କିମ୍ବା ତର୍କ ନୁହେଁ; ଏହା ଏକ ମନୋବୃତ୍ତି ବା ସଚେତନତା, ଯାହା ମଣିଷର ପ୍ରତୀକାତ୍ମକ ଚିନ୍ତା ଓ ଚେତନାକୁ ପ୍ରକଟ କରିବାରେ ସଫଳ ହୋଇଥାଏ । ଏଥିରେ ମଣିଷ ମନର ଯେଉଁ ଜିଜ୍ଞାସା ଓ ତା'ର ଉତ୍ତର ତଥା କଳାତ୍ମକ ସର୍ଜନାଶୀଳତା ମିଥ୍ ଚେତନାରେ ବ୍ୟାପକତାକୁ ପ୍ରକାଶ କରିଥାଏ । ତେଣୁ ଏହି କ୍ରମରେ କବି ସୌରୀନ୍ଦ୍ର ବାରିକ୍‌ଙ୍କ କାବ୍ୟ-କବିତାରେ ଏହାର ପ୍ରାସଙ୍ଗିକତା ଓ ପ୍ରାୟୋଗିକ ଦୃଷ୍ଟିଭଙ୍ଗୀକୁ ଅନ୍ୱେଷଣ କରି ମାନବ ଜୀବନର ଚିରନ୍ତନ ଜିଜ୍ଞାସା ଓ ତା'ର ଉତ୍ତର ସହିତ ମିଥ୍ ପ୍ରସଙ୍ଗ ଓ ମିଥ୍ ରୂପକକୁ ଅନୁସନ୍ଧାନ କରାଯାଇଛି ।

ମହାଭାରତର ଚରିତ୍ର ଓ କାହାଣୀକୁ ନେଇ 'ଉପଭାରତ' ଓ 'ଅନୁଭାରତ' ନାମକ ଦୁଇଟି କବିତା ସଂକଳନ ମହାଭାରତର ମିଥ୍ ଉପରେ ଆଧାରିତ । କବି ତାଙ୍କର ପ୍ରଥମ କାବ୍ୟଗ୍ରନ୍ଥ 'ସାମାନ୍ୟ କଥନ'ରେ ଯେଉଁ ଉପପାଦ୍ୟର ସୂଚନା ଦେଇଥିଲେ ତାହାର ସିଦ୍ଧାନ୍ତ ଓ ଚୂଡାନ୍ତ ରୂପରେଖ ଉପଯୁକ୍ତ କବିତା ସଂକଳନ ଦୁଇଟିରେ ମିଥ୍ ଅବବୋଧର ସୂଚନା

ମିଳିଥାଏ । ମହାଭାରତର ଚରିତ୍ର ଓ କାହାଣୀକୁ ନେଇ ଆଜିର ସାଂପ୍ରତିକ ମନଟି ତା' ଭିତରେ ଯେଉଁ ଜିଜ୍ଞାସା ଓ ସାଂପ୍ରତିକ ମଣିଷର ସଂକଟ, ବିକଳ ବିଧୃତ ରୂପ ଅଙ୍କନ କରି ତା ଭିତରେ ସତ୍ୟତା, ବାସ୍ତବତା ଓ ମାନବୀୟ ଗୁଣକୁ କବି ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି, ତାହା ବେଶ୍ କାଳାତୀତ ହୋଇ ପାଠକ ପ୍ରାଣରେ ଆବେଗମୟ ଭାବ ସୃଷ୍ଟି କରିଛି । ସେହି ଚରିତ୍ର ଗୁଡ଼ିକ ଭିତରେ ସେ ଅଲୌକିକତାର ଚିତ୍ରଣରେ ଅତିରଂଜନ କରି ସେମାନଙ୍କୁ ବାନ୍ଧି ଦେଇ ପାରିନାହାଁନ୍ତି । ତାହା ଯେମିତି ଆଜିର ମଣିଷ ମନରେ ଦୁଃଖ ସୁଖ ହସ କାନ୍ଦର ସଂସାର ସହିତ ରାଗ ରୋଷ ପ୍ରତିଟି ଦ୍ୱନ୍ଦ୍ୱ ଅଭିମାନ ଈର୍ଷା ଓ ବନ୍ଧୁତ୍ୱର ମିଳନ କରି ତା' ଭିତରୁ ଅନ୍ଧାରି ମନର ଗୁପ୍ତ କଥାକୁ ଖୋଲି ଦେବା ପାଇଁ କବି ସୌରୀନ୍ଦ୍ର କବିତାରେ ପ୍ରୟାସ କରିଛନ୍ତି । 'ସାମାନ୍ୟ କଥନ' କବିତା ସଂକଳନରେ କର୍ଣ୍ଣ ଓ ଶକୁନି ଶୀର୍ଷକ ଦୁଇଟି କବିତାରେ କବିଙ୍କ ମିଥ୍ ସଂପର୍କିତ ଅବତାରଣା ପ୍ରଥମ କରି ପ୍ରକାଶ ପାଇଥିଲା । ଯୋଦ୍ଧା କର୍ଣ୍ଣ କେବଳ ମହାଭାରତର ସୀମା ଭିତରେ ଉପେକ୍ଷିତ ଲୁଣ୍ଠିତ କିମ୍ବା ଅଭିଶପ୍ତ ନୁହନ୍ତି, ଆଜିର ଅନେକ ମଣିଷ ଙ୍କ ଭଳି ତାଙ୍କର ଆଧିପତ୍ୟ ଥିଲେ ମଧ୍ୟ ସେ ଥିଲେ ଅବହେଳିତ, ଲାଞ୍ଛିତ, ଅପମାନିତ । ସମସ୍ତ ପ୍ରକାର ଭାଗ୍ୟ ପ୍ରତିକୂଳ ପରିସ୍ଥିତିରେ କର୍ଣ୍ଣ ସଂଗ୍ରାମ ଭୂମିକୁ ଅବତରଣ କରିଛନ୍ତି । କବି ସୌରୀନ୍ଦ୍ର ବାରିକ୍ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'କର୍ଣ୍ଣ' କବିତାରେ ପ୍ରକାଶ କରିଛନ୍ତି :-

ତଥାପି କର୍ଣ୍ଣତ୍ୱ ଯେ ମରିନହିଁ
ତୁମେ ତାକୁ ମାରି ପାରିବନି
ତେଣୁ ହେ କିରିଟୀ
ଥୋଇ ଦିଅ ଗାଣ୍ଡିବ ତୁମର
ଅସ୍ତ୍ରହୀନ ଅଧର୍ମକୁ ନାଶି
କଳୁଷିତ କରନାହିଁ
ଧର୍ମର ଔଜଲ୍ୟ । ୨୪ ।

କର୍ଣ୍ଣ ଏଠି ପୁରାଣ କି ଇତିହାସର ଚରିତ୍ର ନୁହେଁ, ତାହା ଦେଶ୍ କାଳକୁ ଅତିକ୍ରମ କରି ଯେଉଁ ମିଥ୍ ରୂପକଟି ଆମ ଭିତରେ ସୃଷ୍ଟି କରିଛି ତାହା ଅର୍ଜୁନଙ୍କୁ ଗ୍ରାସିଛି କର୍ଣ୍ଣତ୍ୱ; ଆଉ ଏହାହିଁ ସବୁ ସଫଳତାର ସିଦ୍ଧି ଓ ଗୌରବ କର୍ଣ୍ଣଜୀବନ ବ୍ରତର । ସେହିପରି 'ଶକୁନି' କବିତାଟି ସହଜରେ ଅନୁମାନ କରିହୁଏ । ସେ କୁଟ କପଟୀ ହୋଇପାରେ ପୁରାଣ ଚେତନାରେ, ମାତ୍ର ସାଂପ୍ରତିକ ମଣିଷ ମନ ଭିତରେ ସେ ଅନେକ ଜିଜ୍ଞାସା ଓ ରହସ୍ୟମୟତାକୁ ଆମଭିତରକୁ ଟାଣି ଆଣେ । କବି ସୌରୀନ୍ଦ୍ର ବାରିକ୍ 'ଶକୁନି' କବିତାରେ ପ୍ରକାଶ କରିଛନ୍ତି:-

ଅସହାୟ କଙ୍କାଳ ଉପରେ
ଅସହାୟ ଶକୁନି ମୁଁ

କୁଢ କୁଢ କଙ୍କାଳ ଉପରେ
ଦେଖିଛି ମୋ' ପୃଥିବୀର ସୀମିତ ଦିଗନ୍ତ
ଦୁର୍ଯ୍ୟୋଧନ ପାଚେରୀ ଘେରିଛି ମୋତେ
ମୋ' ଛାତିରେ ନିଆଁ, ମୋ ହାତରେ
ମୋ' ପିତାର ଅସ୍ଥି । ୨୫ ।

ଶକୁନି ନିଜ ଭଣଜା ଦୁର୍ଯ୍ୟୋଧନଙ୍କ ପକ୍ଷ ନେଇ ଯୁଦ୍ଧ କରିପାରେ, ମାତ୍ର ତା'ର ମନଭିତରେ ଯେଉଁ ଅଗ୍ନିର ବର୍ଷା ତାହା ଅଜିର ମଣିଷ ପାଇଁ ପ୍ରତିଶୋଧର ବହ୍ନି ପରି ଠିଆ ହୁଏ । ଯଥାର୍ଥରେ କବି ପ୍ରକାଶ କରିଛନ୍ତି :-

'ଜତୁ ଗୃହ ଜଳିଯାଏ ତେଣୁ
ପଶା କାଠି ଗଡ଼ି ଗଡ଼ି ଯାଏ
ଅସ୍ଥି ମୋର ମାଡ଼ି ମାଡ଼ି ଯାଏ
କୁରୁସଭା ତଳେ
ଯାଜ୍ଞସେନୀ ହୁଏ ବିବସନା । ୨୬ ।

ମାମୁ ଶକୁନି ଧ୍ୱଂସର ପ୍ରତୀକ ଭାବରେ ଭଣଜା ଦୁର୍ଯ୍ୟୋଧନ ପାଖରେ ଉଭା ହେବାର ବୈଚିତ୍ର ସାଂପ୍ରତିକ ମଣିଷ ପାଇଁ କିଚ୍ଛି ନୂଆ କଥା ନୁହେଁ । ତେଣୁ ମିଥ୍ ଭିତରେ ସ୍ୱପ୍ନ ଦେଖେ ଧର୍ମକ୍ଷେତ୍ର ପାଇଁ ନୁହେଁ ରକ୍ତ ନଈର ଗଙ୍ଗାଜଳ, ଦୁର୍ଯ୍ୟୋଧନର ଶବ । ସେ ନିଜ ପିତାଙ୍କ ଅସ୍ଥି ସହିତ ଅନେକ ଖେଳ ଖେଳିଛି । ଆଜି ସେ ଅନୁତପ୍ତ ସହଦେବଙ୍କ ପାଖରେ ।

ସବୁଭଲ କବିତା ଏହି ଅବୈକ୍ତିକତାର କଥା କହେ । କବିର ନିଜସ୍ୱ ପୃଥିବୀ ସମୂହର ହୁଏ । ବ୍ୟକ୍ତିଗତ ଅନୁଭବ ସାର୍ବଜନୀନ ହୁଏ । W.B. Yeats ଙ୍କ କହିବା ଅନୁସାରେ A poet writes always of his personal life. ନିଶ୍ଚିତ ସତ୍ୟ କିନ୍ତୁ :- The poet, by the incatation of his language makes his world ours; his experience becomes ours; and if this has achieved the perfection we call a poem, it has become, some participation in the ideal world . । ୨୬ ।

କବି ସୌରୀନ୍ଦ୍ର ବାରିକ୍ ଏହି ସଫଳତାକୁ ଛୁଇଁଛନ୍ତି । ଆପଣାର ଅତି ଅନ୍ତରଂଗ ଆବେଗ ପୂର୍ଣ୍ଣ ବ୍ୟକ୍ତିଗତ ଅନୁଭବଟିକୁ ଚମତ୍କାର ଭାବରେ ମିଥ୍ ମାଧ୍ୟମରେ କବି କବିତାରେ ଉପସ୍ଥାପନ କରିଛନ୍ତି । ପ୍ରତ୍ୟେକଟି ଉପାଦାନ ସହ ତାଙ୍କ ସ୍ପର୍ଶକାତର ମାନସିକତାର ଐକ୍ୟବଦ୍ଧତା ଯେଉଁ ରହସ୍ୟମୟ ଆବେଗ ପ୍ରବଣ ଅନୁଭୂତିଟିକୁ ଜନ୍ମ ଦେଇଛି ସେହି ଅନନ୍ୟ ଅନୁଭୂତିଟିର ବିଶ୍ୱସ୍ତ ପ୍ରକାଶ ତାଙ୍କ କବିତା । ସେହି ରସସ୍ନିଗ୍ଧ ଅନୁଭୂତିର ପରିବ୍ୟାପ୍ତ ଚେତନାଟିକୁ ଆପଣା ଭିତରର ପରମ ମୁହୂର୍ତ୍ତଟିରେ ସମଗ୍ର ଭାବରେ ଧରି ରଖି ପାରିବାରେ ହିଁ ତାଙ୍କ କବିତାର

ସାର୍ଥକତା । କବି ସୌରୀନ୍ଦ୍ର ବାରିକ୍ 'ଆକାଶ ପରି ନିବିଡ଼' କବିତା ସଂକଳନରେ 'ଏକ କବିତା ତୁମ ପାଇଁ' କବିତା ଶୀର୍ଷକରେ ପ୍ରକାଶ କରିଛନ୍ତି । :-

'ବିନ୍ଦୁଏ ଆକାଶ, ବିନ୍ଦୁଟୀ ସୂର୍ଯ୍ୟକୁ ଧରି
ମୁହୂର୍ତ୍ତେ ଜଳିଉଠେ, ଆଉ ବିନ୍ଦୁଏ ଅନ୍ତରକୁ
ସେହି ଜ୍ୱଳନ ଭିତରେ ରଖେ । ବାସ୍ ସେତିକି । ୨୭ ।

ମିଥ୍‌ର ଉଲ୍ଲେଖ ଧର୍ମୀ ବ୍ୟବହାର ସୌରୀନ୍ଦ୍ରଙ୍କ କବିତାରେ ପ୍ରଚୁର । ତା'ର ପ୍ରାସଂଗିକତା ଓ ପ୍ରାୟୋଗିକ ଦୃଷ୍ଟିଭଙ୍ଗୀ ନେଇ ଆଜିର ମଣିଷକୁ ବୁଝିବା ପାଇଁ ତାଙ୍କର ପୁରାଣ କାହାଣୀ ଓ ଚରିତ୍ରର ଅବତାରଣା । ସୌରୀନ୍ଦ୍ରଙ୍କ ଉପଭାରତ ଓ ଅନୁଭାରତ ଉଭୟ କାବ୍ୟଗ୍ରନ୍ଥରେ ପୁରାଣ ଚେତନା ଓ ମିଥ୍ ଚେତନା ଦୁଇଟି ଯାକ ସ୍ୱତନ୍ତ୍ର ଭାବେ ପ୍ରତିଫଳିତ । ସେ ଯାଜ୍ଞସେନୀ ହେଉ, କି ଶକୁନି କର୍ଣ୍ଣ ବା ଉତ୍ତରା ହୁଅନ୍ତୁ ସମସ୍ତ ଚରିତ୍ର ଓ କାହାଣୀର ଅବତାରଣାରେ ମିଥ୍ ଚେତନାର ପ୍ରୟୋଗ ଲକ୍ଷ୍ୟ କରାଯାଇପାରେ । ଆମ ସାହିତ୍ୟ ସଂସ୍କୃତି ସମାଜ ପୁରାଣ ସହିତ ଏପରି ଓତଃପ୍ରୋତ ଭାବରେ ଜଡ଼ିତ ହୋଇପଡିଛି ଯେ ଆମେ ତାକୁ ବିଚାର କଲାବେଳେ ଅଲଗା କରି ଦେଖଇପାରୁ ନାହିଁ । କବି ସୌରୀନ୍ଦ୍ର ବାରିକ୍‌ଙ୍କ ଉଭୟ ଗ୍ରନ୍ଥ 'ଉପଭାରତ ଓ 'ଅନୁଭାରତ' ରେ ଥିବା ଘଟଣା କାହାଣୀ ଚରିତ୍ର ଓ ପରିବେଶକୁ ନେଇ ସ୍ୱତନ୍ତ୍ର ଅଧ୍ୟାୟ ଭାବେ ଆଲୋଚନା କରାଯାଇଛି ଏବଂ ସେଥିରେ ମିଥ୍‌ର ପ୍ରାସଙ୍ଗିକ ଓ ପ୍ରାୟୋଗିକ ଦୃଷ୍ଟିଭଙ୍ଗୀ ଭିତରେ ଆଧୁନିକ ଜୀବନ ବୋଧର ଯନ୍ତ୍ରଣାକୁ, ଜିଜ୍ଞାସାକୁ ପ୍ରକାଶ କରିବାରେ ସୌରୀନ୍ଦ୍ର କିପରି ସିଦ୍ଧହସ୍ତ ତାହା ଦର୍ଶାଯାଇଛି ।

ସୌରୀନ୍ଦ୍ରଙ୍କ ଉପଯୁକ୍ତ ଗ୍ରନ୍ଥ ଦ୍ୱୟକୁ ବାଦ୍ ଦେଲେ ଅନ୍ୟାନ୍ୟ କବିତା ଗ୍ରନ୍ଥରେ ମଧ୍ୟ ଏହାର ପ୍ରାସଙ୍ଗିକତା ଓ ପ୍ରୟୋଗାତ୍ମକ ଦୃଷ୍ଟିଭଙ୍ଗୀ ବେଶ୍ ସ୍ପଷ୍ଟ । ଏ ଯୁଗର ଯନ୍ତ୍ରଣାମୟ ହାହାକାର ଜୀବନକୁ ଖୋଜି ପ୍ରକାଶ କରିବାରେ ସେ ଜଣେ କୁଶଳୀ ଶିଳ୍ପୀ । ତେଣୁ ମୌଳିକ ମିଥ୍ ଓ ଅନୁସଙ୍ଗିକ ମିଥ୍ ଚେତନା ଭିତରେ ତାଙ୍କର ନୂତନତା କବିତାକୁ ଏକ ସ୍ୱତନ୍ତ୍ର ଭାବେ ଆବେଗମୟ କରି ପ୍ରାଣରେ ସ୍ପନ୍ଦନ ସୃଷ୍ଟିକରେ । 'ଆକାଶ ପରି ନିବିଡ଼' କବିତା ଗ୍ରନ୍ଥରେ 'କେବେ ତ କିଛି ଦେଇ ପାରିଲିନି' କବିତାରେ ମିଥ୍ ଲୋକ ଉପାଦାନଟି ଆରୋପିତ ହୋଇଛି ଜଣେ ନାରୀଠାରେ । ଯାହା ସହିତ ସେ ପ୍ରାତ୍ୟହିକ ଜୀବନରେ ଦେଖା ସାକ୍ଷାତ, ଆଳାପ, ଆଲୋଚନା, ସୁଖ ଦୁଃଖ, ହସ ଖୁସି, ପ୍ରେମ, ରାଗ, ରୋଷ ସବୁ କିଛିର ଅବତାରଣା କରିଛନ୍ତି । ସେଥିପାଇଁ କବି ସୌରୀନ୍ଦ୍ର ବାରିକ୍ କବିତାରେ ପ୍ରଶ୍ନ କରିଛନ୍ତି :-

'ତୁମେ କିଏ /
ଡାହାଣୀ, ଚିରୁଗୁଣୀ ନା ପିତାଶୁଣୀ
ମାଲୁଣୀ, ବୁଢ଼ୀ ଅବା କେଉଁ ଅସୁରୁଣୀ
ତୁମେ ଆସିବା ଦିନଠୁ ମୋର ଯେମିତି

କ'ଣ ହୋଇଗଲା, ସବୁ ବଦଳି ଗଲା ।୨୮।

ଲୋକ କଥାରେ ମାଲୁଣୀ ନିଜ କାମ ଲାଳସାର ଚରିତାର୍ଥ ପାଇଁ ଦିନରେ ମେଣ୍ଢା ଓ ରାତିରେ ଭେଣ୍ଡା ବନେଇବା କାହାଣୀ ସହ ପ୍ରାୟ ସବୁ ପାଠକ ପରିଚିତ । ମାତ୍ର ତା'ର ଆବେଦନ କେବଳ ମିଥ୍ ଓ ଲୋକ ଉପାଦାନ ଉପରେ ନିର୍ଭରଶୀଳ ହୋଇ କଦାପି ନିଜକୁ ପ୍ରତିଷ୍ଠା କରିପାରିବ ନାହିଁ । ଏହି ପ୍ରସଙ୍ଗରେ ପ୍ରଫେସର ଡ. ନିତ୍ୟାନନ୍ଦ ଶତପଥୀଙ୍କ ବକ୍ତବ୍ୟ ସ୍ମରଣ କରାଯାଇପାରେ । ଭାଷା ଓ ଶବ୍ଦପ୍ରୟୋଗର ବ୍ୟଞ୍ଜନା ଉପରେ କବିତା ସବୁଦିନେ ଅଧିକ ନିର୍ଭରଶୀଳ ହେବ ଏବଂ ଯେଉଁ କବିତାର ବ୍ୟଞ୍ଜନାର୍ଥ ଯେତେ ଶକ୍ତିଶାଳୀ ସେ କବିତାଟି ନିଶ୍ଚିତଭାବେ ପାଠକକୁ ସେତିକି ଆକୃଷ୍ଟ କରିବ । କବିତା ରଚନା କବିର ଚେତନା ମଧ୍ୟରେ ଏକ ଜାଗରଣ ପ୍ରକ୍ରିୟା । ଯେଉଁ ସବୁ ଦୃଶ୍ୟ ବା ଭାବନାକୁ କବି ନିଜଇନ୍ଦ୍ରିୟ ସାହାଯ୍ୟରେ ଆସ୍ୱାଦନ କରେ ତାକୁ ସ୍ୱାନୁଭୂତ, ସ୍ୱଆବେଗ ଓ ସ୍ୱବୁଦ୍ଧିମତ୍ତା ମଧ୍ୟରେ ଫେଣ୍ଟାଫେଣ୍ଟି କରି ନୂତନ ଭାବରେ ପରିବେଷଣ କରେ ।୨୯। ତେଣୁ କାବ୍ୟର ଶିଳ୍ପ ବିଧି ଓ କବିତାର ଭାବବସ୍ତୁ ପାଇଁ ମିଥ୍ ଯେ ଏକ ଅପରିହାର୍ଯ୍ୟ ଚେତନା ଭାବେ ଆଜି ପ୍ରୟୋଜନୀୟ ହୋଇ ପଡିଛି ଏହା ନିଃସନ୍ଦେହ ।

ପୁରାଣର ବିଷୟ ଓ ଚରିତ୍ର ନୂତନ ଭାବରେ ଅନୁସନ୍ଧାନ କଲାବେଳେ ସୌରୀନ୍ଦ୍ର ମିଥ୍ ସହିତ ଆଧୁନିକ ଜୀବନର ସମାନ୍ତରାଳ ଚିତ୍ର ଅଙ୍କନ କରିବାରେ ନିଜର ଦକ୍ଷତା ପ୍ରକାଶ କରିଛନ୍ତି କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । 'ଆଜିର ଈଶ୍ୱର' କବିତାରେ ମଣିଷ କେମିତି କପାଳରେ ଚିତା, ଗେରୁଆ ବସ୍ତ୍ର, ନିର୍ଗୁଣ, ନିର୍ଲିପ୍ତ ଆଉ ନିର୍ଭୀକ ସନ୍ନ୍ୟାସୀ ସାଜି ଖୁବ୍ ଶୀଘ୍ର ମଣିଷ ହେବା ବଦଳରେ ସହଜରେ ଈଶ୍ୱର ପାଲଟି ଯାଏ । ଏଭଳି ତୀର୍ଯ୍ୟକ ଦୃଷ୍ଟିଭଙ୍ଗୀ ଭିତରେ ସୌରୀନ୍ଦ୍ର ସେମାନଙ୍କୁ କଳାଧନ କୈବଲ୍ୟ, ଚାନ୍ଦର ବିଭୂତି, ଶିଷ୍ୟ ପାଗଳ କରୁଣାରେ ନାହିଁ ମୋଟେ ଉଣା ବୋଲି ପ୍ରକାଶ କରିବା ଭିତରେ ମିଥ୍ର ପ୍ରାସଙ୍ଗିକତାକୁ ଅବତାରଣା କରି ଆଜିର ଯୁଗରେ ଏ ସବୁର କିଛି ପ୍ରତିକାର କରି ହୁଏନି ବୋଲି ସ୍ୱୀକାର କରିଛନ୍ତି । କବି ସୌରୀନ୍ଦ୍ର ବାରିକ 'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଆଜିର ଈଶ୍ୱର' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି:-

ପିମ୍ପୁଡ଼ି ଗାତରେ ଗୁଡ ଠୁ ମହାମହା ପାଣ୍ଠି ପର୍ଯ୍ୟନ୍ତ
ସବୁଠି ହାତ ଖୋଲା । ସିଏ ଦାତା ହରିଶ୍ଚନ୍ଦ୍ର
ସିଏ ବି ଦଧୀଚି । ଅନ୍ୟର ହିତାର୍ଥେ ଖାଲି
ତାଙ୍କର ସଞ୍ଚୟ, ଯେତେ ସବୁ କୁବେର ଭଣ୍ଡାର ।୩୦।

କବିତାରେ ପୁରାଣର ଚରିତ୍ର ଦଧୀଚି, ହରିଶ୍ଚନ୍ଦ୍ର ପ୍ରଭୃତି ମାଧ୍ୟମରେ ଆଜିର ମଣିଷ କିପରି ସେମାନଙ୍କ ଅବତାର ସାଜି ତାଙ୍କ ଗୁଣ ଓ ଗରିମାରେ କାଳିମାର ଗାର ଟାଣି ଦେଉଛି, ତାକୁ କବି ତୀର୍ଯ୍ୟକ ଭାବରେ କବିତାରେ ପ୍ରକାଶ କରିଛନ୍ତି । ସେହିପରି ଅନ୍ୟ ଏକ କବିତା

ହେଲା 'କପି କରୁଥିବା ଯୁବକଟି' । ସିଏ ଆଜିର ପରୀକ୍ଷାର୍ଥୀ ଯାହାର ଗୁରୁ ନାହିଁ, ସାଧନା ନାହିଁ, ସଂଯମତା ନାହିଁ ଅଥଚ ସିଏ ଆଜିର ପରୀକ୍ଷାର୍ଥୀ । କବି ସୌରୀନ୍ଦ୍ର ବାରିକ୍ 'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ 'କପି କରୁଥିବା ଯୁବକଟି' କବିତାରେ ପ୍ରକାଶ କରିଛନ୍ତି:-

ଓଲଟ ଏକଲବ୍ୟ ଇଏ । ଗୁରୁ ନାହିଁ, ସାଧନା ନାହିଁ
ଅଛି ଚରମ ସିଦ୍ଧିର ନଂପୁସକ କାମନା, ସିଦ୍ଧି ପାଇଁ
ପୁଣି ଗୁରୁଙ୍କ ଚଉଦ ପୁରୁଷ ଦକ୍ଷିଣା ରୂପେ
ନେଇ ଯିବାକୁ ସଦା ପ୍ରସ୍ତୁତ । ଏହାର ହାତ ଇସ୍ପାତ
ମୁହଁ ଇସ୍ପାତ, ଆଉ ମୁଣ୍ଡଟା ବି ଇସ୍ପାତର ଗଦା
ଇସ୍ପାତି ଅସ୍ତିତ୍ୱ ଏହାର, ବୁଝେ ଇସ୍ପାତି ସଂପର୍କର ଭାଷା ।
ଇଏ ଯେମିତି ଶାମ୍ବର କଉତୁକିଆ ବେଶ
ଘୋଟି ଆସୁଥିବା ଅନ୍ଧାରର ଛାଇ । କାନ୍ଥ ଭୁଷୁଡ଼ିବାର
ଶବ୍ଦ ଇଏ, ଅଣଚାଶୀ ରୋଗୀଟିର ଶେଷ ହାକୁଟି
ବୁଡ଼ିଗଲା ହାତଟିର ଆକାଶକୁ ଜାବୁଡ଼ି ଧରିବା
ଟିଣ ଟିଣେଇ ଉଠୁଥିବା ବିଷାକ୍ତ ହାଡ ଫୁଟି ।୩୧।

କୃଷ୍ଣଙ୍କ ପୁତ୍ର ଶାମ୍ବ ନିଜ ପେଟରେ ବୁଜୁଳି ବାନ୍ଧି କଉତୁକ ବେଶ ହେବାରେ ଯେପରି ଯଦୁବଂଶ ଧ୍ୱଂସର କାରଣ ହେଲା, ସେହିପରି ଦେଖିଲେ ଆଜିର ପରୀକ୍ଷାର୍ଥୀଟିର ରୂପ, ଭେକ ଦେଖିଲେ ଯେ କେହି କହିବ ଶିକ୍ଷାର ଭବିଷ୍ୟତ ଅନ୍ଧକାରମୟ । ସାଧନା ନାହିଁ ଅଥଚ ସଫଳତାର ସିଦ୍ଧି, ବିଡ଼ମ୍ବନା ଛଡା ଆଉ କ'ଣ ହୋଇପାରେ । ଠିକ୍ ସେହିପରି ଅନ୍ୟ ଏକ ଚରିତ୍ର ନଚିକେତା; ନିଜ ସିଦ୍ଧି ଓ ସାଧନା ବଳରେ ସେ ମୃତ୍ୟୁକୁ ଜୟ କରି ତା' ସାଧନାର ଚରମ ଆଦର୍ଶ ସମାଜ ପାଇଁ ରଖିଗଲା । ଅଥଚ ଆଜିର ଛାତ୍ର ବିନା ସାଧନା ଓ ସିଦ୍ଧିରେ ଚରମ ଗୌରବର ଅଧିକାରୀ । ନଚିକେତା ଆଉ ନାହିଁ । ସଢ଼ି ପଚି ଯାଇଛି ତା'ର ଆଦର୍ଶ । ସାଧନା ଆଜିର ଛାତ୍ର ପାଖରେ ଅଭାବ । ତେଣୁ ଏହି ଦୁଇଟି ଚରିତ୍ର ପଛରେ ଯେଉଁ କାହାଣୀଟିର ଅବତାରଣା କରିଛନ୍ତି ସୌରୀନ୍ଦ୍ର ସେଥିରୁ ଆଜିର ଚେତନା ଭିତରେ ମିଥ୍ ଚେତନାଟି ପ୍ରସଙ୍ଗ ସାପେକ୍ଷ । ଏକଲବ୍ୟ, ଶାମ୍ବ ଓ ନଚିକେତାର ମିଥ୍ ପ୍ରସଙ୍ଗରେ କବି ଛାତ୍ର ଜୀବନର କଳଙ୍କିତ ଅଧ୍ୟାୟକୁ କବିତାରେ ପ୍ରକାଶ କରିଛନ୍ତି ।

କବି ସୌରୀନ୍ଦ୍ର ବାରିକ୍‌ଙ୍କ 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଭୁବନେଶ୍ୱର' ଏକ ମିଥ୍ ଧର୍ମୀୟ କବିତା । ଲକ୍ଷେ ଫାଇଲରେ ଯେମିତି ଗଢ଼ା ଏ ସହର ଭୁବନେଶ୍ୱର । ଅମଲାତନ୍ତ୍ରର ଶାସନରେ ଚାଲେ ଏ ସହର । ଲକ୍ଷ ଲକ୍ଷ ଗରିବ ଖଟିଖିଆ ମାନଙ୍କର ଜୀବନ ନାଟିକା ଯା ଭିତରେଲୁଚି ରହିଥାଏ । ଇଏ ଫାଇଲ ନୁହେଁ ତ ଯୁଦ୍ଧର କୁରୁକ୍ଷେତ୍ର । ଏଠି ଚକ୍ରବ୍ୟୁହ ଭିତରେ ଗୋଟିଏ ଅଭିମନ୍ୟୁ ନୁହେଁ, ଲକ୍ଷ ଲକ୍ଷ ଅଭିମନ୍ୟୁ

ଫାଇଲ ପାଖରେ ବନ୍ଧା ହୋଇ ମୃତ୍ୟୁକୁ ଆଦରି ନିଅନ୍ତି । ଭୋକିଲା ପେଟରେ ହାହାକାର ଭିତରେ ଲକ୍ଷ ଲକ୍ଷ ଲୋକଙ୍କର ସ୍ୱପ୍ନ, ଆଶା ଆକାଂକ୍ଷା ଯୋଜନା, ସବୁକିଛି ମଉଳିଯାଏ । ପ୍ରତିଶ୍ରୁତି ଓ ପ୍ରତାରଣା ଭିତରେ ମାୟାବୀ ସହରରେ ସୂର୍ଯ୍ୟ ପ୍ରତିଦିନ ବୁଡ଼େ ରାତି ନୁହେଁ ଦିନ ଦ୍ୱିପ୍ରହରରେ କବି ଆଧୁନିକ ଜୀବନର ଯନ୍ତ୍ରଣା ବୋଧକୁ ପ୍ରକାଶ କରିବା ପାଇଁ ଯେଉଁ ପ୍ରସଙ୍ଗ ଗୁଡ଼ିକର ଅବତାରଣା କରିଛନ୍ତି ତାହା ବେଶମର୍ମିଳ ଓ ହୃଦୟସ୍ପର୍ଶୀ । ପୌରାଣିକ ମିଥ୍ ବ୍ୟବହାର କରି କବି କବିତାକୁ ସରସ ସୁନ୍ଦର କରିଛନ୍ତି । କୁରୁକ୍ଷେତ୍ର ଚକ୍ରବ୍ୟୁହ ଓ ଅଭିମନ୍ୟୁ ଏମାନଙ୍କ ଭିତରେ ଯେଉଁ ବିରାଟତ୍ୱର ଧାରଣା ଦେଇଛନ୍ତି କବି, ତାହା ବେଶ୍ ଉଚ୍ଚକୋଟୀର । କବି ସୌରୀନ୍ଦ୍ର ବାରିକ 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଭୁବନେଶ୍ୱର' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି:-

'ଫାଇଲର କୁରୁକ୍ଷେତ୍ର ଇଏ
ଏଠି ଫାଇଲ ଚକ୍ରବ୍ୟୁହ
ଫାଇଲ ଫାଶରେ ବନ୍ଧା ଲକ୍ଷେ ଅଭିମନ୍ୟୁ
ଲକ୍ଷ ଲକ୍ଷ କୋହ ଆଉ ଲକ୍ଷ ଲକ୍ଷ ମୋହ ।୩୨।

ସୌରୀନ୍ଦ୍ର ମିଥ୍ କାହାଣୀକୁ ଆଧାର କରି ଜାଣିଶୁଣି ତା'ର ପ୍ରୟୋଗି ପ୍ରସଙ୍ଗର ଅବତାରଣା କରିନାହାନ୍ତି । ଆଧୁନିକ ଜୀବନ ବୋଧ ଓ କବିତାର ଆବେଗମୟତାକୁ ପ୍ରକାଶ କରିବାକୁ ଯାଇ ଯେ ସ୍ଥଳ ବିଶେଷରେ ମିଥ୍‌ର ବ୍ୟାପକ ଚେତନାକୁ ପ୍ରକାଶ କରିଛନ୍ତି । ପୁରାଣ କି ମହାଭାରତର କାହାଣୀ ନେଇ ମିଥ୍ ଚେତନାକୁ ସୀମାବଦ୍ଧ କରି ନାହାନ୍ତି କବି । ନିଜସ୍ୱ ଚେତନା ସଂପନ୍ନ ବ୍ୟକ୍ତିତ୍ୱକୁ ଗଭୀର ଭାବରେ ଅନୁଧ୍ୟାନ କରି ଯୁଗ ଯନ୍ତ୍ରଣାକୁ ପ୍ରକାଶ କରିବା ପାଇଁ ମିଥ୍‌ର ଅବତାରଣା କରିଛନ୍ତି । କବିଙ୍କ କବିତାରେ ମିଥ୍ ବେଳେବେଳେ ରୂପକ, ଚିତ୍ରକଳ୍ପ, ଲୋକ ଉପାଦାନ ଓ ପ୍ରତୀକ ଭାବରେ ପରିସ୍ଫୁଟନ ହୋଇଛି । ତେଣୁ ଆଧୁନିକ ଓଡ଼ିଆ କବିତା ମିଥ୍ ଚେତନା ଭିତରେ ଭାରାକ୍ରାନ୍ତ ନୁହେଁ ବରଂ ଜୀବନ ବୋଧର ସତ୍ୟଶୀଳ ଅନୁଭୂତି ଓ ତା'ର ସମ୍ଭାବନାକୁ ପ୍ରକାଶ କରିବା ପାଇଁ ସାମ୍ପ୍ରତିକ କବିଗଣ ବେଶ ସଚେତନ । ତେଣୁ ସୌରୀନ୍ଦ୍ରଙ୍କ ମିଥ୍ ପ୍ରୟୋଗ ଓ ପ୍ରସଙ୍ଗର ଅବତାରଣା ଭିତରେଜୀବନ ବୋଧର ସ୍ୱଚ୍ଛ ପରିପ୍ରକାଶ ଘଟିଛି । ସେଥିପାଇଁ କୁହାଯାଏ ଯେଉଁ କବିତା ଯେତେ ଜୀବନ୍ତ ଓ ପ୍ରାଣସ୍ପନ୍ଦିତ ତାହା ସେତିକି ସାର୍ଥକ ଆଉ ମିଥ୍‌ର ଜୀବନ ନ୍ୟାସ ବୋଲି ମନେହୁଏ । ସୁତରାଂ ସୌରୀନ୍ଦ୍ରଙ୍କ ପାଇଁ ମିଥ୍‌ର ଅବତାରଣା ଆମ ପରମ୍ପରା, ଐତିହ୍ୟ, ସଂସ୍କୃତିର ପ୍ରାଣ ଓ ନିଃଶ୍ୱାସ ବାୟୁ ସ୍ୱରୂପ ହୋଇ ତାଙ୍କ କବି ପ୍ରକୃତିର ଅନ୍ତର୍ନିହିତ ପ୍ରେରଣାଭାବେ କାମ କରିଥାଏ । ପୁରାଣ ଆପେ ଆପେ ଚାଲିଆସେ ଏବଂ ମିଥ୍ ଚେତନା ସଂପ୍ରସାରିତ ହୋଇଯାଏ । ଆଧୁନିକ ମଣିଷର ଚିରନ୍ତନ ଓ ଶାଶ୍ୱତ ସତ୍ୟର ପରିପ୍ରକାଶ ନିମିତ୍ତ ତାଙ୍କ ମିଥ୍ ସଂପର୍କିତ ବକ୍ତବ୍ୟ ପରିପୂର୍ଣ୍ଣତାର ସ୍ୱାକ୍ଷର ମହନ କରେ । ଆଜିର ଯେ କୌଣସି ମଣିଷ ପ୍ରତିଦିନ ରାସ୍ତା ଘାଟରେ ଶକୁନି କି ଦୁର୍ଯ୍ୟୋଧନକୁ

ଭେଟିବା ଅପ୍ରାସଙ୍ଗିକ ମନେହୁଏ ନାହିଁ, କବି ସୌରୀନ୍ଦ୍ର ଆମର ଶ୍ରଦ୍ଧା ଓ ବିଶ୍ୱାସହୀନ ଯୁଗକୁ ଚିରକାଳୀନ ମାନବ ମୂଲ୍ୟବୋଧ ସହିତ ଯୋଡ଼ିଦେଇ ଯେଉଁ ଯୋଗସୂତ୍ର ସ୍ଥାପନ କରିଛନ୍ତି ତାହା ବାସ୍ତବିକ୍ ଆମ ପାଇଁ ଆଶା ଓ ଆଶ୍ୱାସନାର ବାଣୀ ବହନ କରେ । ମିଥ୍ କେବଳ ଅତୀତର ଜ୍ଞାନ କି ଗରିମା ନୁହେଁ ଏହା ବ୍ୟାପକତାର ଚିରନ୍ତନ ଅନ୍ୱେଷଣ । କବି ସୌରୀନ୍ଦ୍ର ବାରିକ୍ ଯଥାର୍ଥରେ ପ୍ରକାଶ କରିଛନ୍ତି:-

ସବୁ ମିଛ ଆଜି
ମିଛ ଜୟ ପରାଜୟ କୌରବ ପାଣ୍ଡବ
ଗୀତା ଉଚ୍ଚାରଣ ପୁଣି ଧର୍ମର ସମ୍ଭବ
ସତ ଖାଲି ନୂଆ ନୂଆ କୁରୁକ୍ଷେତ୍ର
ତା' ପାଇଁ ପ୍ରସ୍ତୁତି
ନୂଆ ନୂଆ ଶୂନ୍ୟତାରେ ନିଃସଂଗ ଆହୁତି ।୩୩।

କବି ସୌରୀନ୍ଦ୍ର ବାରିକଙ୍କ 'ଉପଭାରତ' ଓ 'ଅନୁଭାରତ' କବିତା ଗ୍ରନ୍ଥ ଦୁଇଟିକୁ ମହାଭାରତର ଅନୁକ୍ରିୟା ଭାବରେ ଗ୍ରହଣ କରାଯାଏ । କବିତା ସଂକଳନରେ ସଂକଳିତ କବିତାଗୁଡ଼ିକ ମହାଭାରତର ବିଭିନ୍ନ ଚରିତ୍ର, ଘଟଣା, ପରିବେଶ ପ୍ରତି କବିଙ୍କ ଆବେଗପ୍ଲୁତ ପ୍ରତିକ୍ରିୟାରେ ରସ-ସ୍ନିଗ୍ଧ ପ୍ରତିରୂପ । ବୈଚିତ୍ର୍ୟମୟ ମହାଭାରତୀୟ ସଂସ୍କୃତିର ରହସ୍ୟମୟ ପ୍ରାଣଭୂମିରେ ବିପୁଳ ଜୀବନ ସ୍ରୋତର ନିର୍ଯ୍ୟାସକୁ ସାମ୍ପ୍ରତିକତାର ପୃଷ୍ଠଭୂମିରୁ ସୂକ୍ଷ୍ମ ଆବେଗମୟ ଅନୁଶୀଳନର ପ୍ରୟାସରୁ ଏ କବିତା ଗୁଚ୍ଛଙ୍କର ଜନ୍ମ । ନାନା ବିରୋଧ, ବୈଚିତ୍ର୍ୟ ଓ ବିବିଧତାର ପରିପ୍ରେକ୍ଷୀରେ ଉଜ୍ଜ୍ୱଳି ଉଠୁଥିବା ସତ୍ୟର ନାନାବିଧ ରହସ୍ୟ ଗର୍ଭରେ ଆତ୍ମାନୁସନ୍ଧାନର ପ୍ରୟାସ ଏ । ମହାଭାରତୀୟ ବିପୁଳ ଜୀବନାନୁଭୂତିର ପରିସରକୁ ଆପଣାକୁ ସମ୍ପ୍ରସାରିତ କରିଦେବାର ପ୍ରଚେଷ୍ଟା ମହାଭାରତର ଅନନ୍ୟତା କବି ସୌରୀନ୍ଦ୍ରଙ୍କୁ ମୁଗ୍ଧ କରିଛି ନିଶ୍ଚିତ । କବି କବିତା ସଂକଳନର 'ପଦେ'ରେ ପ୍ରକାଶ କରିଛନ୍ତି – ମହାଭାରତ ମୋ ପାଖରେ ଅଭିଜ୍ଞତାର ଉତ୍ସ । ପ୍ରଶ୍ନର ଭଣ୍ଡାର । ଜୀବନ ଏବଂ ଜୀବନକୁ ବଞ୍ଚାଇବାର ବୈଚିତ୍ର୍ୟର ଉତ୍ସ, ଏଥିରେ ବର୍ଣ୍ଣିତ ବିଭିନ୍ନ ଚରିତ୍ର, ବିଭିନ୍ନ ଘଟଣା ପ୍ରତି ସେମାନଙ୍କର ପ୍ରତିକ୍ରିୟା ଏବଂ ସର୍ବୋପରି ସେମାନଙ୍କ ଜୀବନ ଏବଂ ଦୃଷ୍ଟିକୋଣରେ ଫୁଟି ଉଠୁଥିବା ମୂଲ୍ୟବୋଧ ମୋ' ଚେତନାକୁ ମୋ କଳ୍ପନାକୁ ଆଚ୍ଛାଦିତ କରି ରଖିଛି । ଆଜିର ମନ ନେଇ ସେମାନଙ୍କୁ ଯେତେ ବୁଝିବାକୁ ଚେଷ୍ଟା କରିଛି, ଜୀବନ ମୋ' ପାଖରେ ସେତେ ରହସ୍ୟମୟ ହୋଇ ଉଠିଛି । ତଥାପି ମହାଭାରତ ମୋ' ପାଖରେ ନିବିଡ଼ ଭାବରେ ବଞ୍ଚିବା ପୁଣି ମରିବାର ଅର୍ଥମୟ ଆଲେଖ୍ୟ ।୩୪।

ମହାଭାରତର ଏହି ବିପୁଳ ବିସ୍ମୟରେ ଅଭିଭୂତ ହୋଇ ସୌରୀନ୍ଦ୍ର ତଦନ୍ତର୍ଗତ ଚରିତ୍ରମାନଙ୍କର ଜୀବନନିର୍ଯ୍ୟାସକୁ ଗଭୀର ଭାବରେ ଉପଲବ୍ଧ କରିଛନ୍ତି । ସେମାନଙ୍କ ସହ ଆପଣାର ପ୍ରାଣସତ୍ତାକୁ ଏକୀଭୂତ କରି ଗଭୀରତମ ଜୀବନାବେଗଟିକୁ ରୂପାୟିତ

କରିବାରେ ପ୍ରୟାସ କରିଛନ୍ତି । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏପରି ଏକ ପ୍ରୟାସ କରିଛନ୍ତି । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏପରି ଏକ ପ୍ରୟାସ ସମୟରେ ମିଥ୍ ପ୍ରୟୋଗ ପ୍ରସଙ୍ଗର ଉତ୍‌ଥାପନ ଅସ୍ୱାଭାବିକ ନୁହେଁ । ୧୯୨୨ରେ James Joyceଙ୍କ Ulysses ଉପନ୍ୟାସରେ ଏହି ମିଥ୍ ପଦ୍ଧତି ପ୍ରୟୋଗର ସୂତ୍ରପାତ ଘଟେ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ T.S. Eliot, W.B. Yeats, Ezra Pound ଏବଂ W.H. Auden ଆଦି ବିଶିଷ୍ଟ କବି ଏହି ପରମ୍ପରାକୁ ସମୃଦ୍ଧ କରିଛନ୍ତି ।

ଓଡ଼ିଆ କବିତା କ୍ଷେତ୍ରରେ ସୀତାକାନ୍ତ ମହାପାତ୍ର ମିଥ୍ ପ୍ରୟୋଗ କରିବାରେ ସାର୍ଥକ ଦୃଷ୍ଟାନ୍ତ । ପ୍ରତ୍ୟେକଙ୍କ କ୍ଷେତ୍ରରେ ଏଡି ପ୍ରୟୋଗ ପଦ୍ଧତିରେ ସ୍ୱତନ୍ତ୍ର ଅଭିରୂଚିକୁ ସ୍ୱୀକାର କରିବାକୁ ହୁଏ । ସାମଗ୍ରିକ ଭାବେ, ସାଂପ୍ରତିକ ବାସ୍ତବତାର ଜଟିଳ ଜୀବନ-ଜିଜ୍ଞାସାର ସଦୁତ୍ତର ପାଇଁ ମିଥୀୟ ଐତିହ୍ୟକୁ ସ୍ମରଣ ପୂର୍ବକ ଚିରନ୍ତନ ଜୀବନ ଜିଜ୍ଞାସାକୁ ସାର୍ଥକ ଭାବରେ ସୂଚିତ କରିବା ଏହି ପଦ୍ଧତିର ମୂଳକଥା । ମଣିଷର ଆଦିମ ମନୋବୃତ୍ତି ଓ ଅବଚେତନ ଭାବକ୍ଷେତ୍ରଟି ଏଥିପାଇଁ ସହାୟକ ହୋଇଥାଏ । କିନ୍ତୁ ସୌରୀନ୍ଦ୍ରଙ୍କ କ୍ଷେତ୍ରରେ ଏହି ନିର୍ଦ୍ଦିଷ୍ଟ ପ୍ରୟୋଗ ପଦ୍ଧତିଟି ଗ୍ରହଣୀୟ ନୁହେଁ । ସେ ସାମ୍ପ୍ରତିକ ବାସ୍ତବତାର ଚିତ୍ର ଆଙ୍କିବାକୁ ଯାଇ ଚିରନ୍ତନ ମିଥିକ ଚରିତ୍ର ଘଟଣା ସମୂହର ଉଲ୍ଲେଖଧର୍ମୀ ବ୍ୟବହାର କରି ନାହାନ୍ତି; କିନ୍ତୁ କୌଣସି ତୁଳନାତ୍ମକ ପୃଷ୍ଠଭୂମିର ଆବଶ୍ୟକତା ଲୋଡ଼ି ନାହାନ୍ତି । ସେଦିନର ଚରିତ୍ର ସେମାନଙ୍କ କାର୍ଯ୍ୟକଳାପ ମନଃସ୍ଥିତି କିମ୍ବା ଘଟଣାକୁ ଆପଣା ଭିତରେ ନିବିଡ଼ ଭାବରେ ଉପଲବ୍‌ଧି କରି ତା'ରି ଜୀବନାନୁଭୂତିକୁ ଆବେଗମୟ ପ୍ରାଣସତ୍ତାର ରସାପ୍ଲୁତ ଅଭିବ୍ୟକ୍ତି ବାଢ଼ିଛନ୍ତି ମାତ୍ର । ନିଜର ସୀମିତ ପରିସରକୁ ସମ୍ପ୍ରସାରିତ କରିବାକୁ ଯାଇ ସେ ସେମାନଙ୍କର ବିପୁଳ ଜୀବନାନୁଭୂତିର ରହସ୍ୟମୟତାକୁ ଚାହିଁଛନ୍ତି । ଆଜିର ମନନେଇ ସେମାନଙ୍କୁ ନୂଆକରି ଆବିଷ୍କାର କରିବାର ପ୍ରୟାସ କରିଛନ୍ତି । ଏହି ଅର୍ଥରେ ଏହି କବିତାଗୁଡ଼ିକ ପୌରାଣିକ ବାମିଥିକ ମନେ ହେଲେ ମଧ୍ୟ ମିଥ୍ ପ୍ରୟୋଗ ପଦ୍ଧତିଠାରୁ ଦୂରତ୍ୱ ରକ୍ଷା କରିଛନ୍ତି ।୩୫।

ଏ ସମ୍ପର୍କରେ ସୌରୀନ୍ଦ୍ରଙ୍କ ସ୍ପଷ୍ଟୀକରଣ ସ୍ମରଣ କରାଯାଇପାରେ 'ସାମ୍ପ୍ରତିକ କବିତାରେ ମିଥ୍‌ର ବ୍ୟବହାର ଏକ ମୁଖ୍ୟ ଆଲୋଚ୍ୟ ବିଷୟ' । ସେ ସବୁ ବୌଦ୍ଧିକ ଆଲୋଚନା ଠାରୁ ମୋ କାବ୍ୟ ଚେତନା ବହୁଦୂରରେ । କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ଅବା କୌଣସି ଏକ ଛାଞ୍ଚକୁ ଆରୋପ କରି ଆବେଦନର ନୂତନତା ଆଣିବାପାଇଁ ମହାଭାରତକୁ ମୁଁ ମୋ କବିତାର ବିଷୟବସ୍ତୁ କରିନାହିଁ । ମୋ' ପାଖରେ ଏହା ଆଙ୍ଗିକର ଛାଞ୍ଚ ନୁହେଁ କିମ୍ବା ମୋ ସହ ମହାଭାରତର ଚରିତ୍ର ମାନଙ୍କର ପାର୍ଥକ୍ୟ ତୁଳନା କରି କୌଣସି ସତ୍ୟର ସନ୍ଧାନ କରିବାର ଉପାୟ ନୁହେଁ । ମୋ' କବିତା ମହାଭାରତର ବିଭିନ୍ନ ଚରିତ୍ର ଏବଂ ବିଭିନ୍ନ ଘଟଣା ପ୍ରତି ମୋର ରସଘନ ପ୍ରତିକ୍ରିୟା । ଆଜିର ମନନେଇ ଅନୁଭୂତିର ମହାସାଗରକୁ ବୁଝିବାକୁ ଚେଷ୍ଟା ।୩୬।

ସୌରୀନ୍ଦ୍ରଙ୍କ ଗଭୀରତମ ପ୍ରଦେଶରେ ମହାଭାରତ ଯେଉଁ ଉପଲବ୍ଧି ଆଣିଛି ସେହି ଉପଲବ୍ଧିଟିକୁ ନେଇ ତଦନ୍ତର୍ଗତ ଜୀବନାବେଗକୁ ସେ ଆବିଷ୍କାର କରିବାର ପୁନଃ ପ୍ରଚେଷ୍ଟା କରିଛନ୍ତି ମାତ୍ର । ତେଣୁ ଏ ପ୍ରସଙ୍ଗରେ ମିଥ୍ ପ୍ରୟୋଗ ପଦ୍ଧତିର ଅନୁଶୀଳନ ନୁହେଁ । କବିତା ଗୁଡ଼ିକର ସେହି ଜୀବନାବେଗ ବିଶ୍ଳେଷଣ ଆଲୋଚନାର ଅପେକ୍ଷା ରଖେ ।

ମହାଭାରତର ଉଭୟ ନାରୀ ଓ ପୁରୁଷ ଚରିତ୍ରର ଜୀବନାବେଗକୁ ଆପଣା ଉପଲବ୍ଧି ଅନୁସାରେ ସୌରୀନ୍ଦ୍ର ରୂପାୟନ କରିଛନ୍ତି । ସବୁ ଭିତରେ ଜୀବନ ବଞ୍ଚିବାର ପାର୍ଥିବ ଇନ୍ଦ୍ରିୟ ସମ୍ବେଦ୍ୟ ଆବେଦନ ହିଁ ମୁଖ୍ୟ ଭାବକେନ୍ଦ୍ର ହୋଇଛି । ଏହି ପାର୍ଥିବ ପ୍ରେମ ଭିତରେ ସେ ଅପାର୍ଥିବ ଆବେଦନଟିକୁ କବିତାରେ ଆବିଷ୍କାର କରିଛନ୍ତି । ଧର୍ମ, ଯୁଦ୍ଧ, ନିର୍ବାଣ, ସବୁରି ଊର୍ଦ୍ଧ୍ୱରେ ଜୀବନ । ସବୁ ଚରିତ୍ର ଭିତରେ ସେ ସେହି ଅବହେଳିତ ଜୀବନର ଅଶ୍ଳୀଳ ଆବେଦନକୁ କବିତାରେ ଉପସ୍ଥାପନ କରିଛନ୍ତି ।୩୭।

ଅଗ୍ନିସ୍ନାତା ଯାଜ୍ଞସେନୀ ମହାଭାରତର ମୁଖ୍ୟ ନାୟିକା । ସଂଘଟିତ ମୁଖ୍ୟ ଘଟଣା କେନ୍ଦ୍ରରେ ସର୍ବଦା ଯାଜ୍ଞସେନୀଙ୍କ ଅସହାୟତା କବି ସୌରୀନ୍ଦ୍ରଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଛି । ଏ ପ୍ରସଙ୍ଗରେ 'ଯାଜ୍ଞସେନୀ', 'ବସ୍ତ୍ରହରଣ', 'ସ୍ୱୟମ୍ବରା', 'ଗୋଟିଏ ପ୍ରଶ୍ନ ତୁମକୁ', 'ଦୌପଦୀର ଜହ୍ନ', 'ତୃତୀୟ ପ୍ରଥମ ରାତ୍ରି','ସୁଭଦ୍ରା ଆସୁଛି ପୁଣି', 'କାହିଁକି ଏ ଅଗ୍ନିସ୍ନାନ', 'ଅନ୍ତିମ ଅଳି ଦ୍ରୌପଦୀର' ଆଦି କବିତାକୁ ସ୍ମରଣ କରାଯାଇପାରେ । ସ୍ୱୟଂମ୍ବରରୁ ହିଁ ଯାଜ୍ଞସେନୀଙ୍କ ପ୍ରତି ଅନ୍ୟାୟର ଅୟମାରମ୍ଭ । ମାଛ ଆଖିକୁ ତୀର ଭେଦ କରି ଅର୍ଜୁନ ହିଁ ପ୍ରଥମେ ଦ୍ରୌପଦୀଙ୍କ ହୃଦୟରେ ସ୍ଥାନ ପାଆନ୍ତି । ଆପଣା ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟରେ ତାଙ୍କ ନାରୀ ହୃଦୟରେ ପ୍ରଥମ ବର୍ଷାର ପ୍ରଥମ ସ୍ୱପ୍ନର କୁହୁଦେବାରେ ଅର୍ଜୁନ ହିଁ ଥିଲେ ସମର୍ଥ । ଭାଗ୍ୟ ତାହା କରିବାକୁ ଦେଇ ନାହିଁ । ଏକ ଅଦ୍ଭୁତ ଆଦେଶରେ ଶିକାର ହୋଇ ଦ୍ରୌପଦୀଙ୍କୁ ପଞ୍ଚ ସ୍ୱାମୀ ବରଣ କରିବାକୁ ହୋଇଛି । 'ଗୋଟେ ମାଳା ପାଞ୍ଚଗୋଟି ଗଳା, ଗୋଟେ ଇନ୍ଦ୍ରଧନୁ ପାଞ୍ଚଗୋଟି ଆକାଶ । ହୋମଶିଖାର ଦେହରେ ଉଠିଛି ଧୂଆଁର କୁଣ୍ଡଳୀ । ଶଯ୍ୟାପୁଣି ପାଉଁଶର କେଉଁ ନାରୀକି କେବେ ପଞ୍ଚସ୍ୱାମୀ ନେଇ ଖୁସି ହୋଇପାରେ ? ନାରୀତ୍ୱର ଏହି ଅସହାୟତାକୁ କବି ସୌରୀନ୍ଦ୍ର ବାରିକ୍ 'ଉପଭାରତ' କବିତା ସଂକଳନର 'ସ୍ୱୟଂବରା' କବିତାରେ ପ୍ରକାଶ କରିଛନ୍ତି:-

ପାଉଁଶର ମାଳା ମୁହିଁ ଲମ୍ୱିଯାଏ ପାଞ୍ଚଟି ବୁକୁରେ
ପାଉଁଶର ଇନ୍ଦ୍ରଧନୁ ହସିଉଠେ ପାଞ୍ଚ ଆକାଶରେ ।୩୮।

ସେଦିନରୁ ରୂପାଥାଳି ଜହ୍ନ ଉଇଁଲେ ମନରେ ତାଙ୍କର ଭରିଯାଏ 'ଉଆଁସ ଅନ୍ଧାର' । ପୂରା ଜହ୍ନ ତଳେ ନିଜ ଲୋକଟିର ଚିହ୍ନା ଛାତିରେ ଆଖିବୁଜି ଶୋଇ ରହିବାକୁ ଇଚ୍ଛା ପୁରା ସାରାରାତି । ଇଚ୍ଛା ହୁଏ ଜହ୍ନପରି ପ୍ରିୟ ଛାତିଟି ସବୁଦିନ ରହନ୍ତା ଅପରିବର୍ତ୍ତିତ, ତାରି ଉପରେ ମଥାରଖି ସ୍ୱପ୍ନ ଦେଖିବା ବେଳେ ଜହ୍ନ ପରିବୁଡ଼ିଯାଆନ୍ତା ନାରୀତ୍ୱ । ହେଲେ ଭାଗ୍ୟକୁ ସ୍ୱୀକାର

କରିବାକୁ ହେବ । ପୁରା ଜହ୍ନର ସ୍ୱପ୍ନ ତାଙ୍କ ପାଇଁ ଅର୍ଥହୀନ । 'ମୋ ଜହ୍ନତ ପାଞ୍ଚ ଫାଳ' । ଗୋଟିଏ ଛାତିରେ ମଥା ରଖି ଚୁପ୍‌ଚାପ ତାଙ୍କୁ ସ୍ୱପ୍ନ ଦେଖି ହୁଏ ନା ମନଇଚ୍ଛା ସବୁଦିନ ଶୋଇ ହୁଏ । କବି ସୌରୀନ୍ଦ୍ର ବାରିକ୍ 'ଅନୁଭାରତ' କବିତା ସଂକଳନରେ 'ଦ୍ରୌପଦୀର ଜହ୍ନ' କବିତାରେ ପ୍ରକାଶ କରିଛନ୍ତି:-

ମୋ' ଜହ୍ନର ଭଙ୍ଗା ଦର୍ପଣରେ
ମୁହଁ ଦିଶେ ପାଞ୍ଚ ପ୍ରକାରର୍
ଜୋଛନାର ଭଙ୍ଗା ଦୁକୁ ଦୁକୁ
ମୋତେ ଦିଏ ନୂଆ ନିଃସଙ୍ଗତା
ପାଞ୍ଚଟି ଛାତିରେ ।୩୯।

'ଜହ୍ନର ଭଙ୍ଗା ଦର୍ପଣ' ଜୋଛନାର ଭଙ୍ଗା ଦୁକୁ ଦୁକୁ ନାରୀର ସ୍ୱପ୍ନକୁ କ୍ଷତାକ୍ତ କରି ସୂଚାଇବାକୁ ଯଥେଷ୍ଟ । ପାଞ୍ଚ ପ୍ରକାର ମୁହଁ ପାଞ୍ଚଟି ଛାତି, ପାଞ୍ଚ ସ୍ୱାମୀଙ୍କୁ ସ୍ମରଣ କରାଇଦିଏ । ସ୍ୱପ୍ନଭଙ୍ଗ ପରେ ନିଃସଙ୍ଗତାର ରାଜତ୍ୱ ସ୍ୱାଭାବିକ୍ । ନାରୀ ମାନସିକତାର ଚିରନ୍ତନ ଚିତ୍ର କବି କବିତାରେ ଉପସ୍ଥାପନ କରିଛନ୍ତି । ପାଞ୍ଚଟି ଛାତି ହିଁ ଦ୍ରୌପଦୀର ନିଃସଂଗତାର କାରଣ, ଦୁଃଖର କାରଣ । ସେତିକିରେ ତାଙ୍କ ପ୍ରତି ଅତ୍ୟାଚାରର ଅନ୍ତନାହିଁ । ନିର୍ଯ୍ୟାତନାର ନିର୍ଲଜ ଔଦ୍ଧତ୍ୟ ତାଙ୍କୁ ବିବସ୍ତ୍ରା କରାଇବାକୁ ଉଦ୍ୟତ ରାଜ ସଭାରେ । ନାରୀତ୍ୱର ଚରମ ଅବମାନନା ଏ । ନିର୍ଲଜ ନଂପୁସକତାର ଆସୁରିକ ଆସ୍ଫାଳନ ଏ ! 'ବସ୍ତ୍ରହରଣ' କବିତାକୁ ସ୍ମରଣ କରାଯାଇପାରେ । ଆଗରେ ଲୋମଶ ଜନ୍ତୁଟିଏ ର ହିଂସ୍ର ହେଣ୍ଟାଳ । ଚତୁପାର୍ଶ୍ୱରେ ସିଂହାସନରୁଢ଼ ନୀରବ ରାଜନ୍ୟବର୍ଗ । ନୀରବ କି ପଞ୍ଚସ୍ୱାମୀ । ଦେହରେ ଧର୍ମର ରୁଗ୍‌ଣ ବିଭୂତି, ହାତରେ ନ୍ୟାୟର ନଂପୁଂସକ ଅସ୍ତ୍ର ପଥର ଦେହରେ ପୁଣି ନୀରବତାର ବିକଳ ସିନ୍ଦୁର । ଚିତ୍ରକଳ୍ପରେ କବି ସୌରୀନ୍ଦ୍ର ଦ୍ରୌପଦୀଙ୍କ ମାନସିକତା ନେଇ ବ୍ୟଙ୍ଗ କରିଛନ୍ତି ନୀରବ ରାଜ ପରିଷଦ ବର୍ଗଙ୍କୁ । ଚିତ୍ରକଳ୍ପର ଶକ୍ତିଶାଳୀ ସଂଯୋଜନା କବିତାଟିରେ ଭାବବସ୍ତୁର ତୀବ୍ରତାକୁ ଆମୂଳାନ୍ତ କରି ରଖିଛି ଜୀବନ୍ତ । ପରିବେଶ ଭୟଙ୍କର ଓ କରୁଣ । ପଞ୍ଚସ୍ୱାମୀ ଓ ରାଜପରିଷଦ ବର୍ଗଙ୍କ ଉପସ୍ଥିତିରେ ଦ୍ରୌପଦୀଙ୍କୁ ବିବସ୍ତ୍ରା କରାଯାଇଛି । ଏହାଠାରୁ ଭଳି ନାରୀ ଜୀବନର ଅସହାୟତା ଆଉ କ'ଣ ଥାଇପାରେ ।୪୦।

କ୍ରନ୍ଦନ ଅର୍ଥହୀନ । ସ୍ୱାମୀତ୍ୱର କର୍ତ୍ତବ୍ୟରୁ ପଞ୍ଚସ୍ୱାମୀ ନ୍ୟାୟ, ଧର୍ମର ରକ୍ଷା ପାଇଁ ସ୍ୱାର୍ଥପର ଭାବେ ବିରତ । ଅସହାୟ ଭାବେ ଈଶ୍ୱରଙ୍କୁ ସ୍ମରଣ କରିବା ଦ୍ରୌପଦୀଙ୍କ ଏକମାତ୍ର ପନ୍ଥା । ହେଲେ କେତେ ଲଜ୍ଜାକର । ପଞ୍ଚସ୍ୱାମୀ ଥାଉଁ ଥାଉଁ ଈଶ୍ୱର ପାଖରେ ଆପଣା ଲଜ୍ଜା ଢ଼ାଙ୍କିବା ପାଇଁ ସମର୍ପିତ ହେବା ! ଦୁଃଶାର ଅତ୍ୟାଚାରରେ ସତୀତ୍ୱ ରକ୍ଷାପାଇପାରେ, ହେଲେ ପଞ୍ଚସ୍ୱାମୀଙ୍କ ସ୍ଥବିରତାରେ ନାରୀତ୍ୱର ମର୍ଯ୍ୟାଦା ଆସିଲା କେଉଁଠି ? ଈଶ୍ୱର ପାଖରେ ନିର୍ଲଜ ସମର୍ପଣରେ ସତୀତ୍ୱର ସୌଭାଗ୍ୟ ଆସିଲା କେଉଁଠି ? ଏ କ'ଣ ପୁନର୍ବାଚ ସତୀତ୍ୱର ସମର୍ପଣ

ନୁହେଁ ? ନାରୀତ୍ୱର ଅବମାନନା ନୁହେଁ ? ଦ୍ରୌପଦୀଙ୍କ ଭିତରେ ନାରୀତ୍ୱର ଏହି ଅସହାୟ କରୁଣ ଆବେଗଟିକୁ ସନ୍ଧାନ କରିଛନ୍ତି ଦ୍ରୌପଦୀ । କବି ସୌରୀନ୍ଦ୍ର ବାରିକ 'ବସ୍ତ୍ରହରଣ' କବିତାରେ ପ୍ରକାଶ କରିଛନ୍ତି:-

କେତେ କରୁଣ କେତେ ଲଜ୍ଜାକର ପ୍ରଭୁ !

ପଞ୍ଚସ୍ୱାମୀ ସମ୍ମୁଖରେ ଅସହାୟ ଭାବେ ତୁମ ଶରଣ ପଶିବା ।୪୧।

ନାରୀର ସର୍ବଶ୍ରେଷ୍ଠ ସମ୍ପତ୍ତି ତା'ର 'ସମର୍ପଣ' । ସେ ଏହି ସମର୍ପଣଟିକୁ ସ୍ୱାମୀଛଡା କାହାକୁ ଦେବାକୁ ପ୍ରସ୍ତୁତ ନୁହେଁ । ଈଶ୍ୱରଙ୍କୁ ବି ନୁହେଁ । ଦ୍ରୌପଦୀ କିନ୍ତୁ ନିରୁପାୟ ପଞ୍ଚସ୍ୱାମୀଙ୍କ ନୀରବତା ତାଙ୍କୁ ବାଧ୍ୟ କରିଛି; ତାଙ୍କରି ସମ୍ମୁଖରେ ଦୁଇହାତ ଉତ୍ତୋଳନ କରି ଈଶ୍ୱରଙ୍କୁ ଆପଣା ସମର୍ପଣ ବାଢ଼ିବାକୁ । ସେଥିପାଇଁତ ଈଶ୍ୱରଙ୍କୁ କ୍ଷମା କରିପାରନ୍ତି ନାହିଁ । ଯଦି ଦୁର୍ବୃତ୍ତକୁ ନାଶ କରିବା ଈଶ୍ୱରଙ୍କର ଧର୍ମ ତେବେ ଦୁଃଶାର ଶିରଚ୍ଛେଦ ନକରି ଶାଢ଼ୀର ସମ୍ଭାର ସୃଷ୍ଟି ପ୍ରହସନର କି ନିର୍ଲଜ ଆବଶ୍ୟକତା ଥିଲା ? ସେଥିରେ କ'ଣ ଦ୍ରୌପଦୀର ସମ୍ମାନ ଅକ୍ଷତ ରହିଲା ? ତାଙ୍କ ନାରୀ ସୁଲଭ ସଲଜ୍ଜତା କ'ଣ ସମ୍ମାନିତ ହେଲା । କବି ସୌରୀନ୍ଦ୍ର ବାରିକ 'ଅନୁଭାରତ' କବିତା ସଂକଳନରେ ସ୍ଥାନିତ 'ଗୋଟିଏ ପ୍ରଶ୍ନ ତୁମକୁ' କବିତାରେ ପ୍ରକାଶ କରିଛନ୍ତି:-

ହେ ସଖା କିଆଁ ପେଶିଦେଲ ଶାଢ଼ୀର ସମ୍ଭାର

ଦୁଃଶାକୁ ଉତ୍ସାହିତ କରିବାକୁ

ଏ ଜଘନ୍ୟ ଦୃଶ୍ୟରେ ଅଧିକ ଆକର୍ଷଣ ଭରିବାକୁ

ନା ମୋ' ଅସହାତାକୁ ଅଧିକ ଅସହାୟ କରିବାକୁ ।୪୨।

ସମଗ୍ର ବ୍ୟାକୁଳତା ଓ ଅଭିମାନ ନେଇ ଦ୍ରୌପଦୀ ପ୍ରଶ୍ନ କରନ୍ତି ଯଦି ଦୁଃଶାସନର ଶିର ଛେଦି ନ ପାରିଲେ ହେ ଈଶ୍ୱର ତେବେ ମୋ' ଶିର ଛେଦିଲେନି । କବି କବିତାରେ ପ୍ରକାଶ କରିଛନ୍ତି:-

ମୋ ଶିର ଛେଦିଲେନି

ଲଜ୍ଜାରୁ ଖାଲି ନୁହେଁ, ଜୀବନରୁ ଚିରମୁକ୍ତି ମିଳିଥାନ୍ତା ମୋତେ

ଛେଦିଲନି ମୋ ପଞ୍ଚ ସ୍ୱାମୀଙ୍କର ଶିର

ତୁମ ସତ୍ୟର ଧର୍ମରୁ ଅବା ସେମାନେ ମୁକ୍ତି ପାଇଥାନ୍ତେ

ଆଃ ପ୍ରଭୁ ! ଏ ନର୍କକୁଯଦି ରୋଧି ନପାରିବ

ତାକୁ ସୃଷ୍ଟି କରିବା ପୂର୍ବରୁ

ତୁମେ କିଆଁ ନଛେଦିଲ ତମ ନିଜ ଶିର ।୪୩।

ଦ୍ରୌପଦୀଙ୍କ ମାନସିକତାର ଅନ୍ୟ ଏକ ଦିଗକୁ କବି ସୌରୀନ୍ଦ୍ର ତାଙ୍କ କବିତାରେ ରୂପାୟନ କରିଛନ୍ତି । 'ତୃତୀୟ ପ୍ରଥମ ରାତ୍ରି', 'ସୁଭଦ୍ରା ଆସୁଛି ଶୁଣି କାହିଁକି', ' ଏ ଅଗ୍ନିସ୍ନାନ' ଆଦି କବିତାରେ ।

ପୁରୁଷ ଚରିତ୍ରମାନଙ୍କ ମଧ୍ୟରେ ଅର୍ଜୁନ, ଯୁଧିଷ୍ଠିର, ଭୀମ, ଦୁର୍ଯ୍ୟୋଧନ, କର୍ଣ୍ଣ, ଦୁର୍ଦ୍ଧକ୍ଷ, ଅଶ୍ୱତ୍ଥାମା, ଧୃତରାଷ୍ଟ୍ର, ଶାନ୍ତନୁ, ଭୀଷ୍ମ, ଦ୍ରୋଣ, ଏକଲବ୍ୟ, ବେଲାଳସେନ ଓ ଶ୍ରୀକୃଷ୍ଣ ଆଦି କବି ସୌରୀନ୍ଦ୍ରଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଛନ୍ତି । ପ୍ରତ୍ୟେକଟି ଚରିତ୍ର ଭିତରେ ଥିବା ଶୌର୍ଯ୍ୟ ଓ ସ୍ୱାଭିମାନଙ୍କୁ ସେ ଆପଣାର ଉପଲବ୍ଧି ନେଇ ଆବିଷ୍କାର କରିଛନ୍ତି । କିନ୍ତୁ ପାର୍ଥିବ ଜୀବନଟି ପ୍ରତି ଅନେକଙ୍କର ଅବହେଳା ତାଙ୍କୁ ବ୍ୟଥିତ କରିଛି । ସେହି ଅବସରରେ ସେ ସେମାନଙ୍କର ଅସହାୟ ଜୀବନାବେଗେଟିକୁ ରୂପାୟିତ କରିଛନ୍ତି । ଧର୍ମ ଯୁଦ୍ଧ କର୍ତ୍ତବ୍ୟର ଡାକରା ଭିତରେ ସେମାନଙ୍କର ଏକାକୀତ୍ୱ ଆତ୍ମାର କରୁଣ ଆବେଗଟିକୁ ଅନୁସନ୍ଧାନ କରିଛନ୍ତି ।

'ଗୀତା ପୂର୍ବରୁ', ଏକାକୀ କ୍ଷତ୍ରୀୟ', ଦ୍ୱିତୀୟ ମୃତ୍ୟୁ', 'ସ୍ୱପ୍ନରେ ଭାବିତ ନଥିଲି', 'ନୂଆ କୁରୁକ୍ଷେତ୍ର ପୁଣି' ଆଦି କବିତା ଅର୍ଜୁନଙ୍କୁ ନେଇ ରଚିତ । ସବୁଠି ତାଙ୍କର ପ୍ରିୟ ସଖା କୃଷ୍ଣଙ୍କ ସହ ତାଙ୍କ ସମ୍ପର୍କର ପୃଷ୍ଠଭୂମିରେ ଆପଣା ବିକଳ ଏକାକୀତ୍ୱଟିକୁ ଆବିଷ୍କାର କରିବାର କଥା । ବହୁପ୍ରତୀକ୍ଷିତ ଯୁଦ୍ଧକ୍ଷେତ୍ରରେ ଅର୍ଜୁନ ଗାଣ୍ଡୀବ ହସ୍ତରେ ଦଣ୍ଡାୟମାନ । ସ୍ୱୟଂ ଶ୍ରୀକୃଷ୍ଣ ରଥର ସାରଥି । ଯୁଦ୍ଧ କ୍ଷେତ୍ରରେ ଯୁଯୁସୁମାନଙ୍କୁ ଦେଖି ଅର୍ଜୁନ ଯୁଦ୍ଧ କରିବାକୁ ଅନିଚ୍ଛୁକ । ସବୁତ ପ୍ରିୟ ପରିଜନ । ଭାଇ ବଂଧୁ ଗୁରୁ ସମସ୍ତେ ଉପସ୍ଥିତ । କାହାକୁ ହତ୍ୟା କରିବେ ସେ ? ସବ୍ୟସାଚୀ ତ ବ୍ୟାଧ ନୁହେଁ । ଶତ୍ରୁହନ୍ତା ବୀର କ୍ଷତ୍ରିୟ ସେ । ରାଜ୍ୟ ପାଇଁ ଭାଇ ରକ୍ତରେ ହୋରି ଖେଳି ପାରିବେ ନାହିଁ । ସେମାନେ ମାରନ୍ତୁ ପଛେ, ନିଜେ ମାରି ପାରିବେ ନାହିଁ । ସେ କ୍ଷତ୍ରିୟ ରକ୍ତ ମାଂସର ମଣିଷ ।

କବି ସୌରୀନ୍ଦ୍ର ବାରିକଂ 'ଅନୁଭାରତ' ଓ 'ଉପଭାରତ' କବିତା ସଂକଳନରେ ସ୍ଥାନିତ କବିତା ଗୁଡ଼ିକୁ ଏପରି ଭାବରେ ମିଥ୍ ମାଧ୍ୟମରେ ବ୍ୟକ୍ତ କରିଛନ୍ତି ଯେ ପ୍ରତ୍ୟେକ ଚରିତ୍ର ନିଜର ସ୍ୱାଧିକାରକୁ କବିତାରେ ସାବ୍ୟସ୍ତ କରିଛି । ବାସ୍ତବିକ୍ କବିଙ୍କ ମିଥ୍ ପ୍ରୟୋଗ ବେଶ୍ ପ୍ରଶଂସନୀୟ ।

**ପ୍ରତୀକ ଓ ଚିତ୍ରକଳ୍ପ :**

ଶୈଳୀ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ସୌରୀନ୍ଦ୍ରଙ୍କ କବିତା ରଚନାରେ ପ୍ରତୀକ ଓ ଚିତ୍ରକଳ୍ପବାଦୀ ପରମ୍ପରାକୁ ଗ୍ରହଣ କରିଥାନ୍ତି । ଅନୁଭୂତ ସତ୍ୟର ରହସ୍ୟମୟତାର ଯଥା ସମ୍ଭବ ରୂପାୟଣ ଓ ରୂପାୟିତ ଭାବବସ୍ତୁର ସାର୍ଥକ ସଂକ୍ରମଣ ପାଇଁ ପ୍ରତୀକ ଓ ଚିତ୍ରକଳ୍ପର ଭୂମିକା କବିତା କ୍ଷେତ୍ରରେ ଆଧୁନିକ କବିତା କ୍ଷେତ୍ରରେ ଅପ୍ରତିଦ୍ୱନ୍ଦୀ । ଭାବବସ୍ତୁ ରୂପାୟଣର ଶ୍ରେଷ୍ଠ ଶିଳ୍ପକଳା ଭାବେ ଚିତ୍ରକଳ୍ପର ମର୍ଯ୍ୟାଦା ସର୍ବମାନ୍ୟ । ବକ୍ତବ୍ୟ କି ବର୍ଣ୍ଣନା ଧର୍ମୀ ବିଶ୍ଳେଷଣ ନୁହେଁ ପ୍ରସ୍ଫୁଟନ ବା ପ୍ରଦର୍ଶନ ହି ଉଚ୍ଚକୋଟୀର କବିକର୍ମ ।

....the method of poetry is not analysis : it is exhibition. ।୪୪।

କବିତାରେ ବ୍ୟବହୃତ ପ୍ରତୀକ ଓ ଚିତ୍ରକଳ୍ପରଗଭୀର ରହସ୍ୟମୟ ଅର୍ଥଦ୍ୟୋତନ ଓ ଭାବବସ୍ତୁ ସଂକ୍ରମଣର କ୍ଷମତା ଉପରେ କବିତାର ସାର୍ଥକତା ଅନେକାଂଶରେ ନିର୍ଭରଶୀଳ ।

ସାର୍ଥକ ପ୍ରତୀକ କି ଚିତ୍ରକଳ୍ପ ଭିତରେ ଭାବବସ୍ତୁର ଚେତନାଧର୍ମୀ ସଂପ୍ରସାରଣ ସମ୍ଭବ ହୋଇଥାଏ । ଅନୁଭୂତ ସତ୍ୟଟି ଦିଗନ୍ତ ବ୍ୟାପୀ ପ୍ରସାରଣ ଭିତରେ ଆପଣା ରହସ୍ୟର ବିଭିନ୍ନ ସୂତ୍ର ସବୁକୁ ସୂଚୀତ କରିଦିଏ । ସୌରୀନ୍ଦ୍ର କେତେକାଂଶରେ ତାଙ୍କର ସ୍ୱଭାବ ସୁଲଭ ବ୍ୟାକୁଳତାଟିକୁ ପ୍ରକାଶ କରିବାକୁଯାଇ ପ୍ରତ୍ୟକ୍ଷ ଅଭିବ୍ୟକ୍ତି ବାଢ଼ିଥାନ୍ତି ସତ; ମାତ୍ର ଆପଣାର ଗଭୀର ଅନୁଭୂତି ଓ ଆବେଗର ରହସ୍ୟମୟତାକୁ ସୂଚୀତ କରିବା ପାଇଁ ପ୍ରତୀକ ଓ ଚିତ୍ରକଳ୍ପର ସାହାଯ୍ୟ ସ୍ୱୀକାର କରନ୍ତି ।୪୫।

ସେ ଜାଣନ୍ତି ଭଲ କବିତାର ଧର୍ମ ବର୍ଣ୍ଣନା ନୁହେଁ ସୂଚନା । ଫୁଲଟିଏ ପରି ଫୁଟି ଉଠିବାରେ ତା'ର ଚରମ ସାର୍ଥକତା । ପ୍ରତୀକ ଓ ଚିତ୍ରକଳ୍ପ ଭିତରେ ନିର୍ଦ୍ଦିଷ୍ଟ ବ୍ୟବଧାନ ଆଣି ଆଲୋଚନା କରିବା ତାଙ୍କ କବିତା କ୍ଷେତ୍ରରେ ଉଚିତ ହେବ ନାହିଁ । ଅନେକାଂଶରେ ଚିତ୍ରକଳ୍ପ ଭିତରେ ହିଁ ପ୍ରତୀକ ଗୁଡ଼ିକ ସଂଯୁକ୍ତ ରହି ଭାବ ପ୍ରକାଶ କରିବାର ଦେଖିବାକୁ ମିଳେ ।

'ସାମାନ୍ୟ କଥନ' କବିତା ସଂକଳନରେ କବି ହଳଦୀ ଗୋଲାପ, ମାର୍ଜାର, ବାଦୁଡ଼ି, କୁକୁର, ପ୍ରଜାପତି, କୁକ୍‌କୁଟ, ହଂସ, ଖଦ୍ୟୋତ, ଘଡ଼ି, ଚଷମା, ଛତା, ଘାସ, ଚଢ଼େଇ ଆଦିଙ୍କୁ ନେଇ ଯେଉଁ କବିତା ରଚନା କରିଛନ୍ତି ସେଥିରେ ଏସବୁ ପ୍ରତି ଆପଣାର ପ୍ରତିକ୍ରିୟା ମୁଖ୍ୟ ହୋଇଛି ସତ; ତଥାପି ଏଗୁଡ଼ିକ ଭିତରେ ପ୍ରତୀକର ସମ୍ଭାବନାକୁଏଡାଇ ଦିଆଯାଇ ନପାରେ । ମୂଳତଃ ସୌରୀନ୍ଦ୍ର ବାରିକ୍ ଏସବୁକୁ ପ୍ରତୀକ ଭାବରେ ବ୍ୟବହାର କରି ନାହାନ୍ତି । ଏ ସବୁ ସହିତ ସମ୍ପର୍କର ପୃଷ୍ଠଭୂମିରେ ଆପଣାର ଗଭୀରତମ ଅନୁଭୂତିଟିକୁ କବିତାରେ ରୂପ ପ୍ରଦାନ କରିଛନ୍ତି । କେତେକ କବତାରେ ଏଗୁଡ଼ିକ ପ୍ରତୀକରେ ପରିଣତ ହୋଇ ପାରିବାର ସାର୍ଥକତା ଅର୍ଜନ କରିଛନ୍ତି । ବ୍ୟକ୍ତିଗତ  ଅନୁଭବର ସତ୍ୟ କବିତା କ୍ଷେତ୍ରରେ ଗୁରୁତ୍ୱ ପୂର୍ଣ୍ଣ; କିନ୍ତୁ କବିତାରେ ତାହା ସାର୍ବଜନୀନତାକୁ ସଂପ୍ରସାରିତ ହୋଇ ସାରିଥାଏ । କେତେକ କ୍ଷେତ୍ରରେ ଏହି ସାର୍ବଜନୀନତାର ଅଭାବ ପରିଲକ୍ଷିତ ହେଉଥିଲେ ମଧ୍ୟ ପ୍ରତୀକ ଭାବରେ କେତେକର ଉଲ୍ଲେଖ ଅପ୍ରାସଙ୍ଗିକ ହେବ ନାହିଁ ।୪୬।

ମାର୍ଜାର-ଜୀବନର କୋମଳତା ଓ ମୃତ୍ୟୁର ଭୟଙ୍କରତା । ହଂସ-ପରିପୂର୍ଣ୍ଣ ପ୍ରଶାନ୍ତି । ଖଦ୍ୟୋତ-ସଂଗ୍ରାମ ଘଡ଼ି-କାଳ, ଛତା-ଆଶ୍ରୟ, ଘାସ-ଜୀବନ, ଚଢ଼େଇ ସ୍ୱପ୍ନ ଓ ମୁକ୍ତ ଜୀବନ ଏ ସବୁ ଗୁଡ଼ିକୁ ବାଦ୍ ଦେଇ କବି, ପାହାଡ଼, ନଈ, ସମୁଦ୍ର, ଆକାଶ, ଜହ୍ନ, ସୂର୍ଯ୍ୟ ଆଦି ସାର୍ବଜନୀନ ପ୍ରତୀକର ପ୍ରୟୋଗ କରିଛନ୍ତି । ତେବେ ଏ ସବୁ ସତ୍ତ୍ୱେ ଅନେକାଂଶରେ ଚିତ୍ରକଳ୍ପ ସହ ସଂଯୁକ୍ତ । ଉଭୟ କ୍ଷେତରେ ପାହାଡ଼ ସମୁଦ୍ର, ଆକାଶ ଚଢ଼େଇ, ଜହ୍ନ, ପ୍ରଜାପତି ଆଦିର ଭୂମିକା ଗୁରୁତ୍ୱପୂର୍ଣ୍ଣ ବହୁଳ ଭାବରେ ବ୍ୟବହୃତ ମଧ୍ୟ ।

'ସାମାନ୍ୟ କଥନ' କବିତା ସଂକଳନ ରଚନାସମୟରେ ସେ ଚିତ୍ରକଳ୍ପରେ ଆଧୁନିକ ଜୀବନର ଅସହାୟତା ଓ ଅବକ୍ଷୟକୁ ସୂଚାଇବାକୁ ଚେଷ୍ଟା କରିଥିଲେ ମଧ୍ୟ ସ୍ୱପ୍ନ ସମୁଦ୍ୟତ ଅଛି । ସବୁ ଦୁଃସ୍ଥିତି ଭିତରେ ଭଲ ପାଇବାର ସ୍ନିଗ୍ଧ ସ୍ପର୍ଶରେ ଜୀବନକୁ ସ୍ୱପ୍ନାୟିତ କରିଦେବା

କବି ସୌରୀନ୍ଦ୍ର ବାରିକଙ୍କ କବିତାର ବିଶେଷତ୍ୱ । ସେ ସ୍ୱପ୍ନ ଦେଖିବାରୁ ନିବୃତ ହୋଇ ରହିପାରନ୍ତି ନାହିଁ । ଏ ସମ୍ପର୍କରେ ପାଠକ ବେଶ ସଚେତନ । କବିଙ୍କ ଦୁର୍ଗତ ମୁହୂର୍ତ୍ତର ଉପଲବ୍ଧିରୁ କେତୋଟି ଚିତ୍ରକଳ୍ପର ଉଦାହରଣ କବିଙ୍କ ଚିତ୍ରକଳ୍ପୀୟ ଧାରାର ଅନନ୍ୟ ଦୃଷ୍ଟାନ୍ତ । ଜହ୍ନରାତି କେଉଁଠି ଧବଳ କୁଷ୍ଠ ବିକୃତ (ଜହ୍ନରାତିର ପୃଥିବୀ), କେଉଁଠି ରୁଗ୍‌ଣ ବୟସ୍କା ବାରାଙ୍ଗନା ପରି ଏ ରାତି ନିଜକୁ ସଜାଇ ଥିଲା (ବିନିଦ୍ର ମୁଁ), କେଉଁଠି ଦିଶୁଥିଲା ଧୂଳି-ଧୂସରିତ / ସିମେଣ୍ଟ କାରଖାନାର କୁଲି ପରି ଅବା ବିବର୍ଣ୍ଣ ଦିଶେ ଯେମିତି ପେଡ଼ି କିମ୍ବା ଖଟର କୌଣସି ଅଂଶ ଓଡ଼ିଆ ଘରଣୀର ଚୂନ ହାତର ସ୍ପର୍ଶ ପାଇ (ଗୋଟିଏ ଜହ୍ନରାତି) । ତେବେ ସୌରୀନ୍ଦ୍ରଙ୍କ ପରବର୍ତ୍ତୀ କବି ଜୀବନ ଏସବୁକୁ ପ୍ରତ୍ୟାଖ୍ୟାନ କରିଛି । ନିବିଡ଼ ଭାବରେ ଜୀବନ ବଞ୍ଚିବାର ସତ୍ୟଶୀଳ ଉପଲବ୍ଧିଟିକୁ ନିଜସ୍ୱ ଭାବରେ ପ୍ରକାଶ କରିଛନ୍ତି । ସୌରୀନ୍ଦ୍ରଙ୍କ ଚିତ୍ରକଳ୍ପ ଗ୍ରହଣର ଉପାଦାନ ପରିସର ବିସ୍ତୃତ ନୁହେଁ ତେବେ ସେଗୁଡ଼ିକୁ ନିମ୍ନ ଭାବେ ଅନୁଧ୍ୟାନ କରାଯାଇପାରେ ।

ପ୍ରକୃତି ସଂକ୍ରାନ୍ତ ଚିତ୍ରକଳ୍ପ :- ସମୁଦ୍ର, ଆକାଶ, ପାହାଡ଼, ଜହ୍ନ, ତାରା, ସୂର୍ଯ୍ୟ, ଅନ୍ଧାର, ଖରା, କୁହୁଡ଼ି, ନଈ, ବର୍ଷା, ମରୁଭୂମି, ମେଘ, ପବନ, ଇନ୍ଦ୍ରଧନୁ, ଅରଣ୍ୟ, ଝାଉଁବନ, ଖଣ୍ଡିଆ ଭୂତ, ଧାନକିଆରୀ ଇତ୍ୟାଦି । ସମୟ ସଂକ୍ରାନ୍ତ ଚିତ୍ରକଳ୍ପ ଗୁଡ଼ିକ ହେଉଛି - ସକାଳ, ସନ୍ଧ୍ୟା, ଝାଞ୍ଜି ଖରାବେଳ ବିଭିନ୍ନ ଋତୁ - ମୁଖ୍ୟତଃ ଶୀତ, ଗ୍ରୀଷ୍ମ, ବର୍ଷା । ଆସବାବ ପତ୍ର ସଂକ୍ରାନ୍ତ ଚିତ୍ରକଳ୍ପ - ପୁରୁଣା ଚିଠି, ବହି, ଦୀପ, ପାନବଟା, ଲଣ୍ଠନ, ହାତବାଡ଼ି, କାଗଜ, ଡ୍ରଇଁ ରୁମର ଫୁଲ ସ୍ତବକ, ପୂଜା ଘରର ଆମ୍ବଡାଳ, ଟୁଥ୍‌ପେଷ୍ଟ ଟ୍ୟୁବ୍, ପ୍ଲାଷ୍ଟିକ୍ ଜରି ଖୋଳ ଇତ୍ୟାଦି । ପଶୁପକ୍ଷୀ ସଂକ୍ରାନ୍ତ ଚିତ୍ରକଳ୍ପ - ବଳଦ, ଗାଈ, ବାଛୁରୀ, କୁକୁର, ଶଶା, ପ୍ରଜାପତି, ଝିଡ଼ିପୋକ, ଚିଲ, ହରିଣ ଛୁଆ, ବଗ, ଚଢ଼େଇ, କୋଇଲି, ବୁଢ଼ିଆଣି, ମହୁମାଛି, ହଂସ, ଟେଁ ଟେଇଆ, ପିମ୍ପୁଡ଼ି, ମାଛି ଇତ୍ୟାଦି । ଗଛ ଓ ଫୁଲ ସଂକ୍ରାନ୍ତ ଚିତ୍ରକଳ୍ପ - ଶିମୁଳି ଗଛ, ଦେବଦାରୁ ଗଛ, କଇଁଫୁଲ, ପଦ୍ମ ଫୁଲ, ଗୋଲାପ ଫୁଲ, ବଉଳ ଫୁଲ, ଶିମିଳି ତୁଳା, ପାଚିଲା ପତ୍ର ଇତ୍ୟାଦି । ରଂଗ ସଂକ୍ରାନ୍ତ ଚିତ୍ରକଳ୍ପ - ମୁଖ୍ୟତଃ ନୀଳ ଓ ସବୁଜ ରଂଗ । ବ୍ୟକ୍ତି ବିଶେଷ ଚିତ୍ରକଳ୍ପ - ଯୋଗୀ, ସନ୍ନ୍ୟାସୀ, ବୁଢ଼ୀ ମା', ଗାଉଁଲି ଝିଅ, ନୂଆ ବୋହୂ, ଶିଶୁ ଇତ୍ୟାଦି । ଶରୀର ସଂକ୍ରାନ୍ତ ଚିତ୍ରକଳ୍ପ - ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ।

କବି ସୌରୀନ୍ଦ୍ର ବାରିକଙ୍କ କବିତାରେ ବ୍ୟବହୃତ ହୋଇଥିବା ଅନ୍ୟାନ୍ୟ ଚିତ୍ରକଳ୍ପଗୁଡ଼ିକ ହେଉଛି - ରେକଡ ପ୍ଲେୟାର, ସିନେମା ପୋଷ୍ଟର, ପାନ ଦୋକାନର ଜଳନ୍ତା ନଡ଼ିଆ କତା ଦଉଡ଼ି, ବଂଶୀ, ଶୁଖିଲା କୂଅ, କଟାଗୁଡ଼ି, ବେଲୁନ୍ ଇତ୍ୟାଦି । ସୌରୀନ୍ଦ୍ରଙ୍କ ଚିତ୍ରକଳ୍ପର ଉପାଦାନ ପରିସର ବିସ୍ତୃତ ନୁହେଁ ସତ କିନ୍ତୁ ସେସବୁକୁ ନେଇ ସେ ଚମତ୍କାର କବିତା ସୃଷ୍ଟି କରିଛନ୍ତି । ଭାବବସ୍ତୁର ଆଲୋଚନା ପ୍ରସଙ୍ଗରେ ଚିତ୍ରକଳ୍ପ ଗୁଡ଼ିକର ଆଲୋଚନା କରାଯାଇଛି । 'ଆମେ ଦୁହେଁ' କବିତା ସଂକଳନରେ ପତ୍ନୀଙ୍କ ସହ ସଂପର୍କର ପୃଷ୍ଠ ଭୂମିରେ ଯେଉଁ ଚିତ୍ରକଳ୍ପ ବ୍ୟବହାର କରିଛନ୍ତି ତାହା କବିଙ୍କର ପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । କବି ପ୍ରକାଶ କରିଛନ୍ତି:-

...........ତା’ ପରେ ଖିଲି ଖିଲି ହସ
ଘର ବାହୁଡ଼ା ବେଳେ ସଞ୍ଜୁଆ ଚଢ଼େଇ ଯେମିତି
ଉଡ଼ିଯାଆନ୍ତା ।’’ -(ଆମେ ଦୁହେଁ - ୧୫)

‘ଲୁହ ଠୁ ବି ଅନ୍ତରଂଗ’ କବିତା ସଂକଳନରେ କବି ଯେଉଁ ଚିତ୍ରକଳ୍ପ ବ୍ୟବହାର କରିଛନ୍ତି ତାହା ତାଙ୍କ ମନୀଷା ଓ ବିଦ୍‌ବତ୍ତାର ପରିଚୟ ପ୍ରଦାନ କରେ । ଯଥାର୍ଥରେ କବିଙ୍କ କବିତାରେ:-

ସକାଳେ କିନ୍ତୁ ମୋତେ ଲାଗିଥିଲା
ତୁମେ ଯେମିତି ଗୋଟେ କଦମ୍ବ ଗଛ
ବର୍ଷର ପ୍ରଥମ ଫୁଲକୁ ଧରି ହସୁଛି
ଆମେ ଫେରି ଆସିବା
ପ୍ରଥମ କଦମ୍ବର ସ୍ୱପ୍ନ ଧରି ନୁହେଁ
ବୁଡ଼ନ୍ତା ସୂର୍ଯ୍ୟର ସୁନା କିରଣରେ ଝଲି ଉଠୁଥିବା ଥୁଣ୍ଟା ଧାନ କିଆରୀର
ସ୍ମୃତି ଧରି । ୮୪ ।
ଖାଲି ତୁମେ ଆଉ ମୁଁ ଯିବା
ସେଲ୍‌ଫର ଧୂଳି ଧୂସର ବହି ପରି
ପାଖାପାଖି ବସି ଗୋଟିଏ ରିକ୍‌ସାରେ । - (ଲୁ:ଅ - ୨୯)
‘ସଞ୍ଜ ହେଲେ
ଛାଇ ସବୁ ଲମ୍ବି ଯାନ୍ତି, ଗାଢ଼ ହୁଅନ୍ତି
ଯେମିତି ଆମ ଆଖି ତଳ ଦାଗ
ଚମତ୍କାର ଧୁଡୁ ଧୁଡୁ ଗାର’ (ଲୁ:ଅ - ୯୩)
‘ଆମେ କେମିତି ଘନିଷ୍ଠ ଭାବରେ
ଦୁହେଁ ଦୁହିଁଙ୍କ ଠାରୁ ଦୂରେଇ ଯାଉଛେ
ମୁକୁଳିବା ଭିତରେ ଦୁଇଟି କଅଁଳ ପତ୍ର ଯେମିତି
ଧୀରେ ଧୀରେ ପରସ୍ପର ଠାରୁ ଦୂରେଇ ଯା’ନ୍ତି’’ (ଆ:ପ:ନି - ୩୮)
‘‘ଠିକ୍ ସେଇମିତି
ଆଜି ଆମେ ଯେମିତି
ସକାଳ ନିଷ୍ପ୍ରଭ ବତୀଖୁଣ୍ଟ ଯା’ ମୂଳରେ ଖାଲି
ରାଶି ରାଶି ସ୍ୱପ୍ନର ମୃତ ଝଡ଼ିପୋକ’’ - (ଆ: ପ:ନି - ୫୮)
‘କ୍ୱବିତାର ଧାଡ଼ିଟିଏରେ ତୁମେ ରହିଯିବ
ସୂର୍ଯ୍ୟ ଯେମିତି ରହିଯାଏ କାକର ବିନ୍ଦୁରେ

ଅନ୍ଧାର ଯେମିତି ରହିଯାଏ ସୂର୍ଯ୍ୟର ଛାତିରେ'  -(ଲୁ:ଅ - ୩୪)

କବି ସୌରୀନ୍ଦ୍ର ବାରିକ୍ ପରିବେଶ ସଂପର୍କରେ ଯେଉଁ ଚିତ୍ରକଳ୍ପ ବ୍ୟବହାର କରିଛନ୍ତି ସେଗୁଡ଼ିକ ହେଲା:-

'ସେ ଯେମିତି
ଡ୍ରଇଁ ରୁମ୍‌ରେ ଶୁଖୁଥିବା ଫୁଲର ସ୍ତବକ
ପୂଜା ଘଟରେ ସଢୁଥିବା କଅଁଳ ଆମ୍ବଡାଳ'  -(ଗୁ:ଚି - ୨୦)

'କୋଣରେ ଝୁଲୁଥିବା .
ଜଳନ୍ତା ନଡ଼ିଆ କତା ଦଉଡ଼ିଟି ପରି ନୀରବରେ
ମୁହୂର୍ତ୍ତ ଗୁଡ଼ିକ କେମିତି ଜଳିଯାନ୍ତି ସେ ଜାଣିପାରେନି ।''  -(ଗୁ : ଚି - ୧୪)

'ଇଏ ଯେମିତି ଶାମ୍ବର କଉତୁକିଆ ବେଶ
ଘୋଟି ଆସୁଥିବା ଅନ୍ଧାରର ଛାଇ । କାହ୍ନୁ ଭୁଷୁଡ଼ିବାର
ଶବ୍ଦ ଇଏ, ଅଣଚାଶୀ ରୋଗୀଟିର ଶେଷ ହାକୁଟି
ବୁଡ଼ିଗଲା ହାତଟିର ଆକାଶକୁ ଜାବୁଡ଼ି ଧରିବା
ଟିଣ ଟିଣେଇ ଉଠୁଥିବା ବିଷାକ୍ତ ହାଡଫୁଟି ''।  - (ଗୁ : ଚି - ୩୩)

''ଫିଟ୍ ଫାଟ୍ କାଲିର ସେ ଯୁବକଟି
ମହୁମାଛି ପରି ଫୁଲ ସବୁକୁ ଶୋଷି ନେଉଥିଲା
ମୁହୂର୍ତ୍ତ ସବୁକୁ ସିଗାରେଟ ପରି ଫୁଙ୍କି ଉଡାଇ ଦେଇଥିଲା
କଳାହାଣ୍ଡିଆ ମେଘ କୋଳରେ ଧୋବ ଫରଫର
ବଗଟିଏ ପରି
ଡେଣାରେ ଝଡକୁ ଧରି ଆକାଶର ଆଦି ଅନ୍ତ ସବୁ
ମାପି ଯିବାର ବହପ କରୁଥିଲା''  - (ଗୁ : ଚି - ୩୫)

କବି ସୌରୀନ୍ଦ୍ର ବାରିକ୍ 'ସାଇକେଲ' ସଂପର୍କରେ ଯେଉଁ ଚିତ୍ରକଳ୍ପ ବ୍ୟବହାର କରିଛନ୍ତି ତାହା ବେଶ୍ ମନୋଜ୍ଞ ଓ ମର୍ମିଳ । କବି ଯଥାର୍ଥରେ ପ୍ରକାଶ କରିଛନ୍ତି:-

'ମୋତେ ଧରି ବାବୁ ବସିଯାନ୍ତି ସଫା କରିବାକୁ
କଅଁଳା ଛୁଆକୁ ମା' ମଖା ମଖି କଲା ପରି
ବାବୁ ମୋତେ ପୋଛି ପାଛି ତେଲ ଦିଅନ୍ତି
କୁଣ୍ଢେଇ ଦେଲେ ଗାଈ ଆଖି ବୁଜି ବେକ ଟେକିଲା ପରି
ମୁଁ ଆରାମରେ ପଡିଥାଏ ।
ଆଉ ବାବୁ ମୋତେ ପୋଛୁଥାନ୍ତି ।  -(ଆମେ ଦୁହେଁ - ୩୪)

'ମନ ମୋର ପୁରି ଉଠୁଥାଏ ଗୋଟେ ଅଜଣା ଅଭାବରେ
ଲାଗୁଥାଏ ଯେମିତି
ଆସବାବ ଭରା ଡ୍ରଇଁ ରୁମ୍ ଭିତରେ
ମୁଁ ଗୋଟେ ନିଛାଟିଆ ସୌଖିନ ରବର ଗଛ' -(ଆମେ ଦୁହେଁ - ୪୦)

'ଗୋଟେ ପରେ ଗୋଟେ ପାର୍ଟସ କଢ଼ାଗଲା
ଯେମିତି ଡେଣ୍ଟିଷ୍ଟ ବାବୁଙ୍କ ଦାନ୍ତ ଓପାଡ଼େ
ଯେମିତି ବାବୁଙ୍କ ପାଚିଲା ବାଳ
ହସି ହସି ଓପାଡ଼େ ତାଙ୍କ ନାତି
ଠିକ୍ ସେମିତି'' -(ଆମେ ଦୁହେଁ - ୫୪)

ମହାଭାରତୀୟ ପୃଷ୍ଠଭୂମିରେ କବି ସୌରୀନ୍ଦ୍ର ବାରିକ ଅନେକ ସୁନ୍ଦର ଚିତ୍ରକଳ୍ପ 'ଅନୁଭାରତ' ଓ 'ଉପଭାରତ' କବିତା ସଂକଳନରେ ଉପସ୍ଥାପନ କରିଛନ୍ତି । କବି ଯଥାର୍ଥରେ ପ୍ରକାଶ କରିଛନ୍ତି:-

'ଉତ୍ତରାର ବୈଧବ୍ୟ ଆଙ୍କିବାରେ
ଭାରି କଷ୍ଟ
ଭୂମିକମ୍ପରେ ବସୁଧା ପରି ଥରି ଉଠେ ସାରା ଦେହ
ହାଡ ମାଂସ ଫାଟିଯାଏ ଚିରୁଳାଚିରୁଳା
ଯେମିତି ମୁଁ ବୈଶାଖର ବିଲ । ମୋ ଦେହରେ
ଚରିଯାଏ ଦାବାନଳ, ବୋହିଯାଏ ଝାଞ୍ଜି
ମୁଁ ପୁଣି ତରଳିଯାଏ ଖରାରେ ଯେମିତି
ପର୍ବତର ତୁଙ୍ଗ ହିମ ଚୂଡ଼ ।
ଆ ! ଏତେବେଳେ ତୁମେସିନା ଥାଆନ୍ତ ପାଖରେ
କବଚ ପରି ଚୁମାଟିଏ ଦେଇଥାଆନ୍ତ
ଶେତା ଅଧରରେ ।'' -(ଅ:ଭା - ୧୩)

ବସ୍ତ୍ରହରଣ ପରିପ୍ରେକ୍ଷୀରେ କବି ସୌରୀନ୍ଦ୍ର ବ୍ୟବହାର କରିଥିବା ଚିତ୍ରକଳ୍ପ ହେଉଛି :-

''ଟାଣି ନେଇଥିଲା ସେ ଏକ ଲୋମଶ ଅରଣ୍ୟ ମଝିକି
ଯେଉଁଠି ଖାଲି ସୁନାର ଗଛ, ରୂପାର ଗଛ,
ମଣିମାଣିକ୍ୟର ଗଛ
ଯେଉଁଠି ରତ୍ନ ସିଂହାସନ ଆରୂଢ଼ ସବୁ ଅରଣ୍ୟ ଦେବ
ଆଖି ଯା'ଙ୍କ ପଥିକ ଚାହାଁଣୀ ବି ଅରଣ୍ୟ ଅନ୍ଧାର

ପଥର ଦେହରେ ପୁଣି ନୀରବତାର ବିକଳ ସିନ୍ଦୂର ।''     - ଉ: ଭା - ୨୮)

ଦେବବ୍ରତ (ଭୀଷ୍ମ)ଙ୍କ ପ୍ରତିଜ୍ଞା ପରିପ୍ରେକ୍ଷୀରେ:-

ମୁଁ ଜାଣେ ତୁ ପୃଥିବୀ ଛାୟାହୀନ ଏକ ଅସରନ୍ତି ପଥ
ଦୁଃସ୍ୱପ୍ନ ପରେ ଦୁଃସହ ଏକ ଉଜାଗର ରାତି । ଆଉ ମୁଁ
ସକାଳର ଛଳ ଛଳ କୁଆଁତାରା
ବୁହନ୍ତା ଜହ୍ନର କାକର ଜୁଡୁଜୁଡୁ ସ୍ମୃତି     -(ଅ : ଭା - ୩୩)

'ଚହଲା ଛାଇରେ ଘଡ଼ିଏ' କବି ସୌରୀନ୍ଦ୍ର ବାରିକଙ୍କ ଅନନ୍ୟ ସଫଳ କୃତି । ଚିତ୍ରକଳ୍ପ ଗୁଡ଼ିକର ସଫଳ ବ୍ୟବହାର କରି କବିତା ଗୁଡ଼ିକୁ ରସୋତ୍ତୀର୍ଣ୍ଣ କରିଛନ୍ତି । ଅନେକ କବିତାରେ ଇନ୍ଦ୍ରିୟ ଗ୍ରାହ୍ୟ ଚିତ୍ରକଳ୍ପର ପ୍ରୟୋଗ କବିତାକୁ ମର୍ମିଳ କରିଛି । ଉଦାହରଣ ସ୍ୱରୂପ :-

'କୁରାଢ଼ି ଚୋଟରେ
ଡାଳ ପରେ ଡାଳ ଛିଡ଼ି ପଡୁଛି
ଗଛଟି ଯେମିତି ବଣ ଦେବତୀ ଆଗରେ ବିକଳ ସେ ମଇଁଷୀ
ଯା' ଦେହରୁ ଛେଲା ଛେଲା ମାଂସ ଭୋଗ କାଟି ନିଆ ହେଉଛି ।
     -(ଚହଲା ଛାଇରେ ଘଡ଼ିଏ - ୩)

'ସବୁଜ ଚୁମାଟିଏ ପରି ସେ ଆମ୍ବ ଗଛ
ବିକଳାଙ୍ଗ କବନ୍ଧଟିଏ ହୋଇ ଠିଆ ହୋଇଛି
କଅଁଳ ଶିଶୁର କାନ୍ଦ ପରି
ତାର କେବଳ ଗୋଟିଏ ଭାଷା
ନୀରବତା'     - (ଚହଲା ଛାଇରେ ଘଡ଼ିଏ : ୩)

'ହଳଦୀ ବସନ୍ତ' କବିତା ସଂକଳନରେ ବ୍ୟବହୃତ ହୋଇଥିବା ଚିତ୍ରକଳ୍ପ ହେଉଛି:-

'ତୋତେ ଦେଖିଲେ ଲାଗେ
ହଳଦୀ ଗୁରୁ ଗୁରୁ ଗାଁ ବୋହୂଟିଏ
ଅବା ହଳଦୀ ମାଖି, କଜ୍ଜ୍ୱଳ ନାଇ
କଅଁଳ ଖରାରେ ଖେଳୁଥିବା
କଅଁଳା ଛୁଆଟେ''   (-ହଳଦୀ ବସନ୍ତ : ୩)

ପଢ଼ ବା ନପଢ଼ କବିତା ସଂକଳନରେ ବ୍ୟବହୃତ ହୋଇଥିବା ଚିତ୍ରକଳ୍ପ ହେଉଛି :-

''ନୂଆ ଲାଗେ ଯେମିତି ସକାଳ କୁହୁଡ଼ି ହଟିଲେ
ଭିନେ ଲାଗେ ଯେମିତି ପୃଥିବୀ
ଜହ୍ନ ବୁଢ଼ି ସିନ୍ଦୁରା ଫାଟିଲେ''   (- ପଢ଼ ବା ନପଢ଼:୧୫)

ସୌରୀନ୍ଦ୍ରଙ୍କ କ୍ଷେତ୍ରରେ ଆପଣା ଅନୁଭୂତି ପ୍ରତି ସତ୍ୟଶୀଳ ରହି ଭାବବସ୍ତୁକୁ ପ୍ରକାଶ କରିବା ମୁଖ୍ୟ, କୃତ୍ରିମ କାରିଗରିରେ ନୁହେଁ । କବିତାର ଆତ୍ମିକ ସୌନ୍ଦର୍ଯ୍ୟରେ ସେ ବିଶ୍ୱାସ ରଖନ୍ତି । କିନ୍ତୁ ଅନୁଭୂତିଟିକୁ ରୂପାୟଣ କରିବାରେ ଶିଳ୍ପ କଳାପ୍ରତି ସେ ସଚେତନ ଥିବା ତାଙ୍କ କବିତା ବିଶ୍ଳେଷଣରୁ ଅନୁଭୂତ ହୁଏ । ଆପଣା କବିତା ଲେଖା ସଂପର୍କରେ ସେ ଏକଥା ମଧ୍ୟ ପ୍ରକାଶ କରିଛନ୍ତି ।

ସଙ୍କେତ ସୂଚୀ :-


୧: The Art of Poetry : Page - 270
Published : 1958,Paul Valery

୨: Collected Poems : Page - 194
Published : 1992, T.S. Eliot

୩: ଆରଦୃଶ୍ୟ : ପୃଷ୍ଠା : ୮୪
ଦ୍ୱିତୀୟ ପ୍ରକାଶ : ୧୯୮୯, ଡ. ସୀତାକାନ୍ତ ମହାପାତ୍ର

୪: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୮୯
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୫: ଆମେ ଦୁହେଁ : ପୃଷ୍ଠା : (VII)
ପ୍ରଥମ ପ୍ରକାଶ : ୧୯୯୧, ସୌରୀନ୍ଦ୍ର ବାରିକ୍

୬: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୯୦
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୭: ସତ୍ୟର କୁହୁକ : ପୃଷ୍ଠା : ୧୩୮, ୧୩୯
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୮: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୯୧
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୯: ତତ୍ରୈବ : ପୃଷ୍ଠା : ୯୧

୧୦: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୯୮
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୧୧: ସାମାନ୍ୟ କଥନ : ପୃଷ୍ଠା : ୪୨
ପ୍ରଥମ ପ୍ରକାଶ : ୧୯୭୫ : ସୌରୀନ୍ଦ୍ର ବାରିକ୍

୧୨: ତତ୍ରୈବ : ପୃଷ୍ଠା ୭୦

୧୩: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୯୯
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୧୪: ଉପଭାରତ : ପୃଷ୍ଠା : ୨୪
ପ୍ରଥମ ପ୍ରକାଶ : ୧୯୮୧, ସୌରୀନ୍ଦ୍ର ବାରିକ୍

୧୫: ତତ୍ରୈବ : ପୃଷ୍ଠା : ୩୪

୧୬: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୧୦୦
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୧୭: ମୂଲ୍ୟାୟନ : ପୃଷ୍ଠା : ୯୬
ପ୍ରକାଶ କାଳ : ୧୯୭୬, ସଚ୍ଚିଦାନନ୍ଦ ରାଉତରାୟ

୧୮: ଆକାଶ ପରି ନିବିଡ଼ : ପୃଷ୍ଠା - ୨୮
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ୍

୧୯: ତତ୍ରୈବ : ପୃଷ୍ଠା : ୩୧

୨୦: ତତ୍ରୈବ : ପୃଷ୍ଠା : ୭୫

୨୧: ଅନୁଭାରତ : ପୃଷ୍ଠା : ୪୬
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୨୨: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୯୬
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୨୩: ଅନ୍ୱେଷାର ସ୍ୱର : ପୃଷ୍ଠା : ୧୬୦
ପ୍ରଥମ ପ୍ରକାଶ : ୧୯୮୦, ସୌରୀନ୍ଦ୍ର ବାରିକ୍

୨୪: ସାମାନ୍ୟ କଥନ : ପୃଷ୍ଠା : ୯୭
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୨୫: ତତ୍ରୈବ : ପୃଷ୍ଠା : ୯୮

୨୬: ତତ୍ରୈବ : ପୃଷ୍ଠା : ୯୯

୨୭: Essays and Introduction : Page : 509
Publication : 1961, W.B. Yeats

୨୮: The Idea of Great Poetry : Page : 96
Publication : 1926, Lascelles Abercmble

୨୯: ଆକାଶ ପରି ନିବିଡ଼ : ପୃଷ୍ଠା : ୨୭
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ୍

୩୦: ତତ୍ରୈବ : ପୃଷ୍ଠା : ୪୨

୩୧: ସାଂପ୍ରତିକ ଓଡ଼ିଆ କବିତା : ପୃଷ୍ଠା : ୧୦, ୧୧
ପ୍ରଥମ ପ୍ରକାଶ : ୧୯୯୭, ଡ. ନିତ୍ୟାନନ୍ଦ ଶତପଥୀ

..............................

୩୨: ଗୁଣୁ ଗୁଣୁ ଚିତ୍ରପଟ : ପୃଷ୍ଠା : ୧୩
ପ୍ରଥମ ପ୍ରକାଶ : ୧୯୮୬, ସୌରୀନ୍ଦ୍ର ବାରିକ୍

୩୩: ତତ୍ରୈବ : ପୃଷ୍ଠା : ୩୩

୩୪: ତତ୍ରୈବ : ପୃଷ୍ଠା : ୪୦

୩୫: ଅନୁଭାରତ : ପୃଷ୍ଠା : ୪୪
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୩୬: ଅନୁଭାରତ : ପୃଷ୍ଠା : ପଦେ
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୩୭: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୬୦
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୩୮: ଅନୁଭାରତ : ପୃଷ୍ଠା : ପଦେ
ପ୍ରଥମ ପ୍ରକାଶ : ୧୯୯୩, ସୌରୀନ୍ଦ୍ର ବାରିକ୍

୩୯: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୬୧
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୪୦: ଉପଭାରତ : ପୃଷ୍ଠା : ୩୧
ପ୍ରଥମ ପ୍ରକାଶ : ୧୯୮୧, ସୌରୀନ୍ଦ୍ର ବାରିକ୍

୪୧: ଅନୁଭାରତ : ପୃଷ୍ଠା : ୭
ପ୍ରଥମ ପ୍ରକାଶ : ୧୯୯୦, ସୌରୀନ୍ଦ୍ର ବାରିକ୍

୪୨: ତତ୍ରୈବ : ପୃଷ୍ଠା : ୨୯

୪୩: ତତ୍ରୈବ : ପୃଷ୍ଠା : ୨୨

୪୪: The Idea of Great Poetry : Page : 195
Published : 1926, Lascelles Abercrombie

୪୫: ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୧୦୦
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୪୬: ତତ୍ରୈବ : ପୃଷ୍ଠା : ୧୦୧କ

# ସୌରୀନ୍ଦ୍ର ବାରିକଙ୍କ କବିତାର ଶିଳ୍ପ ସୌକର୍ଯ୍ୟ

## କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାରେ ଶିଳ୍ପ ସୌକର୍ଯ୍ୟ

ସୌରୀନ୍ଦ୍ର ବାରିକ୍ କବିତା ରଚନା କ୍ଷେତ୍ରରେ ଜଣେ ମୂର୍ଦ୍ଧଣ୍ୟ କାବ୍ୟଶିଳ୍ପୀ । ଶିଳ୍ପର ଯଥାର୍ଥ ରୂପାୟନ ନିମନ୍ତେ ସେ ସତତ ଚେଷ୍ଟିତ । ବସ୍ତୁର ବର୍ଣ୍ଣନା କରିବାପାଇଁ ସେ ଭାବ ଓ ଶୈଳୀ ଭିତରେ ନିର୍ଦ୍ଦିଷ୍ଟ ସୀମାରେଖା ନଟାଣି ଉଭୟର ସମନ୍ୱୟ ରକ୍ଷା କରିବାପାଇଁ ସର୍ବଦା ଉଦ୍ୟମଶୀଳ । କୃତ୍ରିମ କାରିଗରୀ ଠାରୁ ସେ ନିଜକୁ ଦୂରେଇ ରଖିଛନ୍ତି । କାବ୍ୟ ଜୀବନ ଆରମ୍ଭରୁ କବି ସୌରୀନ୍ଦ୍ର ଶୈଳୀ ପ୍ରତି ବିଶେଷ ସଚେତନ । ଅଧିକାଂଶ କବିତାରେ ଭାବ ବସ୍ତୁର ସଂକ୍ରମଣ ସହିତ ଶୈଳୀର ସ୍ୱତଃ ଜନ୍ମ ତାଙ୍କ କବିତାର ଆବେଦନକୁକରିଛି ସାର୍ଥକ । ସୌରୀନ୍ଦ୍ରଙ୍କ କାବ୍ୟିକ ଶୈଳୀ ସ୍ୱତନ୍ତ୍ର; ସରଳ ସଳଖ ସ୍ୱଚ୍ଛଳ । ଆବେଗ, ଚିନ୍ତା ଏବଂ ଶୈଳୀର ଆତ୍ମିକ ସଂପର୍କ ତାଙ୍କ କବିତାର ଶିଳ୍ପ ସୌକର୍ଯ୍ୟ । ସ୍ୱପ୍ନ-ସଂପର୍କ- ସ୍ୱୀକାରୋକ୍ତି ତାଙ୍କ କାବ୍ୟ ଚେତନାରେ ସନ୍ନିହିତ ଓ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସୌରୀନ୍ଦ୍ରଙ୍କ କବିତା କେବଳ ଶୈଳୀ ପ୍ରଧାନ ନୁହେଁ କିମ୍ବା ଆବେଦନ ପ୍ରବଣ ନୁହେଁ । ବ୍ୟକ୍ତିତ୍ୱର ସଂଯମତା, ଅନୁଭୂତିର ଗଭୀରତା, ଆବେଗ ସର୍ବସ୍ୱ ଜଗତରେ ଆତ୍ମିକ ଅନୁଭବ ସୌରୀନ୍ଦ୍ରଙ୍କ କବିତା । ପରିବେଶର ପ୍ରଚ୍ଛଦ ଓ ଜୀବନର ଜଟିଳତାରୁ ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଜନ୍ମ । ସରସ ସୁନ୍ଦର ଭାଷା ବିନ୍ୟାସରେ ନିବିଡ଼ ସତ୍ୟକୁ ତାଙ୍କ କବିତା ଆବିଷ୍କାର କରିଛି । ବୌଦ୍ଧିକତା ଅପେକ୍ଷା ମାର୍ମିକତାରେ ଋଦ୍ଧିମନ୍ତ ତାଙ୍କ କାବ୍ୟ କୃତି । କବିତାର ପ୍ରତି ଛତ୍ରେ ଛତ୍ରେ ଜୀବନର ପ୍ରତିଟି ମୁହୂର୍ତ୍ତ ପ୍ରତିଫଳିତ । ସୌରୀନ୍ଦ୍ରଙ୍କ କବିତା ଏକ ସ୍ୱଚ୍ଛ ମୁକୁର, ଯାହା ଦେହରେ ସମାଜର ପ୍ରତ୍ୟେକ ଦୈନନ୍ଦିନ ଘଟଣା ପ୍ରତିଫଳିତ । କବିତାରେ ସିଧାସଳଖ ପ୍ରକାଶ କରିବାର ଦୃଷ୍ଟିଭଙ୍ଗୀ ତାଙ୍କୁ

ଅନନ୍ୟ ପ୍ରତିଭାର ଅଧିକାରୀ କରିଛି । ହୃଦୟରେ ଶରବିଦ୍ଧ ହେଲା ପରି ସୌରୀନ୍ଦ୍ରଙ୍କ କାବ୍ୟଶିଳ୍ପର ଶବ୍ଦସର ପାଠକ ଅନ୍ତରକୁବିଦ୍ଧ କରିଛି । ପାଠକର ଚିତରେ ଆଲୋଡନ ସୃଷ୍ଟି କରିଛି କବିତା । ଭାଷାର ଗତି ଓ ଛନ୍ଦର ଶୈଳୀ ତାଙ୍କ କାବ୍ୟିକ ଚେତନାର କଳା ସୌଷ୍ଠବ । ନିଜକୁ ନିଜ ଭାବରେ କବିତାରେ ପ୍ରକାଶ କରିବା ତାଙ୍କର ଲକ୍ଷ୍ୟ । ଅନନ୍ୟ ଅନୁଭୂତି ଓ ଅନନ୍ତ ଅଭିଜ୍ଞତାକୁ କବିତାରେ ସ୍ଥାନ-କାଳ-ପାତ୍ରରେ ଉପସ୍ଥାପନ କରିବା ତାଙ୍କର କବିତ୍ୱ । ଆପଣା ଅନୁଭୂତି ଭିତରେ ସେ ଆଙ୍ଗିକ ଦିଗପ୍ରତି ଏତେଟା ସଚେତନ ନୁହଁନ୍ତି ସତ; ମାତ୍ର ପ୍ରକାଶ ଭଙ୍ଗୀରେ ଅନୁଭବର ଜଟିଳତା ଓ ଗଭୀରତା ତାଙ୍କ କବିତାର ପ୍ରତି ଛତ୍ରେ ଛତ୍ରେ ପ୍ରସ୍ଫୁଟିତ । କବିଙ୍କ ଆତ୍ମିକ ପ୍ରକାଶ ଭଙ୍ଗୀ ଅତି ସରଳ, ସ୍ୱଚ୍ଛନ୍ଦ ଓ ସାବଲୀଳ । କବିତାର ଅଙ୍ଗ ସୌଷ୍ଠବ ଓ ତା'ର ସୌକୁମାର୍ଯ୍ୟ ସର୍ବଦାଜଟିଳ ହେବା ବାଧ୍ୟ ନୁହେଁ; ଏହା କବିର ଶାଣିତ ଅନୁଭବ ଉପରେ ନିର୍ଭର କରେ । ଆଙ୍ଗିକ ଅପେକ୍ଷା ଆତ୍ମିକ ଦିଗ ପ୍ରତି କବି ବେଶ୍ ସଚେତନ । ଭାବ ତାଙ୍କ କବିତାର ମୁଖ୍ୟ ଅଙ୍ଗ । ଅଶରୀରୀ ଭାବକୁ କବି ଶବ୍ଦ ମାଧ୍ୟମରେ କବିତାରେ ଜୀବନ୍ୟାସ ଦେଇଛନ୍ତି । କବିତା ହୋଇଉଠିଛି ପ୍ରାଣର ପୁଲକ, ମୁହୂର୍ତ୍ତର ମର୍ମିଳ ମୂର୍ଚ୍ଛନା । ଜୀବନର ସ୍ୱର କବିଙ୍କ କାବ୍ୟବୀଣାରେ ଅହରହ ବାଜି ଉଠିଛି; କବିଙ୍କୁ ମୋହିତ କରିଛି ଜୀବନ । ଭାବ ରୂପକୁ ଆଶ୍ରୟ କରି ଆସିପାରେସତ,ମାତ୍ର ସୁନ୍ଦର ରୂପରାଶି ସର୍ବଦା ସୁନ୍ଦର ଭାବନାଭୂତି ଦେଇ ପାରି ନଥାଏ । ଯେପରି ଜଣେ ନାରୀର ଅଳଙ୍କରଣରେ ଆଙ୍ଗିକ ସୌଷ୍ଠବ ବୃଦ୍ଧି ହୋଇଥାଏ ସିନା ତା'ର ଆତ୍ମିକ ଗୁଣର ପରିବର୍ତ୍ତନ ଘଟିନଥାଏ । ମାତ୍ର ଅଳଙ୍କାର ବିନା ନାରୀଟି କେବେ ଶ୍ରୀହୀନ ନୁହେଁ, ତା'ର ଆପଣା ସୁଲଭ ଗୁଣାବଳୀରେ ଜଗତମୋହିତ କରିଥାଏ । ସୁତରାଂ ରୂପ ଓ ଭାବ ଉଭୟ କବିତା କ୍ଷେତ୍ରରେ ସ୍ୱୀକାର୍ଯ୍ୟ । କବି ଗୁରୁ T.S. Eliot ମଧ୍ୟ ଉଭୟର ମର୍ଯ୍ୟାଦାକୁ ସ୍ୱୀକାର କରିଛନ୍ତି ।

ଆଧୁନିକ କବିତାର ବିଶିଷ୍ଟ ସମାଲୋଚକ ପ୍ରଫେସର ଡ. ଦାଶରଥି ଦାସଙ୍କ ମନ୍ତବ୍ୟ ଏ କ୍ଷେତ୍ରରେ ସ୍ମରଣ କରାଯାଇପାରେ । 'ଭଲ କବିତାରେ ଭାବ ଓ ରୂପ ଅଭିନ୍ନ । ସେଥିରେ ଦୁହିଁଙ୍କୁ ପରସ୍ପରଠାରୁ ପୃଥକ ବୋଲି ଭାବିବାର କୌଣସି ଅବକାଶ ନଥାଏ । କାବ୍ୟ ବିଚାର ପାଇଁ କିନ୍ତୁ ଦୁଇଟି ପ୍ରତି ଧ୍ୟାନ ବିଚାର କରାଯାଏ । ଅଭିଜ୍ଞତାକୁ ଠିକ୍ ଭାବରେ ଅଭିବ୍ୟକ୍ତ କରାଯାଇଥିଲେ; ବୁଝାଯାଏ କବିଙ୍କର ରଚନା ଶିଳ୍ପ ଧନ୍ୟ ହୋଇଉଠିଛି, କିନ୍ତୁ ମହତ ଶିଳ୍ପ ହୋଇଛି କି ନାହିଁ ତାହା ଅନେକାଂଶରେ ନିର୍ଭର କରିଥାଏ ଅଭିବ୍ୟକ୍ତି (Communicated) ଓ ଅଭିଜ୍ଞତା କେତେ ମହାନ ତାହାରି ଉପରେ ।

ବର୍ଣ୍ଣନା ନୁହେଁ, ସୂଚନା ହିଁ କବିତାର ପ୍ରାଣ । କୃତ୍ରିମ ବୌଦ୍ଧିକତା ନୁହେଁ, ସରଳ ବ୍ୟଞ୍ଜନା ହିଁ ତା'ର ସର୍ବସ୍ୱ । ଆଙ୍ଗିକର ଅଳଙ୍କରଣରୁ ମୁକ୍ତି ଲାଭ କରି ଅନୁଭୂତିର ଗଭୀରତାକୁ ସେଇ ଅନୁଭୂତିର ଅନନ୍ୟତାରେ ସୂଚାଇ ଦେବା... ଏକ ଉତ୍ତରୀତ ରହସ୍ୟମୟତା, ରହସ୍ୟମୟୀ ସତ୍ୟର ଅନନ୍ୟ ପ୍ରକାଶ । ତେଣୁ ଅକୃତ୍ରିମତା ସ୍ୱଚ୍ଛନ୍ଦତା ହିଁ ଉଚ୍ଚକୋଟୀର କାବ୍ୟିକ ସିଦ୍ଧି । ଏହା ପ୍ରଚୁର କଳ୍ପନା ଶକ୍ତି ଓ ସାଧନା ଶକ୍ତିର ସୌଭାଗ୍ୟରେ ସମ୍ଭବ ହୋଇଥାଏ ।

କବି ସୌରୀନ୍ଦ୍ରଙ୍କ ଭାଷାରେ 'ମୋ କବିତା ତ ଘଡ଼ିଏ ଅନ୍ତରଙ୍ଗ ଆଳାପ' । ସେ ଆବେଗ ଆଳାପର କବି । ସ୍ନେହ-ପ୍ରେମ-ସଂପର୍କ ହିଁ ତାଙ୍କ କବିତା । ବଞ୍ଚିବାର ସୂକ୍ଷ୍ମ ଅନୁଭୂତିଟିକୁ ନିହାତି ସ୍ୱଚ୍ଛ ଓ ସରଳ ଭାବେ ଯେତେଦୂର ସମ୍ଭବ ସେ ଆନ୍ତରିକ ଭାବେ କବିତାରେ ପ୍ରକାଶ କରିଛନ୍ତି । ଏହି ଆନ୍ତରିକ ପ୍ରକାଶ ଭଙ୍ଗି ପାଇଁ ସେ ବୌଦ୍ଧିକ ପ୍ରକରଣଠୁ ଅନେକ ଦୂରରେ । ଶରତ ଆକାଶ ପରି ସ୍ୱଚ୍ଛ ସରଳତା ହିଁ ସଂପର୍କ । ମୁଁ ମୋ ସଂପର୍କରେ ପୃଥିବୀ ଓ ମୋ' ଭାଷା – ଏହି ତିନି ସଂପର୍କ ମୋ' କବିତା । ଏ ସଂପର୍କ ଯେତେ ନିବିଡ଼, ଯେତେ ସଚ୍ଚୋଟ, କବିତାର ପ୍ରକାଶ ସେତେ ଅକୃତ୍ରିମ ସେତେ ଗଭୀର, ସେତେ ସ୍ୱଚ୍ଛଳ ।

ସ୍ୱଚ୍ଛଳତାକୁ ଜାବୁଡ଼ି ଧରି ତାଙ୍କ ସରଳତାର ଆବିର୍ଭାବ । ସୌରୀନ୍ଦ୍ରଙ୍କ ଭାଷାରେ 'ମୋ' କବିତାର ସରଳତା / ବୁଝାଇ ଦିଏ ଜୀବନର ସବୁ ଜଟିଳତା, ଯୁକ୍ତି କିମ୍ବା ସରଳ ବର୍ଣ୍ଣନା ଛଳରେ ତାଙ୍କ ଅନୁଭୂତିର ଜଟିଳତା ନୁହେଁ, ସରଳ ସାଧାରଣ ହିଁ ତାଙ୍କ କବିତାର ପ୍ରାଣ । ଅତଏବ ସତ୍ୟଶୀଳ ସ୍ୱଚ୍ଛନ୍ଦ ହିଁ ତାଙ୍କ କବିତାର ଶୈଳୀ । ଆଧୁନିକ କବିତା କ୍ଷେତ୍ରରେ ପ୍ରୟୋଗବାଦୀ ଧାରାଠୁ ନିର୍ଦ୍ଦିଷ୍ଟ ଦୂରତା ରକ୍ଷା କରିଛନ୍ତି । ମାତ୍ର ପ୍ରାରମ୍ଭିକ କାବ୍ୟ ଜୀବନରେ କିଛିଟା ପ୍ରଭାବରୁ ସେ ସଂପୂର୍ଣ୍ଣ ମୁକ୍ତ ନୁହଁନ୍ତି । ସୌରୀନ୍ଦ୍ରଙ୍କ କବିତାର ଆଙ୍ଗିକ ଦିଗଟି ଆତ୍ମିକ ଦିଗ ନିକଟରେ ଆତ୍ମ ସମର୍ପଣ କରିଛି କହିଲେ ବାର୍ତ୍ତାର ଅପଳାପ ହେବନାହିଁ । ବୁଦ୍ଧି କିମ୍ବା ଯୁକ୍ତିର ଶାଣିତ କାରିଗରୀ ଭିତରେ କବିତାର ଶିଳ୍ପ କୌଶଳକୁ ବାନ୍ଧି ପାରିନାହାଁନ୍ତି କବି ସୌରୀନ୍ଦ୍ର । ଶସ୍ତା କୌଶଳ ଅବଲମ୍ବନ କରି କବିତାର କାରିଗରୀ ଶିଳ୍ପକୁ ଅଶୋଭନୀୟ କରିନାହାଁନ୍ତି, କି ଅବୋଧ ଶବ୍ଦ ବ୍ୟବହାର କରି କବିତାକୁ ଦୁର୍ବୋଧ୍ୟ କରିନାହାଁନ୍ତି । ବରଂ ବୌଦ୍ଧିକ ସରଳତା ଭିତରେ ଅନନ୍ୟ ଅନୁଭୂତିର ସହଜ ସରଳ ସତ୍ୟଶୀଳ ଭାବଟିକୁ ପାଠକ ପାଖରେ ଉପସ୍ଥାପନ କରିବା ପାଇଁ ଯାହା ତାଙ୍କର ଶିଳ୍ପ କଳାର ସାର୍ଥକ ପରିପ୍ରକାଶ । ଏହା କୃତ୍ରିମତା ଜରିଆରେ ନୁହେଁ କିମ୍ବା ଦୁର୍ବୋଧ୍ୟତା ଦେଇ ନୁହେଁ, ଏହା ଏକ ଆତ୍ମିକ ଅନୁଭବ ମାଧ୍ୟମରେ ତାଙ୍କ ଶିଳ୍ପୀ ପ୍ରାଣର ଆଙ୍ଗିକ ସଚେତନତା । ଆଙ୍ଗିକ ଓ ଆତ୍ମିକର ସୁସମନ୍ୱୟରେ ତାଙ୍କ କବିତା ଚଳଚଞ୍ଚଳ ଓ ଗତିଶୀଳ ।

## (କ) ଦାର୍ଶନିକ ଦୃଷ୍ଟି :

ପ୍ରତ୍ୟେକ କବି ଜଣେ ଜଣେ ମଣିଷ । କିନ୍ତୁ ପ୍ରତ୍ୟେକ ମଣିଷ ଜଣେ ଜଣେ କବି ନୁହଁନ୍ତି । ପରିବେଶ, ପ୍ରକୃତି ଭିତରେ ଜୀବନକୁ ପୁଙ୍ଖାନୁପୁଙ୍ଖ ଭାବରେ ଅଧ୍ୟୟନ କରେ କବି । ସାଧାରଣ ଭିତରେ ଅସାଧାରଣ ତାକୁ ଲକ୍ଷ୍ୟକରେ କବି । ଜୀବନ ଜଟିଳ ଭଗ୍ନାଂଶର ସୂତ୍ର ଖୋଜୁ ଖୋଜୁ କବି ସଂସାର ଚିତ୍ର ଅବଲୋକନ କରି କବିତା ଭିତରେ ପାଠକକୁ ତାହା ଦେଖାଇ ଦିଏ । ଅଣୁ ଭିତରେ ପରମାଣୁ, ତିଳ ଭିତରେ ତାଳ, ଆକ୍ଷି ଭିତରେ ଅକ୍ଷାଂଶକୁ ପରିଦର୍ଶନ କରେ କବି । ଦୈନନ୍ଦିନ ଜୀବନରେ ବସ୍ତୁ ଦର୍ଶନ ଭିତରେ କବି କ୍ଷୁଦ୍ର ଭିତରେ ବିରାଟର ସନ୍ଧାନ ପାଏ ଜୀବନ ଜଗତ ପ୍ରତି କବିର ଦୃଷ୍ଟି ଭଙ୍ଗୀ ବଦଳି ଯାଏ । ପ୍ରତ୍ୟେକ

ଜିନିଷର ମୂଲ୍ୟକୁ କବି ତା' ତୈଜସ ଦୃଷ୍ଟିରେ ମୂଲ୍ୟାୟନ କରେ । କେତେବେଳେ କବି ଦୃଷ୍ଟିରେ କାଚ କାଞ୍ଚନର ମୂଲ୍ୟ ପାଏତ ଆଉ କେତେବେଳେ କାଞ୍ଚନ କଉଡ଼ିରେ ପରିଣତ ହୁଏ । ସର୍ବସାଧାରଣ ଦୃଷ୍ଟିଠାରୁ କବିର ଦୃଷ୍ଟି ନିଆରା । କବିର ଦୃଷ୍ଟି ଏକ ମୁଗ୍ଧ ଦୃଷ୍ଟି । ଦୃଷ୍ଟି ବଳୟ ଭିତରେ ଜୀବନର ଉଦ୍ଦେଶ୍ୟକୁ, ଉପାଦେୟତାକୁ କବି ନିଜସ୍ୱ ଦୃଷ୍ଟିଭଙ୍ଗୀରେ କବିତାରେ ଉପସ୍ଥାପନ କରେ । ଜୀବନ ଜଗତ ପ୍ରତି କବିର ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀ କବିତାରେ ଦାର୍ଶନିକ ଦୃଷ୍ଟିରେ ପରିଣତ ହୁଏ । ଜଣେ କବିର ଦର୍ଶନ ଅନ୍ୟଜଣେ କବିର ଦର୍ଶନ ଠାରୁ ପୃଥକ । ପ୍ରତ୍ୟେକ କବି ସମାଜରେ ଗୋଟିଏ ଆକାଶର ଛାତ ତଳେ ଅବସ୍ଥାନ କରନ୍ତି, ପଞ୍ଚଭୂତକୁ ଭୋଗ କରନ୍ତି, କିନ୍ତୁ ସେମାନଙ୍କ ସୃଷ୍ଟିରେ ଓ ଦୃଷ୍ଟିରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

କବି ସୌରୀନ୍ଦ୍ର ବାରିକ୍‌ଙ୍କ ଅନନ୍ୟ ସୃଷ୍ଟି 'ସାମାନ୍ୟ କଥନ' । ଯଦିଓ ଏହା କବିଙ୍କର କବିତା କ୍ଷେତ୍ରରେ ପ୍ରାଥମିକ ପ୍ରୟାସ କିନ୍ତୁ ଏହା କବିଙ୍କୁ ବିପୁଳ ଶ୍ରଦ୍ଧା ଓ ସମ୍ମାନ ପ୍ରଦାନ କରିଛି । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା କବିତା ସଂକଳନଟି ପୁରସ୍କୃତ ହୋଇ କବିଙ୍କ ପ୍ରତିଭାକୁ ବିକଶିତ କରିଛି । 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ସନ୍ଧ୍ୟାହତ' ଶୀର୍ଷକ କବିତା କବିଙ୍କ ଦର୍ଶନର ଅନନ୍ୟ ଉଦାହରଣ । କବିତାରେ କବି ସନ୍ଧ୍ୟାର ଆଗମନକୁ ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ ପ୍ରକାଶ କରିଛନ୍ତି । କର୍ମକ୍ଳାନ୍ତ ଦିବସର ଅବସାନ ପରେ ଧରିତ୍ରୀ ଉପରକୁ ଧିର ପଦକ୍ଷେପରେ କଳାପାଟ ଶାଢ଼ୀ ପରିଧାନ କରି ସନ୍ଧ୍ୟା ଆସିଛି ଠିକ୍ ରୋଟିନ ବନ୍ଧା ଜୀବନକୁ ଜୀବିକାର ଜବକାଚରେ ଦେଖି, କୃମିତନ୍ତୁ ଜାଲର ଫାଇଲି କାମ ସାରି କିରାଣୀଟି ପରି । ଅଧାଜଳା ଅଧାଲିଭା ପାଂଶୁଳ ମର୍କୁରିବତୀ କର୍ମତତ୍ପର ସରଣୀକୁ ଚିହ୍ନଟ କରୁଛି । ଆକାଶର ଅଗଣାରେ ଜହ୍ନ ପାଂଶୁଳ ବର୍ଣ୍ଣ ଧାରଣ କରିଚି, ବେମାରିଆ ଜଣ୍ଡିସ ରୋଗୀ ପରି । ସନ୍ଧ୍ୟା ପରିବେଶର ଚିତ୍ରପଟକୁ ଚିତ୍ରକଳ୍ପ ମାଧ୍ୟମରେ କବି ପ୍ରକାଶ କରିଣଛନ୍ତି । ଦର୍ଶନ ଚିନ୍ତନ କବିତାକୁ ସରସ ସୁନ୍ଦର କରିଛି । କବିଙ୍କ କବିତାରେ:-

'ସଂଧ୍ୟା ଆସୁଥିଲା
ବର୍ଷା-ବିଧୂର ସହରର ବୁକେ
କ୍ଳାନ୍ତ
ଅଫିସ ଫେରନ୍ତା କିରାଣୀଟି ପରି
ରାସ୍ତାରେ ପାଂଶୁଳ ମର୍କୁରିବତୀ
ଆକାଶରେ ଜହ୍ନଟା ବି ପାଂଶୁଳ ନିହାତି
ଜଣ୍ଡିସ ରୋଗୀ ପରି''।୧।

ପାଶ୍ଚାତ୍ୟ କବି ମନୀଷୀ William Shakespeare ଯଥାର୍ଥରେ World is a stage କବିତାରେ ପ୍ରକାଶ କରିଥିଲେ - ପୃଥିବୀ ଏକ ରଂଗମଞ୍ଚ, ପ୍ରତ୍ୟେକ ନରନାରୀ ନର୍ତ୍ତକ ଓ

ନର୍ତ୍ତକୀ, ସେମାନେ ସେମାନଙ୍କର ଅଭିନୟ ଶେଷ କରି କାଳ କବଳରେ କବଳିତ ହୋଇ ଧରା ବକ୍ଷରୁ ବିଦାୟ ନେବେ । ଏ ଦାର୍ଶନିକ ସୁଲଭ ଚିନ୍ତା ଧାରାକୁ ଗ୍ରହଣ କରି କବିବର ରାଧାନାଥ ରାୟ 'ପାର୍ବତୀ' କାବ୍ୟରେ ପ୍ରକାଶ କରିଛନ୍ତି:-

କେହି ରହି ନାହିଁ     ରହିବ ନାହିଁଟି
ଭବ-ରଙ୍ଗ-ଭୂମି-ତଳେ
ସର୍ବେ ନିଜ ନିଜ     ଅଭିନୟ ସାରି
ବାହୁଡ଼ିବେ କାଳ ବଳେ ।୨।

କବି ଗୋଟିଏକୁ ଦର୍ଶନ ଗୋଟିଏ । କେତେବେଳେ କେଉଁ ପରିବେଶରେ ଜୀବନ ଜଗତ ପ୍ରତି କବିର ଦୃଷ୍ଟିଭଙ୍ଗୀ କବିତାରେ ପ୍ରତିଫଳିତ ହୋଇଛି ତାହା କିଏ କହିବ ? କେବଳ ଜଣେ ସାରସ୍ୱତ ସ୍ରଷ୍ଟା ହିଁ ସୃଷ୍ଟିର ସୌନ୍ଦର୍ଯ୍ୟକୁ ଉପଭୋଗ କରିବ । ସ୍ରଷ୍ଟାର ସୃଷ୍ଟି ବିଚିତ୍ର । ସେଠି ଦର୍ଶନ ଚିନ୍ତନର ଖେଳଘର ନିତ୍ୟନିୟତ । ଅନନ୍ତ କର୍ମର ଅଧିଷ୍ଠାନ ଜୀବନ କେତେବେଳେ ସୁନ୍ଦରତ କେତେବେଳେ ଭଙ୍ଗୁର । ଉତ୍‌ଥାନ, ପତନ, ଭଙ୍ଗା, ଗଢ଼ା ଭିତରେ ଜୀବନ ଛାଇ ଆଲୁଅର ପଶାଖେଳ । କିଏ ଜୀବନ ଯୁଦ୍ଧରେ ଜିତୁ ଜିତୁ ହାରି ଯାଉଛି ତ ଆଉ କିଏ ହାରୁ ହାରୁ ଜିତି ଯାଉଛି । ସାପ ଶିଡ଼ିର ଖେଳ ଭିତରେ ଜୀବନ କ୍ଷଣିକ ଆନନ୍ଦ, ଚେନାଏ ଆହ୍ଲାଦ । ଆନନ୍ଦ ଆହ୍ଲାଦର ମନ୍ତ୍ରପାଠ ଜୀବନ । କବି ସୌରୀନ୍ଦ୍ର ବାରିକ ଜୀବନକୁ ଏକ ପାନ୍ଥଶାଳା ଭାବରେ କବିତାରେ ପ୍ରକାଶ କରିଛନ୍ତି । ପଥିକ ପାନ୍ଥଶାଳାରେ କ୍ଷଣକ ପାଇଁ ବିଶ୍ରାମ ନିଏ, ବିଶ୍ରାମ ସାରି କର୍ତ୍ତବ୍ୟର ଆହ୍ୱାନରେ ଚାଲିଯାଏ । କେତେ ଆସନ୍ତି କେତେ ଯାଆନ୍ତି ପାନ୍ଥଶାଳା ତା'ର ହିସାବ ରଖେ ନାହିଁ । ଜୀବନ ରୂପକ ପାନ୍ଥଶାଳାରେ ଅନେକ ବନ୍ଧୁ ଉପସ୍ଥିତ ହୁଅନ୍ତି ସ୍ୱାର୍ଥ ସାଧନ କରି ନିଜ ବାଟରେ ଚାଲିଯାଆନ୍ତି । ବେସୁରା ଜୀବନ ଏକ ପାନ୍ଥଶାଳା ପରି ପଡ଼ିରହିଥାଏ । ଯଥାର୍ଥରେ କବି କବିତାରେ ପ୍ରକାଶ କରିଛନ୍ତି ।

'କିମ୍ୱା ଭୁଲିଯିବା ପାଇଁ ସବୁକିଛି ଗୋଟିଏ ମୁହୂର୍ତ୍ତ
ଜୀବନଟା ପାନ୍ଥଶାଳା ଗୋଟେ କିଛିକ୍ଷଣ ରହିଯିବା ପାଇଁ''।୩।

ଜୀବନ, ଯନ୍ତ୍ରଣା ଜତୁ ଗୃହରେ ଅହରହ ଜଳୁଛି । ଆଶାର ମାୟା ମୃଗ ପଛରେ ମଣିଷ ଦୌଡ଼ି ଦୌଡ଼ି ନୟାନ୍ତ, ନା ମୃଗ ଧରା ଦେଉଛି ନା ଆଶା ପୂରଣ ହେଉଛି । ବର୍ତ୍ତମାନ ସ୍ଥାଣୁ କିଂକର୍ତ୍ତବ୍ୟବିମୂଢ଼ କାବ୍ୟ ପୁରୁଷ ହାତ ଉଠିଲେ ହତ୍ୟା ପବନ ବହିଲେ ବାତ୍ୟାର ଶୀକାର ହେଉଛି ପ୍ରତି ମୁହୂର୍ତ୍ତରେ । ତା'ର ଜୀବନ ଜୀବନ ନୁହେଁ; ଜୀବନ୍ତ ମରଣ । ଅବିଶ୍ୱାସ ଅସନ୍ତୋଷର କାରାଗାର ସଂସାର । ଅନନ୍ତ ଅବଶୋଷ, ବିଷାକ୍ତ ପରିବେଶ ଭିତରେ କାବ୍ୟପୁରୁଷ ଅତିଷ୍ଠ । ନା' ଅଛି ତା' ପାଇଁ ନିରାପଦ ଆଶ୍ରୟ କି ଅଶେଷ ଅଭୟ । ଭୟଙ୍କର ଭୟର ଭଉଁରୀ ଭିତରେ କାବ୍ୟପୁରୁଷ ଜୀବନ ବଞ୍ଚୁଛି । ଏପରି ଏକ ତମସାଚ୍ଛନ୍ନ ଦୁନିଆଁକୁ ପାନ୍ଥଶାଳା ନକହି, ହସପିଟାଲ ବୋଲି କବି କବିତାରେ ପ୍ରକାଶ କରିଛନ୍ତି । ହସ୍ପିଟାଲରେ

କିଛି ଲୋକ ଯନ୍ତ୍ରଣାରେ ଅତିଷ୍ଠ ହେଉଛନ୍ତି ସିନା କିନ୍ତୁ ଦୁନିଆଁ ରୂପକ ହସ୍ପିଟାଲରେ ସମଗ୍ର ମଣିଷ ସମାଜ ରୋଗାଗ୍ରସ୍ଥ । କିଏ ମାନସିକ ଦୁଃଶ୍ଚିନ୍ତାରେ କାଳ ଅତିବାହିତ କରୁଛି ତ ଆଉ କିଏ ସବୁଥାଇ ଶାରିରୀକ ଯନ୍ତ୍ରଣା ଭୋଗ କରୁଛି । ଧନ ପଛରେ ଗୋଡେଇ ଗୋଡେଇ କିଏ ଦୁଃଖକୁ ବରଣ କରୁଛି ତ ଆଉ କିଏ ପେଟରେ ଓଦାକନା ପକେଇ କାଳାତିପାତ କରୁଛି । ତେଣୁ କବି ସୌରୀନ୍ଦ୍ର ବାରିକ 'ସନ୍ଧ୍ୟାହତ' କବିତାରେ ସାରା ଦୁନିଆଁଟିକୁ ଏକ ହସ୍ପିଟାଲ ବୋଲି ପ୍ରତିପାଦନ କରିଛନ୍ତି । ଅନେକ ପ୍ରକାର ରୋଗର ରୋଗି ଦୁନିଆଁ ରୂପକ ହସ୍ପିଟାଲରେ ଯନ୍ତ୍ରଣା ଭୋଗ କରୁଛନ୍ତି । କବିଙ୍କ ଭାଷାରେ:-

ସହରରେ କ୍ଳାନ୍ତ ସଂଧ୍ୟା, ପାଂଶୁଳ ଆଲୋକ
ଆକାଶରେ ଶେତ ଜହ୍ନ, ନିହାତି କରୁଣ
ଦୁନିଆଁଟା ପାନ୍ଥଶାଳା ନୁହେଁ, ହସ୍ପିଟାଲ ଗୋଟିଏ
ସେଠି ମଧ୍ୟ ବେଡ଼ ଖାଲି ନାହିଁ
ବଞ୍ଚିବାଟା ଏଠି ଖାଲି ମରିବାର ବିପରୀତ
ଆରମ୍ଭଟା ଯାହାକିଛି ହେଉନା କାହିଁକି
ଅଧାପୋଡ଼ା ସିଗାରେଟ୍ ପରି ପରିଣତି ଯାର ।୪।

ଅଧାପୋଡ଼ା ସିଗାରେଟ ପରି ଜୀବନ ଜଳୁଛି । କାବ୍ୟ ପୁରୁଷ ଚିହ୍ନା ପୃଥିବୀରେ ଅଚିହ୍ନା ରୋଗରେ ଆକ୍ରାନ୍ତ । ନା କିଏ ରୋଗ ଚିହ୍ନୁଛି କି ବଞ୍ଚିବାର ଆଶ୍ୱାସନା ଦେଉଛି ।

ମୃତ୍ୟୁ ମଣିଷର ଶେଷ ପରିଣତି ନୁହେଁ । ଏନ୍ତୁଡ଼ିରୁ ଶ୍ମଶାନ ଭିତରେ ଜୀବନ ସୀମାବଦ୍ଧ ନୁହେଁ । ଏକ ଅଦୃଶ୍ୟ ଅନନ୍ତ ସତ୍ତାରୁ ଜୀବନର ଆରମ୍ଭ ସେହିଁ ଅନନ୍ତରେ ମିଶିଯିବା ହିଁ ଜୀବନର ପରିଣତି । ଅନେକ ଯୁକ୍ତି ବାଢ଼ନ୍ତି ଜୀବନ ଅଳୀକ, କ୍ଷଣସ୍ଥାୟୀ । କବିଙ୍କ ଦୃଷ୍ଟିରେ ଜୀବନ ଆକସ୍ମିକ ଆରମ୍ଭ ଓ ଅନନ୍ତରେ ଶେଷ । ବ୍ୟକ୍ତି ମର, ବ୍ୟକ୍ତିତ୍ୱ ଅମର । ବ୍ୟକ୍ତି ଦୃଶ୍ୟ ବ୍ୟକ୍ତିତ୍ୱ ଅଦୃଶ୍ୟ । ବ୍ୟକ୍ତିକୁ ଅମର କରେ ବ୍ୟକ୍ତିତ୍ୱ । କବି ସୌରୀନ୍ଦ୍ର ବାରିକ୍ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ପରିଚୟ' କବିତାରେ ପ୍ରକାଶ କରିଛନ୍ତି:-

ହୋଇପାରେ ମୋ' ଅସ୍ତିତ୍ୱ କ୍ଷଣସ୍ଥାୟୀ
ଏନ୍ତୁଡ଼ି ଶାଳରୁ ଶ୍ମଶାନ ଭିତରେ ସୀମାବଦ୍ଧ
କିନ୍ତୁ ମୋ ଆଗମନୀ' ମୋ ପରିସମାପ୍ତି
ଅନନ୍ତରୁ, ଚିରନ୍ତନରୁ ।୫।

ସମାଜ ରୂପକ ସମୁଦ୍ରରେ ମୁଁ ଏକ ତରଙ୍ଗ । କ୍ଷଣିକ ହିଲ୍ଲୋଳ । କ୍ଷଣିକ ବିକାଶ ଭିତରେ ମୁଁ ବିଶ୍ୱସ୍ତ ପ୍ରତିନିଧି ସମୟର ଅନୁଭବର ଅପନ୍ତରାରେ ମୁଁ ଦଣ୍ଡାୟମାନ । ବିନ୍ଦୁ ସିନ୍ଧୁରେ ଲୀନ ହେବା ପରି ମୁଁ ମିଶି ଯିବି ସମୁଦ୍ରର କରାଳ ଗର୍ଭରେ । ତମେ ଚାହିଁଲେ ମୋତେ ମାପି ପାରିବନି; ମୋର ଚିହ୍ନ ବର୍ଣ୍ଣ ପାଇବନି । ବାସ୍ତବିକ କବିଙ୍କ ଦର୍ଶନ ସାର୍ବଜନୀନ । କବିଙ୍କ

କବିତାରେ:-

ମୋତେ ତୁମେ ମୁହୂର୍ତ୍ତେ ଦ୍ୱାରା ମାପି ପାର
ମାତ୍ର ଯେତେବେଳେ ସେ ଅସଂଖ୍ୟ ଫଣାରେ
ଗୋଟିଏ ଫଣା ହୋଇ ମିଶିଯିବ
ସମୁଦ୍ର ଭିତରେ ହଜିଯିବି
ସେତେବେଳେ ମୋତେ ମାପି ପାରିବନି ।୬।

ଆଜିର ଜୀବନ ବଞ୍ଚିବା ହେଉଛି ପ୍ରତାରଣାରେ ବଞ୍ଚିବା । ନିଜକୁ ବାରମ୍ବାର ଠକି ଠକି ବଞ୍ଚିବା । ସବୁ ଥିବା ଭିତରେକିଛି ନଥିଲାର ଭାବନେଇ ଜୀବନ ଧାରଣ କରିବା । ମନ୍ଦିର କଥା ପାଶୋରୀ ମଦିରା ଭିତରେ କାଳାତିପାତ କରୁଛି ମଣିଷ । ନାଲି ପାଣି ଭିତରେ ଭୁଲିଯାଏ ଜୀବନର ଦୁଃଖ ଓ ନୈରାଶ୍ୟ । ମଣିଷ ମୁଖା ପିନ୍ଧି ଅଭିନୟ କରେ ମୁଖା ତଳେ ହିଂସ୍ର ପଶୁଟିଏ ଚିତ୍କାର କରୁଥାଏ ।

କବି ସୌରୀନ୍ଦ୍ର ଯଥାର୍ଥରେ ପ୍ରକାଶ କରିଛନ୍ତି:-

ରଙ୍ଗୀନ ଢ଼ୋକ ଦେଇ ଦୁଃଖ ଭୁଲୁନଯେ
ଘଡ଼ିଏ ଅଚେତ ହୋଇ ନିଜକୁ ଠକୁଚ ।୭।

ରାତି ସ୍ୱପ୍ନ ଦେଇ ପାରେ ସତ ମାତ୍ର ତତଲା ଖରାର ଶୋଷକୁ କ'ଣ ଭୁଲି ହୁଏ ? ସେପରି ଏକ କବିତା 'ଖରା' ସୂଚାଇ ଦିଏ ଜୀବନର ସକଳ ଦୁଃସ୍ଥିତିକୁ । ସକାଳର କଅଁଳ କିରଣରେ ସମସ୍ତ ସମ୍ଭାବନା ଆସିପାରେ, ମାତ୍ର ମଧ୍ୟାହ୍ନ ଉତପ୍ତ ବାଲୁକା ରାଶିର ଶଯ୍ୟା ଉପରୁ ପଦ ଚିହ୍ନଟିକୁ ଏଡାଇ ଦିଆ ଯାଇ ନପାରେ ? ଜୀବନ କେବଳ ସୁଖର ଖେଳଘର ନୁହେଁ ଦୁଃଖର କାରାଗାର । ସୁଖ ଦୁଃଖର ପଶାଖେଳ ଭିତରେ ଜୀବନ ସ୍ୱପ୍ନ ଦେଖେ । ଉତପ୍ତ ପ୍ରଚଣ୍ଡ ରୌଦ୍ର ତାପ ଦେହ, ମନ, ବସୁଧା ସବୁକୁ ନିମିଷକେ ଜାଳି ପୋଡ଼ି ଛାରଖାର କରିଦେଇ ପାରେ । କବି ସୌରୀନ୍ଦ୍ର 'ଖରା' ଚିତ୍ରପଟ୍ଟକୁ କବିତାରେ ପ୍ରକାଶ କରିଛନ୍ତି:-

'ଏ ଖରା ବସୁଧା ଜାଳେ, ଦେହ ଜାଳେ
ଜାଳି ଦେଇ ଯାଏ ପୁଣି ଏ ମନ ଗହନ
ତଥାପି ଏ ମିଠା କେତେ, କେତେ ସତେ ମିଠା
ଜଳି ପୋଡ଼ି ଯିବା ସହ ବର୍ଷାର ସପନ ।

ଅଭିନୟ ସର୍ବସ୍ୱ ଜୀବନ । ଗଳିକନ୍ଦିର ମୋଡ଼ ଭିତରେ କାବ୍ୟ ପୁରୁଷ ଅଣନିଶ୍ୱାସୀ । ଜୀବନ୍ତ ମରଣ ଅବସ୍ଥାରେ ସାମାଜିକ ଜୀବନ ବଞ୍ଚୁଛି କାବ୍ୟ ପୁରୁଷ । କେବେଠାରୁ ନିଜ ପରିଚୟ ନିଜେ ହଜେଇ ବସିଛି ତା'ର ଇୟତା ନାହିଁ । ମହୁଲି ମଦର ନିଶାରେ କେତେବେଳେ ଆଖି ଯୋଡ଼ିକ ଢ଼ଳଢ଼ଳ ଆଉ କେବେ ଅନ୍ଧାରୁଆ ରାସ୍ତାରେ ଅସହାୟ ଅବସ୍ଥାରେ କତରାଲଗା ହୋଇ ପଡିଛି । ବଞ୍ଚିବା ନାମରେ ଜୀବନକୁ ଶୋଷଣ କରି ଚାଲିଛି । ସଂନ୍ଧ୍ୟା ଆହତ ।

ଆକାଶର ଶେତା ଜହ୍ନ କରୁଣ ଓ ବିବର୍ଣ୍ଣ । ବଞ୍ଚିବାର ଉତ୍କଟ ମୋହ ଭିତରେ ଯେମିତି ନମରି ପାରିବାର ଅଭିପ୍ରାୟ । ଧୂଳି ଧୂସରିତ ଜୀବନ । ଅଧାଛାଇ ଅଧା ଆଲୁଅ ପରି ସବୁକିଛି ଯେମିତି ଅସମାପ୍ତ ଓ ଅସଂପୂର୍ଣ୍ଣ । ଏହି ବଞ୍ଚିବାର ଶୈଳୀପ୍ରତି କବି ସୌରୀନ୍ଦ୍ର ବାରିକଙ୍କ ତୀକ୍ଷ୍ଣ ଦୃଷ୍ଟି । ଜୀବନ ଅଛି କିନ୍ତୁ ଆନନ୍ଦ ନାହିଁ ? ଆନନ୍ଦକୁ ହରିଲୁଟ କରିଛି ଦୁଶ୍ଚିନ୍ତା ମନସ୍ତାପ । ଜୀବନ, ଜୀବନ ପରି ବଞ୍ଚୁନାହିଁ । ଯନ୍ତ୍ରଚାଳିତ କଣ୍ଢେଇ ଆଜିର ଜୀବନ । ଘର ଅଛି ବିଶ୍ରାମ ନାହିଁ, ପୁସ୍ତକ ଅଛି ସାଧନା ନାହିଁ, ଫୁଲ ଅଛି ସୁବାସ ନାହିଁ, ନୌକା ଅଛି ନାଉରୀ ନାହିଁ, କାମନା ଅଛି କାମ ପ୍ରତି ମନ ନାହିଁ, ସବୁଠି ସବୁ ଅଛି ନାହିଁର ଖେଳ । ମନ ଖାଁ ଖାଁରେ ପୂର୍ଣ୍ଣ । କାମନା ବାସନାର ଜାଲରେ ଛନ୍ଦି ହୋଇ ପଡିଛି ଜୀବନ । ମନ ବିବେକର ଦ୍ୱନ୍ଦ୍ୱ ପ୍ରତି ମୁହୂର୍ତ୍ତରେ ଜୀବନକୁ ବାଟ କଢ଼ାଉଛି । ଆଶଙ୍କା ଅନୁଶୋଚନା ଭିତରେ କାବ୍ୟ ପୁରୁଷ କିଂ କର୍ତ୍ତବ୍ୟ ବିମୂଢ଼ । ମରିଚୀକା ପଛରେ ଜୀବନ ଧାଉଁଛି ନା ଶୋଷ ମେଣ୍ଟୁଛି ନା ଜଳ ମିଳୁଛି । କବି ସୌରୀନ୍ଦ୍ର ଯଥାର୍ଥରେ ପ୍ରକାଶ କରିଛନ୍ତି:-

ଯେଉଁଠି ଅନ୍ଧାର ଅସଂଖ୍ୟ ଚେମେଣି
ଯୁଗ ଯୁଗ ଧରି ବସା ବାନ୍ଧିଛନ୍ତି
ପୁଣି ଅସଂଖ୍ୟ ବୁଢ଼ିଆଣୀ
ଯୁଗ ଯୁଗ ଧରି ଜାଲ ବୁଣୁଛନ୍ତି ।୯।

ସୁଖ ଦୁଃଖ ଭିତରେ କାବ୍ୟ ପୁରୁଷର ବ୍ୟକ୍ତିତ୍ୱଟି ଏକ ସାଲିସ । ସବୁ ଡହ ଡହ ଦୁଃଖ ଭିତରେତା' ଜୀବନର ସ୍ୱପ୍ନ । ନପାଇବା ଭିତରେ ପାଇବା ପାଇଁ ତା'ର ଅଦମ୍ୟ ଲାଳସା । ଆକାଂକ୍ଷା ହିଁ ଜୀବନ ବଞ୍ଚିବାର ଖୋରାପ ଯୋଗାଏ । ସବୁ ନାହିଁ ନାହିଁ ଭିତରେ ହଁ ଟିକକ ଜୀବନ । ଅବାରିତ ଆଷାଢ଼ର ବର୍ଷା ପରି ଲୁହ ଭିତରେ ସବୁଜ ସ୍ୱପ୍ନ; ବିଷ ଭିତରେ ଅମୃତ କାବ୍ୟ ପୁରୁଷର ଆତ୍ମୋପଲବ୍ଧି । ଜୀବନକୁ ହଜେଇ ପୁନଶ୍ଚ ଖୋଜିବାର ପ୍ରବଳ ଇଛା । ଆଜିର ଜୀବନରେ ପିଇ ପିଇ ଶେଷରେ ମରିଯିବାର ଉଦ୍ୟତ ଅଭିପ୍ରାୟ ନୁହେଁ; ମରି ମରି ଘଡ଼ିଏ ବଞ୍ଚିବା ହିଁ ତାଙ୍କ କବିତାର ପ୍ରାଣ କେନ୍ଦ୍ର । କାନ୍ଦି କାନ୍ଦି ଟିକିଏ ହସିବା କାବ୍ୟ ପୁରୁଷର ଆଜିର ବଞ୍ଚିବା । କବି କବିତାରେ ଯଥାର୍ଥରେ ପ୍ରକାଶ କରିଛନ୍ତି;-

ପୁରୁଣା ଛବିରେ
ଅଭିନେତ୍ରୀର ଅଭିନୟ ପରି
ମରିବା ପରେ ବି ତୁମକୁ ଜୀବନ୍ତ ମୁଁ ଦେଖେ ।୧୦

ପୂର୍ବର ବାସି ପଖାଳ ଭଙ୍ଗା ଚାଳ କାବ୍ୟ ପୁରୁଷର ନାହିଁ; ଗାଁର ଧୂଳି ଧୂସର ମାଟି ଘର ଛାଡ଼ି ସହରର ଇଟା ବାଲି ସିମେଣ୍ଟର କଂକ୍ରିଟ ଜଙ୍ଗଲରେ ବାସ କରୁଛି । ବାପ ଅଜା ଅମଳର ଭିଟା ମାଟିରେ ବିଲୁଆ ଡେଉଁଛି । ଅଚିହ୍ନା ଅନାବନା ଗଛଗୁଡ଼ିକ ଗାଁର ପରିବେଶକୁ ସମୃଦ୍ଧ କରିଛି କେବଳ ଦୀନ ମଜୁରିଆ, ମୂଲିଆ, ବିଧବା ଲୋକର ପରିବାରକୁ କୋଳରେ ଧରି ।

ସହରରେ କାବ୍ୟ ପୁରୁଷ ବାବୁ ବୋଲାଇଛି ସତ, କିନ୍ତୁ ପ୍ରାଣରେତା'ର ପୂର୍ବର ତୃପ୍ତି ନାହିଁ । ଚର୍ତୁଦିଗ ଖାଁ ଖାଁ ତୃଷା । କଂକ୍ରିଟ ମରୁର ଯେମିତି ଏକ ଶୀତଳ ମରୁଦ୍ୱୀପ । କାରାଗାରରେ ବନ୍ଦୀ ଜୀବନ ଯାପନ କଲାପରି କାବ୍ୟ ପୁରୁଷ କାଳାତିପାତ କରୁଛି । କାହା ସହିତ କାହାର ସଂପର୍କ ଅଛି ନା ଅଭାବ ଅସୁବିଧାରେ ଛିଡା ହୋଇ ହିମତ ଦେବାର ଅଛି । ତା' ପାଖରେ ଉନ୍ମାଦନା ନାହିଁ କି ଛଇଳ ଚପଳ ତରଙ୍ଗ ନାହିଁ କେବଳ ନିଃସଙ୍ଗତାର ଗୋଟେ କରୁଣ ଓ ମଳିନ ଜୀବନ । ନିଜ ବୋଝକୁ ନିଜେ ବୋହି ନେବାର ଏକଲା ମଣିଷ । ସଂପର୍କ ନଥାଇ ପ୍ରେମ, ପ୍ରତୀକ୍ଷା ନଥାଇ ସ୍ୱପ୍ନ ଯେମିତି କାବ୍ୟପୁରୁଷ ଜୀବନର ଏକ ଅଙ୍ଗ । ଜୀବନ ସଂଗ୍ରାମର ଏକଲା ସୈନିକ ଆଜିର ମଣିଷ । ପଛରୁ ଅସ୍ତ୍ର ଓ ସାହସ ଦେବାର କିଏ ଅଛି ନା ଶତ୍ରୁ ସହ ପାଇଁ ଅଣ୍ଟା ଭିଡ଼ିବାକୁ କିଏ ଅଛି । ମରିବା, ମାରିବା ଖଣ୍ଡାଧାରରେ ବାଟ ଚାଲିବା ତା'ର ଭାଗ୍ୟ । 'ଏକା ଏକା ଏକଲବ୍ୟ' କବିତାରେ କବି ଜୀବନକୁ ବୁଝିବାର ଚେଷ୍ଟା କରିଛନ୍ତି । ଏହା ଆଜିର ମଣିଷର ଅନ୍ତଦୃଷ୍ଟିକୁ ସରଳ କରିବାର ଏକ ପ୍ରକ୍ରିୟା । ବିଶିଷ୍ଟ କବି ମନୀଷୀ ମାଲାର୍ମେଙ୍କେ 'Simplifies the world' । ଏ 'ପୃଥିବୀକୁ ଏ ଜୀବନକୁ ଅଧିକ ସରଳ କରିବାର ଅର୍ଥ କ'ଣ ? ଏହାର ମାନେ ନିଜଠାରେ ନିଜକୁ ଠକିବା ଆଉ ମରଣର ଶୂନ୍ୟପାତ୍ର ଉପରେ ଅନ୍ଧ ଆଶାର ଗରଳ ଢ଼ାଳିବା ସଂଗେ ସମାନ । କବି ସୌରୀନ୍ଦ୍ର ବାରିକ୍ ତାଙ୍କ କବିତାରେ ନିଜଭାଷାରେ ପ୍ରକାଶ କରିଛନ୍ତି;-

ଏ ଯେମିତି / ଅତୀତର ପୂର୍ଣ୍ଣତା ପାଇଁ
ଶୂନ୍ୟ ବର୍ତ୍ତମାନ ଖାଲି
ବାହୁନି କାନ୍ଦୁଛି ।୧୧;

ସମଗ୍ର ସଂସାର କବି ଦୃଷ୍ଟିରେ ଯେପରି ପ୍ରତିବିମ୍ବିତ ହୋଇଛି । ସେହିପରି କବି ଭାବରେ କବିତାରେ ଉପସ୍ଥାପନ କରିଛନ୍ତି । ଜଣର ଦୃଷ୍ଟି ଗଣର ଦୃଷ୍ଟିରେ ପରିଣତ ହୋଇଛି । କବିର ଜୀବନ ଦର୍ଶନ ପ୍ରତିଫଳିତ ହୋଇଛି ସାଧାରଣ ଜନମାନସରେ । ସତେ ଯେପରି ମନେ ହୁଏ କବି ପାଠକର ମରମ କଥାକୁ କବିତାରେ ଉପସ୍ଥାପନ କରି କବିତାର କୋଣାର୍କ ଗଢ଼ିଛନ୍ତି । କବିଙ୍କ କବିତା ଦର୍ପଣରେ ସାଧାରଣ ଜନ ଜୀବନର ଛବି ପ୍ରତିଫଳିତ କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ ।

## (ଖ) ସମୟ ଚେତନା:

ସମୟ ଅନନ୍ତ । ଜୀବନ ସୀମିତ । ସଂକ୍ଷିପ୍ତ ଜୀବନ ଭିତରେ ସମୟକୁ ସଦୁପଯୋଗ କରିବା ମଣିଷର କର୍ତ୍ତବ୍ୟ । ସମୟ ସଦା ଚଳଚଞ୍ଚଳ ଗତିଶୀଳ । ସଦା ଉଜ୍ଜ୍ୱଳ ସଦା ସର୍ବଦା ଗତିଶୀଳ ଜୀବନକୁ ନିୟନ୍ତ୍ରଣ କରେ ସମୟ । କେଉଁ ସମୟରେ କେଉଁ କାର୍ଯ୍ୟ କରଣୀୟ ତା'ର ବିବରଣୀ ପ୍ରଦାନ କରେ ସମୟ । ଦିନରାତିର ରୂପ ନେଇ ସେ ଆସେ, ନଟୁପରି ଭ୍ରମଣ କରେ । ଧନୀ, ନିର୍ଦ୍ଧନ, ଜାତି, ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଆଶ୍ରୟ ଦିଏ

ତା'ର କୋଳରେ । ସମୟ ସବୁର ଉତ୍ତରଦାତା ଓ ସବୁଠାରୁ ବଳବାନ । ଚିର ସବୁଜ ସମୟର ପ୍ରଭାବ ଜୀବନ ଉପରେ ଅପ୍ରତିହତ । ସମୟ ସିନା ଦୁଇଭାଗ କିନ୍ତୁ ଜୀବନକୁ ଚାରିଭାଗ କରି କର୍ମତତ୍ପର କରେ । କର୍ମର ତାଲିକା ପ୍ରସ୍ତୁତ କରି ଜୀବନକୁ ପଳ ପଳ କରି ଶୋଷଣ କରେ । ଶୈଶବ, କୈଶୋର, ଯୌବନ, ବାର୍ଦ୍ଧକ୍ୟ ଏପରି ଚାରି ଭାଗରେ ବିଭକ୍ତ କରି ଜୀବନକୁ ସମୟ ଋଦ୍ଧିମନ୍ତ କରେ । ଜୀବନର ଲୀଳଖେଳା ଭିତରେ ସମୟ ତା'ର ଖସଡ଼ା ପ୍ରସ୍ତୁତ କରି ମଣିଷର ହାତରେ ଗୁଞ୍ଜିଦିଏ । ସମୟ ସ୍ରୋତରେ ଜୀବନ ହୁଲିତଙ୍ଗା ପରି ଆଗକୁ ଆଗକୁ ଗତିକରେ କେତେବେଳେ ଭଉଁରୀ ଭିତରେ ପଡ଼ି ଅଣନିଃଶ୍ୱାସୀ ହୁଏ ତ ଆଉ କେତେବେଳେ ମନଫୁଲାଣିଆ ଗୀତ ଗାଇ ଗାଇ ସଂସାରକୁ ସୁଖର ସ୍ଥାନ ବୋଲି ଅନୁଭବ କରେ । ଚିରାଚରିତ ଦୁଃଖ ଭିତରେ ସୁଖର ଅନ୍ୱେଷଣ କାବ୍ୟ ପୁରୁଷର ଜୀବନ ବ୍ରତ । ସୁବିସ୍ତୃତ ସମୟ କୋଳରେ ଯଶ ଅପଯଶ, ଧନ, ଦୌଲତ, ବିଜୟ ଉଲ୍ଲାସ, କୀର୍ତ୍ତି ଅପକୀର୍ତ୍ତୀ ସବୁକୁ ଛାଡ଼ି ଦେଇ ଶେଷ ପ୍ରଶ୍ୱାସ ତ୍ୟାଗ କରେ ମଣିଷ । ଜୀବନର ଅବସାନ ପରେ ସମୟ ତା'ର ପୁରୁଷକାରକୁ ନିର୍ଣ୍ଣୟ କରି ଯାହା ସତ୍ୟ ଓ ଶାଶ୍ୱତ ତାହାକୁ ସମାଜ ଉଦ୍ଦେଶ୍ୟରେ ସମର୍ପଣ କରେ । ଜୀବନ ସମୟର ମହାର୍ଘ ଅବଦାନକୁ ସର୍ବଦା ସ୍ମରଣ କରେ ସମୟ । ପାର୍ଥିବ ଜୀବନକୁ ସମୟ ସିନା ଗ୍ରାସକରେ କିନ୍ତୁ ମଣିଷର କୃତିକୁ ଉଦାର ହୃଦୟରେ ସାଇତି ରଖେ କାଳକାଳକୁ ।

ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ଏଇ ତିନି କାଳ ମଧ୍ୟରେ ଆମେ ସାଧାରଣତଃ ଜଗତର ବିବିଧ ଗତି ଓ ଧାରାକୁ ମାପି ବସିଥାଉ । ଯାହା ଅତୀତରେ ଘଟିଯାଇଛି ତାହା ବର୍ତ୍ତମାନ ପାଇଁ ଆମ ନିକଟରେ ଏବଂ ବାର୍ତ୍ତମାନିକ ପରିପ୍ରେକ୍ଷୀରେ ଆମେ ଏକ ସୂକ୍ଷ୍ମ ମାନସିକତା ବିଚାରଶୀଳତା ଓ ଅନୁସନ୍ଧିତ୍ସା ନେଇ ଭବିଷ୍ୟତର ରୂପାୟନ ଓ ବାସ୍ତବାୟନ ନିମିତ୍ତ ସଚେଷ୍ଟ ହୋଇଥାଉ ।୧ ୨।

ଏକ ଉତ୍ତରିତ ମାନସିକ ସ୍ଥିତି ଓ ବିସ୍ତୃତି ଦିଗ୍‌ବଳୟ ନେଇ ଆମେ ଯଦିସମୟକୁ ନିରୀକ୍ଷଣ କରୁ, ତେବେ ଆମେ ଆଧୁନିକ କାବ୍ୟଗୁରୁ ଟି.ଏସ୍ ଇଲିୟଟ୍‌ଙ୍କ ସହିତ ଏକମତ ହେବୁ ଯେ:-

Time present and time past
Are both perhaps present in time future,
And time future contained in time-past
If all time is eternally present
All time is unredeemable ।୧ ୩।

କବି ସୌରୀନ୍ଦ୍ରଙ୍କ କବିତାରେ ସମୟଚେତନ ବା କାଳଚେତନା ଏକ ଚିତ୍ରପଟ୍ଟ ନିର୍ମାଣ କରିଛି । ଯେଉଁ ଚିତ୍ରପଟ୍ଟରେ ସମୟର ଛବି ପ୍ରତିଫଳିତ ହୋଇଛି । ସମୟ ସବୁକୁ ପୁରୁଣା କରିଦିଏ । ପୁରୁଣା ଭିତରୁ ପୁନଶ୍ଚ ନୂଆର ଆବିର୍ଭାବ ହୁଏ । ନୂଆ ପୁରୁଣାର ଖେଳ ଭିତରେ

ସମୟ ଛିଦ୍ର କୁମ୍ଭରୁ ପାଣି ଝରିଲା ପରି ସରିଯାଏ । ଜୀବନ ଝାଉଁଳେ ମଣିଷ ମରେ । ରାତି ଆସେ ରାତିପାଇଁ କିନ୍ତୁ ରତି ନାହିଁ କି ଆଖିରେ ନିଦ ନାହିଁ । ଜହ୍ନକୁ ଆବୋରିଚି ମେଘ । ପ୍ରେମକୁ ଆବୋରିଚି ଦୁଶ୍ଚିନ୍ତା । ରତି ଲଗ୍ନା ରାତି ପ୍ରତି ଆକର୍ଷଣ ଅଛି ନା ଅନୁରାଗ ଅଛି । ଅମୀୟ ପ୍ରଦାନ କରୁଥିବା ଜହ୍ନ ପାଂଶୁଳ ବର୍ଣ୍ଣ ଧାରଣ କରିଛି । ଏପରି ଏକ ଅପ୍ରୀତିକର ପରିବେଶ କାବ୍ୟ ପୁରୁଷକୁ ଚକିତ କରିଛି । ସମୟେ ସମୟେ ମାନସିକ ଭାରସାମ୍ୟ ହରେଇ ବସୁଛି କାବ୍ୟପୁରୁଷ । ସମୟର ଖେଳ ଭିତରେ କାବ୍ୟ ପୁରୁଷକାଠ କଣ୍ଢେଇ ପରି ନୀରବ ଓ ସ୍ଥାଣୁ । ସମୟ ସମ୍ମୁଖରେ କାବ୍ୟପୁରୁଷର ତୁଣ୍ଡ ଖୋଲିବାର ଅଧିକାର ଅଛି ନା ଜୀବନ ସଂପର୍କରେ ଗୁହାରି କରିବାର ଅବକାଶ ଅଛି । କବି ନିଜର ମାନସିକ ଅବସ୍ଥାକୁ ସମୟ ଚେତନା ମାଧ୍ୟମରେ 'ସାମାନ୍ୟ କଥନ' କବିତା ସଂକଳନରେ 'ବିନିଦ୍ର ମୁଁ' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

'ପାଉଁଶିଆ ଜହ୍ନ ଆଲୁଅରେ
ରୁଗ୍ଣ, ବୟସ୍କା ବାରାଙ୍ଗନା ପରି
ଏ ରାତି ନିଜକୁ ସଜାଇ ଥିଲା
ଆକର୍ଷଣ ନା ବିତୃଷ୍ଣା' ।୧୪।

ବେଳେବେଳେ ଏପରି ସମୟ ଆସେ ନା ସହି ହୁଏ ନା କହିହୁଏ । ରାତିରେ ଆଖିକୁ ନିଦ ଆସେନାହିଁ । ମାନସିକ ରୋଗ ଗ୍ରସ୍ତ ରୋଗୀ ପରି କାବ୍ୟପୁରୁଷ ଶେଯରେ ଛଟପଟ ହୁଏ ଅକୁହା ଯନ୍ତ୍ରଣାରେ । ଏକ ରାତି ସାତ ରାତି ହୁଏ । ରାତି ପାହି ଦିନ ହୁଏ ଭାବନା ସବୁ ଭାବନାରେ ରହିଯାଏ । ସାରାରାତି ଅନିଦ୍ରା ରହି ଦିନର ବାଦୁଡ଼ି ପରି ଗଛ ଡାଳରେ ଝୁଲିବା ଛଡା କ'ଣ ଅଛି ତା ଭାଗ୍ୟରେ । ଦିନର ଆଲୋକକୁ ଦେଖିପାରେନାହିଁ ବାଦୁଡ଼ି, ରାତିରେ ଖାଦ୍ୟ ସଂଗ୍ରହ କରେ । ଯଦି ରାତି ତା' ପାଇଁ ବାମ ହେଲା ତେବେ ଗଛ ଡାଳରେ ଅନାହାରରେ ଝୁଲିବା ତାର ଭାଗ୍ୟ । କବି ଚମତ୍କାର ଭାବରେ ଚିତ୍ରକଳ୍ପ ମାଧ୍ୟମରେ ସମୟ ଚେତନାକୁ କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

ଏଇ ରାତିରେ ଶୁଣି ଶୁଣି ନିଜ ଦୀର୍ଘ ଶ୍ୱାସ
ରାତିଏ ନିଦ ମୁଁ ସଞ୍ଚି ନେଲି
ପୁଣି ଗଣିଗଣି ସମୟର ଟାପୁ
ଅନୁଭବ କଲି
ଗଛ ଡାଳରେ ଦିନର ବାଦୁଡ଼ି ପରି
ସମୟ କେମିତି ଖାଲି ଝୁଲି ରହେ ।୧୫।

ଅନ୍ଧକାର ଅନନ୍ତ । ଆଲୋକ ସୀମିତ । ଅନନ୍ତ ଅନ୍ଧାର ଭିତରେ ଆଲୋକର କ୍ଷଣିକ ସତ୍ତାକୁ ଅନୁଭବ କରିବା ଜୀବନ ପକ୍ଷେ କଷ୍ଟକର ବ୍ୟାପାର । ସବୁର ଅନ୍ଧକାର ମୂକସାକ୍ଷୀ । ଆଖି ପିଛୁଳାକେ ଆଲୋକ ଜୀବନ ଦୀପର ପ୍ରତୀତି । ରାତିର ରଜନୀଗନ୍ଧା ସକାଳକୁ ବାସି ।

ଅସୁମାରି ସ୍ୱପ୍ନଭିଜା ରାତି ସକାଳକୁ କେବଳ ସ୍ମୃତି । ସବୁ ସୁବର୍ଣ୍ଣ ସ୍ୱପ୍ନ ରାତି ପାହିଲା ବେଳକୁ ପାଉଁଶରେ ପରିଣତ ହୁଏ । ଆଶା ଆଶାରେ ରହିଯାଏ, ସ୍ୱପ୍ନ ସବୁ ଦୂର ଦିଗ୍‌ବଳୟରେ ମୁହଁ ଛପା ଦିଅନ୍ତି । ସକାଳର ଦୈନନ୍ଦିନ କାମ ଆରମ୍ଭ ବେଳକୁ ସ୍ୱପ୍ନ ଥାଏ ନା କାମନା ଥାଏ, ଚିରାଚରିତ ଭାବରେ ଦିନର ତାଲିକା ଅନୁଯାୟୀ କାମ ଆରମ୍ଭ ହୁଏ । ବିହିତ ଭାଗ୍ୟର ନିର୍ଦ୍ଦେଶରେ ସବୁକିଛି ପୂର୍ବ ନିର୍ଦ୍ଧାରିତ କହି କପାଳରେ କର ମାରିବାକୁ ହୁଏ । କବି ଯଥାର୍ଥରେ ପ୍ରକାଶ କରିଛନ୍ତି;-

ଏଇ ରାତିରେ ଖୋଜିଥିଲି ସ୍ୱପ୍ନର ରଜନୀ ଗନ୍ଧା
କିନ୍ତୁ ବନ୍ଧ୍ୟା ରାତିର ଅନ୍ଧାର ଅଣ୍ଡାଳି
ବିନିଦ୍ର ମୁଁ ସକାଳେ ପାଇଲି
ବାଦୁଡ଼ି ଖିଆ ଫଳଟିଏ ଖାଲି ।୧୬।

ଜୀବନ ପାଇଁ ସମୟ ବଡ଼ ଅସହାୟ । କାଳ ନିଷ୍ଠୁର । ସମୟ ଜୀବନର ଆଶାକୁ ଫଳବତୀ ହେବାକୁ ସୁଯୋଗ ଦିଏନି । ନିତ୍ୟନିୟତ ସମୟ ପ୍ରଦକ୍ଷୀଣ କରେ, ତା'ର ଭଉଁରୀ ଭିତରେ କେତେ ଜୀବନ ଆରମ୍ଭ ହୁଏ ଆଉ କେତେ ଜୀବନ ଶେଷ ହୁଏ । ଆରମ୍ଭ ଶେଷ ଓ ଜନ୍ମ ମୃତ୍ୟୁର ଏକଂ ମାତ୍ର ଦର୍ଶନ ସମୟ । ସବୁ ଦୃଷ୍ଟିର ଊର୍ଦ୍ଧ୍ୱରେ ତା'ର ଗତି, ସବୁ ନିୟମର ଶୀର୍ଷରେ ତା'ର ସ୍ଥିତି । ଗତି, ସ୍ଥିତି, ପ୍ରଗତିର ନିୟନ୍ତକ ସମୟ । ବିକାଶ, ବିଲୟର କାରଣ ଉତ୍‌ଥାନ ପତନର ଉଦାହରଣ ସମୟ । ଦିବା ସ୍ୱପ୍ନରେ କୌଣସି ମୂଲ୍ୟ ନଥାଏ । ବେପରୁଆ କାବ୍ୟପୁରୁଷର ଜୀବନ । ସବୁ ବର୍ତ୍ତମାନ ଦିନେ ଭବିଷ୍ୟତ ଥିଲା, ସବୁ ବର୍ତ୍ତମାନ ଦିନେ ଅତୀତ ହୋଇଯିବ ଏହା ହିଁ କାଳର ଅବଧାରିତ ନିୟତି । ସମୟ ଚେତନା ଭିତରେ କବି ବର୍ତ୍ତମାନକୁ ପ୍ରକାଶ କରିଛନ୍ତି କବିତାରେ । ବର୍ତ୍ତମାନ ସର୍ବସ୍ୱ ଜୀବନ ବଞ୍ଚୁଥିବା କବିଙ୍କର ମୁହୂର୍ତ୍ତ କିପରି ମୁମୂର୍ଷୁ ପାଲଟିଛି ତାର ଚିତ୍ର କବି 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ଏଇ ମୋର ପୃଥିବୀ' କବିତାରେ ପ୍ରକାଶ କରିଛନ୍ତି ।

'ଏଇ ମୋର ପୃଥିବୀ । ଦିବା ସ୍ୱପ୍ନ ପରି ବିପର୍ଯ୍ୟସ୍ତ
ଟେବୁଲ ଉପରେ କେତୋଟି ବହି, ଦର ଭୁଲା
ସ୍ମୃତି ପରି ଦଗ୍‌ଧ ଖଟ ତଳେ କିଛି ଖଣ୍ଡିଆ ସିଗାରେଟ୍ ।
ଥାକମରା ଖବର କାଗଜ ଭିତରେ
ସମୟକୁ ଚାପି ଧରିବାର ଆପ୍ରାଣ ଚେଷ୍ଟା ପୁଣି
ସ୍ନୋ, ପାଉଡ଼ର ଆଉ କ୍ୟାଲେଣ୍ଡରର ନଗ୍ନ ଛବିରେ ବର୍ତ୍ତମାନକୁ ପାଇବାର ଅକ୍ଲାନ୍ତ ସାଧନା ।୧୭।

ଆଖୁ ଛେଚା ପରି ଜୀବନକୁ ଝୁଣି ଚାଲିଛି ସମୟ । କବିଙ୍କ ବର୍ତ୍ତମାନ ସର୍ବସ୍ୱ ଜୀବନ ବଡ଼ ଅସହାୟ ଓ କରୁଣ । ମରିମରି ପୁନଶ୍ଚ ଜୀବନ ଧରିବା ତାଙ୍କ ନିୟତି । ରାସ୍ତା କଡ଼ର ଅନାଥ ଶିଶୁ ପରି ତାଙ୍କ ବର୍ତ୍ତମାନର ପୃଥିବୀ, ପଥରତଳର ଦୁବ ଘାସ ପରି ତାଙ୍କ ବର୍ତ୍ତମାନ ।

ନାହିଁ ନଥିବା ଦୁଃଖର ନଦୀରେ କବି ଉବୁଟୁବୁ । ଫୁଟା ଡଙ୍ଗାର ପଝାରି କବି ନା ନଦୀ ପାର ହୋଇ ପାରୁଛନ୍ତି ନା ବୁଡ଼ି ଜୀବନ ଧରି ପାରୁଛନ୍ତି । ହତାଶ ଓ ନୈରାଶ୍ୟ ଭିତରେ ଜୀବନ ବାରମ୍ବାର ଉତ୍‌ଥାନକୁ ଆପଣାର କରୁଛି ବ୍ୟଥାକୁ ହବିଷ କରି ବାଟ ଧରୁଛି । ପଥ ଅସରନ୍ତି ଓ ଦୁର୍ଗମ ; ଜଣା ନାହିଁ ସେ ରାସ୍ତାରେ କ'ଣ ଅଛି ? ତଥାପି କାବ୍ୟ ପୁରୁଷ ସେ ପଥର ପଥିକ । କବି ସୌରୀନ୍ଦ୍ର କବିତାରେ ପ୍ରକାଶ କରିଛନ୍ତି;-

ଏ ମୋର ପୃଥିବୀ । ରାସ୍ତା କଡର ଅନାଥ ପରି
ବଞ୍ଚିଛି ଖାଲି ମରି ପାରିନି ବୋଲି କିମ୍ବା ପଥର ତଳ
ଦୁବ ଘାସ ପରି ଗତ ଆଉ ଆଗତ ମଝିରେ ଚାପି ହୋଇ
ବଞ୍ଚିଛି ଆଶାରଖି ଶୂନ୍ୟତାର ପୂର୍ଣ୍ଣତା ।୧୮।

'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ଘଡ଼ି' ଏକ ଚମତ୍କାର କବିତା । କବି 'ଘଡ଼ି' ଭିତରେ ଅନୁଭବ କରିଛନ୍ତି ସମୟର ଅବିନାଶୀ ସ୍ରୋତକୁ । କାଳ ପାଖରେ ଅସହାୟ ହୋଇ ପଡ଼ିବା ମଣିଷର ସ୍ୱାଭାବିକତା । ତଥାପି କବି ସମୟର ସ୍ପନ୍ଦନକୁ ଅସ୍ୱୀକାର କରି ପାରନ୍ତି ନାହିଁ । ସେହି ସମୟର ପ୍ରବାହରୁ ସେ ପାଆନ୍ତି 'ବୁବୁ'କୁ । ମୃତ୍ୟୁ ଯେତିକି ନିଷ୍ଠୁର, ଜୀବନଟିଏର ଆବିର୍ଭାବ ସେତିକି ଆନନ୍ଦଦାୟକ ମଧ୍ୟ ; ସୌରୀନ୍ଦ୍ର ଏହି ଜୀବନ ବଞ୍ଚିବାରୁ ବିରତ ହୋଇ ପାରନ୍ତି ନାହିଁ । ତଥାପି ତାକୁ ମୁଁ ପିନ୍ଧେ/ ତାଙ୍କ ସୁନା ହାତରେ ବାନ୍ଧି ଦିଏ । (ଘଡ଼ି) । 'ଚଷମା' କବିତାରେ ସେଇ ସମୟ ସଚେତନତା । ପ୍ରଥମେ ଚଷମା ଆସିଲା ପରେ ଦାନ୍ତ ବି ବଦଳିବ । ପତ୍ନୀ ଦୁଃଖ ମିଶାହସ ହସି କହନ୍ତି ତା' ପରେ ବାନ୍ଧିବ ଧାଡ଼ି ଡେଣ୍ଟିଷ୍ଟ୍ ପାଖରେ । କାଳର କ୍ରୁରତା ପାଖରେ ମଣିଷର ଅସହାୟତା ହିଁ ଏକ ପ୍ରକାର ସତ୍ୟ ! ତଥାପି ଜୀବନ ଅଟକି ଯିବ ନାହିଁ । ପ୍ରଥମେ ଦୀର୍ଘ ପଥ ଚାଲିବାର କ୍ଳାନ୍ତି ଆସିପାରେ ହେଲେ ନୂଆଦେଶ ଦେଖିବାର ଶାନ୍ତିରେଜୀବନର ଆନନ୍ଦ ଖୋଜିବାକୁ ହେବ । 'ପୁରୁଣା ସୁଟ' କବିତାରେ କବିଙ୍କ କାଳ ସଚେତନତା ଓ ଅତୀତ ଚାରିତା ମୁଖ୍ୟ । ସ୍ମୃତିକୁ ଆଶ୍ରାକରି ବଞ୍ଚିବା ଯେପରି ତାଙ୍କର ଭାଗ୍ୟ । କାଳ ନିକଟରେ ମଣିଷ ବଡ଼ କରୁଣ ଭାବରେ ଉପାୟ ଶୂନ୍ୟ । କବିତା ଗୁଡ଼ିକରେ ମଣିଷର ଅସହାୟତା ସୂଚୀତ । କାଳର କ୍ରୁରତା ସମ୍ମୁଖରେ କୌଣସି ମତେ ଉପାୟ ଶୂନ୍ୟ ହୋଇ ବଞ୍ଚିବା ତା'ର ନିୟତି । କାବ୍ୟପୁରୁଷ ନିଜ ଭିତରେ ନିହାତି ନିର୍ଜନ ଓ ଅସହାୟ ।୧୯।

କାବ୍ୟ ପୁରୁଷ ଜୀବନକୁ ସମୟ କେତେବେଳେ କରିଛି ସାର୍ଥକ ତ ଆଉ କେତେବେଳେ କରିଛି ନିରର୍ଥକ । ସମୟ କେବେ ଛବିଳ ଆଲୁଅ ପରି ଲୁଚାକାଳି ଖେଳି ଚାଲି ଯାଇଛି ତ କେବେ ଅଜଗର ପରି ସ୍ଥାଣୁ ପାଲଟିଛି । କର୍ମ ତତ୍ପର ଜୀବନ ସାର୍ଥକ । କର୍ମ ବିମୁଖ ଜୀବନ ଅନ୍ତଃସାର ଶୂନ୍ୟ । ସମୟ ଓ ଚିରାଚରିତ ଘଟଣା ପ୍ରବାହ କାବ୍ୟ ପୁରୁଷର ଜୀବନ ବଞ୍ଚିବାକୁ ଦେଇଛି ରସଦ ।

## (ଗ) ମୃତ୍ୟୁ ଚେତନା :

ଅନନ୍ତ ଆକାଶର ପ୍ରଶାନ୍ତ ନୀଳିମା ଯେପରି ଚିର ସତ୍ୟ, ନବୋଢ଼ା ବଧୂର ସଲ୍ଲଜ ଚାହାଁଣୀ ଯେପରି ଚିର ପ୍ରଲୁବ୍ଧ, ଅନୁରୂପ ଭାବରେ ଜୀବନ ବୃନ୍ତରେ ମୃତ୍ୟୁର ରହସ୍ୟ ଚିର ବାସ୍ତବ । ମୃତ୍ୟୁ ଏକ ସଚିତ୍ର ଆଲୋକ, ସଂଗୁପ୍ତ ଚେତନା । ନୈର୍ବ୍ୟକ୍ତିକ ସୌକୁମାର୍ଯ୍ୟର ଅସ୍ଥିରତାରେ ଯେପରି ପରିପୂର୍ଣ୍ଣ, ନୀଳ ହ୍ରଦର ନିର୍ବିକଳ୍ପ ଆଶ୍ୱାସନା ରେ ସେପରି ପ୍ରତିବିମ୍ବିତ । ମୃତ୍ୟୁର ଗତି ଅଜେୟ, ଦୁର୍ବିନୀତ । ସମୟ ଅନୁଦାର, ଅଶୁଭ ଓ ନିର୍ମମତାକୁ ଅତିକ୍ରମ କରିଯିବାର ପ୍ରୟାସ ହିଁ ମୃତ୍ୟୁର ଅନୁରୂପ । ଶିଳ୍ପୀର କଳାରେ ତା'ର ଅନନୁଭବ୍ୟ ସତ୍ତାର ସଂସ୍ଥିତି, ପ୍ରେମିକର ଚାହାଁଣୀରେ ତା'ର ସ୍ୱପ୍ନାୟିତ ଠାଣିର ପ୍ରକ୍ଷେପ । କଦମ୍ବର ପ୍ରଥମ ରୋମାଞ୍ଚକରେ ସେ, ହେମ-ହରିଣୀର ବଙ୍କିମ ଚାହାଁଣୀରେ ସେ । ମହାଭାରତର ଅଜେୟ ପୃଷ୍ଠଭୂମିରେ ତା'ର ପଦଚାରଣ ଯେପରି ନୂପୁର-ନିକ୍ୱଣିତ, ଶୂନ୍ୟବାଦର ଅହେତୁକ ଭୟ ସର୍ଜନାରେ ସେପରି ସତର୍କ ବିହ୍ୱଳ । ସୃଷ୍ଟି ମଧ୍ୟରେ ଅମୃତର ଅନୁଭବ ପରି ମୃତ୍ୟୁର ଉପଲବ୍‌ଧି ଈଶ୍ୱରଙ୍କ ଉପସ୍ଥିତିକୁ ଅନୁଭବ କରାଏ । ତେଣୁ Vespasionଙ୍କ ମତରେ ମୃତ୍ୟୁର ଉଲ୍ଲାସ ଓ ଆଲୋକିତ ମୁହୂର୍ତ୍ତରେ 'Seems I becoming God' ଅର୍ଥାତ୍ ମୁଁ ଈଶ୍ୱରରେ ରୂପାନ୍ତରିତ ହୋଇଯାଇଛି । ମହାତ୍ମା ଟଲଷ୍ଟୟ ମୃତ୍ୟୁକୁ ଏହି ପରିବର୍ତ୍ତନଶୀଳ ବିକାଶ ଧାରାର ମହାସ୍ରୋତରେ ଏକ ସ୍ୱାଭାବିକ ଧାରାବୋଲି ଗ୍ରହଣ କରିଛନ୍ତି Life is a process of perenneal unfoldmen and death is a process within a process. ନିଃଶବ୍ଦେ - ଜୀବନ-ସ୍ରୋତ ମୃତ୍ୟୁ ସିନ୍ଧୁ ଭେଟିବାକୁ ପ୍ରଧାବିତ ମୁହୂର୍ତ୍ତରେ ଇଂରଜୀ କବି Shelley ଆମ ଚତୁର୍ଦ୍ଦିଗରେ ମୃତ୍ୟୁକୁ ଅନୁଭବ କରି କହନ୍ତି ଆମେ ସମସ୍ତେ ମୂର୍ତ୍ତିମାନ ମୃତ୍ୟୁ "All around death and we are death." ।୨୦।

ମହାନ ନାଟ୍ୟକାର Shakespeareଙ୍କ ମତରେ କାରୁଣ୍ୟ ଜର୍ଜରିତ ଜୀବନ-ନାଟ୍ୟଶାଳାରେ ମୃତ୍ୟୁ ନୀଳ ଦର୍ପଣ ପରି ପ୍ରତି ବିମ୍ବିତ ଅସ୍ତିତ୍ୱ, ଯିଏ ବିଳମ୍ବିତ ମୁହୂର୍ତ୍ତରେ ନିଶ୍ଚିତ ଜୀବନର ସମସ୍ତ ପାହାଚକୁ ଛୁଇଁ ଯିବ । 'If it is not now yet it will come' Shakespeare. ମୃତ୍ୟୁ ଜୀବନର ଉପସର୍ଗ, ଧୂସର ଭୂମିକା । ଦାରିଦ୍ର୍ୟର ଚିର ସହଚର, ଅଶ୍ରୁର ଅନ୍ତରଂଗ । କାରୁଣ୍ୟ ତା' ଦେହର ଛାଇ, ବିସର୍ଜନତାର ଜୀବନ ବୃନ୍ତର ସୁକୋମଳ ଗୋଲାପ ପାଖୁଡ଼ା । ମୋହନ ବଂଶୀରେ, ନରମ ଓଠରେ, ପରମ ପରିତୃପ୍ତିରେ, ଚରମ ବିକାଶର ଅନ୍ତରାଳରେ ତା'ର ଅନୁଭବ ।୨୧। ତେଣୁ ସେ କ୍ଲିଓପାଟ୍ରା ସ୍ତନ ପରି ସୁଗୋଲ ଓ ନୀଳ । ଅମୂର୍ତ୍ତ ଓ ଉଦାର । ନାଟ୍ୟକାର Shakespeare ତାଙ୍କ ନାଟକର ସଂଳାପରେ ପ୍ରକାଶ କରିଛନ୍ତି : The stroke of death is a lovers pinch which hurts, and is cleopatra desired (Antony and Cleoptra) ଦାର୍ଶନିକ ହର୍ଗେଲ ମୃତ୍ୟୁକୁ ପ୍ରେମର ଶେଷ ପାହାଚ ଭାବରେ ପରିକଳ୍ପନା କରି ତ୍ୟାଗର ମହାନ୍ ଆଦର୍ଶରେ ପ୍ରେମର ସ୍ଫୁରଣ

ମଧ୍ୟରେ ଅନୁଭବ କରିଛନ୍ତି । ବେକନ୍ ମଧ୍ୟ ମୃତ୍ୟୁର ରହସ୍ୟକୁ ନଶ୍ୱରତାର ଚରମ ବିକାଶ ଭାବରେ ଚିତ୍ରଣ କରି ପ୍ରକାଶ କରିଛନ୍ତି : Men are not animals erect but immortal God. ।୨୨।

ପ୍ରବଳ ଇଚ୍ଛାଶକ୍ତିରେ (Will power) ବିଶ୍ୱାସୀ ଦାର୍ଶନିକ ସୋପେନ୍ ହୋର ମଧ୍ୟ ମତ ପ୍ରଦାନ କରିଛନ୍ତି - The will is a will to live and its internal enemy isdeath. But perhaps it can defeat even death.

ଭାରତୀୟ ସଂସ୍କୃତି, ପରମ୍ପରା ଓ ଦର୍ଶନରେ ଜୀବନ ଓ ମୃତ୍ୟୁର ପାରସ୍ପରିକ ସମ୍ବନ୍ଧ ଏକ ବହୁ-ଆଲୋଚିତ ଅଧ୍ୟାୟ । ଜୀବନ ପ୍ରତି ଅନନ୍ତ ଆକର୍ଷଣ ସତ୍ତ୍ୱେ ମୃତ୍ୟୁ ହୀନ ଜୀବନ ଏକ କ୍ଲାନ୍ତିକର ପୁନରୁକ୍ତି । ସେହିଭଳି ଜୀବନର ସ୍ଥିତିବିନା ମୃତ୍ୟୁ ଏକ ଅସ୍ତିତ୍ୱହୀନ । ଗୋଟିଏ ସ୍ଥିତି, ଅନ୍ୟଟି ତା'ର ପରିଣତି ଗୋଟିଏ ଆନନ୍ଦ ବେଦନା ମିଶ୍ରିତ ଅନୁଭୂତି, ଅପରଟି କେତେ ବେଳେ ଏକ ଅନନୁଭୂତ ଆଶ୍ୱସ୍ତି ତ କେତେବେଳେ ଏକ ସମାହିତ ପ୍ରଶାନ୍ତି । ଯୋଗୀମାନଙ୍କ ପାଇଁ ଜୀବନର ସୁଖବୋଧ ଅଥବା ମୃତ୍ୟୁର ଦୁଃଖ ବୋଧ / ଉଭୟ ପରିତେଜ୍ୟ । ଜୀବନ ପଦ୍ମ ପତ୍ରରେ ଜଳବିନ୍ଦୁ । ସ୍ପର୍ଶ ଅସ୍ପର୍ଶର ଆଧାର । ମୃତ୍ୟୁ ପୁନର୍ଜନ୍ମର ପୂର୍ବାଧାର । ଜନ୍ମ ମୃତ୍ୟୁର ଚକ୍ରରେ ସୁଖ ପ୍ରତି ସେ ନିରୁଦ୍‌ବିଗ୍ନ ମନ । ଦୁଃଖ ପ୍ରତି ବିତସ୍ପୃହ । ଭଗବତ ଗୀତାର ଭାଷାରେ ଗୋଟିଏ ବାକ୍ୟରେ କହିଲେ ସେ ସ୍ଥିତିପ୍ରଜ୍ଞ ।୨୩।

ଦୁର୍ନିବାର ଜୀବନ - ପିପାସାରୁ ମୃତ୍ୟୁର ବିଷାଦ ବେଦନାର ସଂସ୍ରବ । ଅନନ୍ତ ମୃତ୍ୟୁ ଚିନ୍ତାରୁ ବୈରାଗ୍ୟ ଭାବନାର ବିକାଶ । ବାଲ୍ୟକାଳରୁ ଧର୍ମ ଧନ ସଞ୍ଚିତ ହେବା ଆବଶ୍ୟକ । ମୃତ୍ୟୁ କେବେ ଆସି ଅଚାନକ ଉପସ୍ଥିତ ହୋଇଯିବ କିଏ କହିବ ? ଶେଷ ଯାତ୍ରାର ପ୍ରସ୍ତୁତି ପାଇଁ ମୁହୂର୍ତ୍ତଟିଏ ମଧ୍ୟ ମହଲତ ମିଳିବନାହିଁ ଯନ୍ତ୍ରଣାଦାୟକ ବାର୍ଦ୍ଧକ୍ୟକୁ ପରିତ୍ୟାଗ କରି ତାରୁଣ୍ୟକୁ କାଳ ଅପହରଣ କରିବ । ଦାରୁଣ ଦୁଃଖ ଦିଏ ମୃତ୍ୟୁ । ତେଣୁ ମୃତ୍ୟୁର ଅମୃତ ଆଶାରେ ଋଷି-କବି ମାନସ ସାଧନାରତ । ନିରୋଳା କବି ଦୃଷ୍ଟିରେ ମଧ୍ୟ ମୃତ୍ୟୁ ଶ୍ୟାମ ସମାନ ପ୍ରିୟତମ । ତଥାପି ଜୀବନ ପ୍ରୀତି ଅସମ୍ପନ୍ନ । ସୂର୍ଯ୍ୟସ୍ନାତ ପୃଥିବୀ, ସ୍ନେହ ସଜଳ ସଂପର୍କ, ମମତାଭରା ହୃଦୟରେ ଅନୁରାଗର ନିର୍ଝର ତା'ର କାମ୍ୟ । ଅନିକେତ ବିଶ୍ୱ ତା'ର ନୀଡ଼ । ଅନୁପମ ତା'ର ଜୀବନ ତୃଷ୍ଣା ।୨୪।

ଦର୍ଶନରେ ଜୀବନବାଞ୍ଛା ପରିବର୍ତ୍ତେ ମୃତ୍ୟୁର ରହସ୍ୟମୟ ସ୍ଥିତିର ସନ୍ଧାନ ଅଧିକ ଗୁରୁତ୍ୱ ପୂର୍ଣ୍ଣ । ତଥାପି ଈଶ୍ୱରଦତ୍ତ ଜୀବନଯାପନ କରିବାକୁ ହେବ । ପରଜନ୍ମର ସୁଦୃଢ଼ ସ୍ଥିତି ପାଇଁ ପୁଣ୍ୟ ସଞ୍ଚୟନ ତା'ର ଇହ ଜନ୍ମର ଆଭିମୁଖ୍ୟ । ଅତଏବ ଇହ ଜୀବନକୁ ସତ୍ୟନିଷ୍ଠ ଓ ଶିବମୟ କରିବା ତା'ର ଧର୍ମ । ଯାହା ସତ୍ୟ ଶିବ ତାହା ହିଁ ସୁନ୍ଦର । ସଂହତି ଜୀବନର ମନ୍ତ୍ର । କବି ଚେତନାରେ ଦାର୍ଶନିକ ଜୀବନ ଜିଜ୍ଞାସା ଭଳି ସୌନ୍ଦର୍ଯ୍ୟ ସ୍ନାତ ବିଶ୍ୱର ପରିଚିତ ଦିଗଭାଗ ଆକର୍ଷଣୀୟ ।

ମୃତ୍ୟୁରୁ ଜୀବନ ପୁଣି ଜୀବନରୁ ମୃତ୍ୟୁ- ଦୁଇଟି ଭିନ୍ନ ଧର୍ମୀ ଅନୁଭବ । ଜୀବନରେ ବାରମ୍ବାର ଆସେ ମୃତ୍ୟୁ । ପୁଣି ସାତ ଜନ୍ମ ସାତୋଟି ମରଣ ଦେଇ ଜୀବନ ଦୀକ୍ଷା ରହେ ବଳବତ୍ତର । ନୂପୁର ଧ୍ୱନି ଶୁଭୁଥାଏ ଜୀବନ ଦେବତାର । ଜୀବନର ବହୁ ବିଚିତ୍ର ଦିଗନ୍ତକୁ କବି ପରୀକ୍ଷା କରେ । ମୃତ୍ୟୁ କେତେବେଳେ ଫୁଲ ହୋଇ ଫୁଟେ । ମୃତ୍ୟୁର ଦେହଳୀକୁ ଛୁଇଁବା ଆଗରୁ କବି ଜୀବନକୁ ଆକଣ୍ଠ ଉପଭୋଗ କରିବାକୁ ଚାହେଁ । ପୃଥିବୀର ସୁବର୍ଣ୍ଣ ସ୍ମୃତି ପୁନରାୟ ବାସ୍ତବ ଜୀନବ ଭୂମିରେ ଅନୁଭୂତ ହେବ କି ନାହିଁ କିଏ ଜାଣେ ? ଆୟୁ ବିହଙ୍ଗର ପକ୍ଷ ଏଇ ଥମିପାରେ । ଜୀବନର ଅବଶିଷ୍ଟ କ୍ଷଣ ଦୃଶ୍ୟମାନ ଧରିତ୍ରୀର ରୂପଶ୍ରୀ ଓ ପ୍ରୀତିର ଅମୃତାନୁଭୂତି ଅନ୍ତରରେ ଉପଲବ୍‌ଧି କରିବାଥିଲା ପାରସ୍ୟ କବି ଓମାରଙ୍କ ରୂବାୟତର ମାର୍ମିକ ବାର୍ତ୍ତା । ମୃତ୍ୟୁ ଆସିବ ଜାଣି ମଧ୍ୟ ଜୀବନରେ ଆଚ୍ଛନ୍ନ ହୋଇଯାଏ ନାୟକ ।ଆବଶ୍ୟକତା ତା'ର ସ୍ୱଳ୍ପ । ଇଂରାଜୀ କବି ଫିଟଜେରାଲଡ 'ରୁବାୟତ'ର ଅନୁବାଦ କ୍ରମରେ ବକ୍ତବ୍ୟଟିକୁ ଏହି ଭଳି ପ୍ରକାଶ କରିଛନ୍ତି – A book of verse under neath the bough / A jug of wine, a loaf of brerd / and thou / Beside me singing in the wilderness / and wilderness in paradise now. ପଲ୍ଲବିତ ତରୁ ବିତାନରେ ନାୟିକାର ସାନ୍ନିଧ୍ୟ, ଗୀତି ଗୁଚ୍ଛର ପ୍ରବାହ ଆଉ ଦ୍ରାକ୍ଷ ମଦିରାର ସୁଗନ୍ଧ ହିଁ ଜୀବନର ପରିପୂର୍ଣ୍ଣତା । ମୃତ୍ୟୁ ଭୟରେ ସମାଚ୍ଛନ୍ନ ଜୀବନର ସାର୍ଥକତାରେ ସୃଷ୍ଟିର ଶୂନ୍ୟତା ଅପସୃତ । ସମୟ ନଦୀର ଏ ତୀରେ ଜୀବନ, ସେ ତୀରେ ମୃତ୍ୟୁ । ପ୍ରକୃତି ଶାଶ୍ୱତ କିନ୍ତୁ ଜୀବନ ନଶ୍ୱର । ଏହି ନଶ୍ୱର ଜୀବନରୁ ଶାଶ୍ୱତ ମଧୁ ସୌରଭର ଆହରଣ କବିତାର ଅନ୍ୟତମ ବାର୍ତ୍ତା । ଫୁଲର ସୁରଭିରୁ ପବନର ଶିହରଣରୁ, ମଧୁ ଋତୁର ଆବେଶରୁ ଜୀବନର ଅନ୍ତଃ ସୌରଭକୁ ଆଘ୍ରାଣ କରିନିଏ କବି ଚେତନା । ଗୋପନରେ ମର୍ମରିତ ହେଉଥାଏ ମୃତ୍ୟୁର ନିକ୍ୱଣ । ଜୀବନର ଭୌତିକ ଆଶା ସକଳର କୁହୁକରେ ଚିତ୍ତ ଚଞ୍ଚଳ ହୁଏ । ଦାର୍ଶନିକ ଓ ଯୋଗୀଗଣ ଏହି ଚଞ୍ଚଳ ଚିତ୍ତକୁ ନିୟନ୍ତ୍ରଣ କରିବା ପାଇଁ ବାର୍ତ୍ତା ଦିଅନ୍ତି ।୨୫।

କବି ଚିତ୍ତର ଚଞ୍ଚଳତାକୁ ଶବ୍ଦରେ ଆୟତ୍ତ କରେ । ସୁକୁମାର ତା'ର କଷଟି ପଥରରେ କାବ୍ୟ ଦେବୀଙ୍କର ଚିରନ୍ତନତା ହୁଏ ପରୀକ୍ଷିତ । ବ୍ୟକ୍ତିର ଅଜ୍ଞାତରେ ମୃତ୍ୟୁ ଆସି ନୀଡ ରଚନା କରେ ଜୀବନ ବୃକ୍ଷରେ ସବୁଜ ପତ୍ରର ସତେଜତା ପୋଛି ନିଏ ମରଣର ଶିରାଳ ହାତ । ବିରହୀ ବନ୍ଧୁ ମୃତ୍ୟୁକୁ ଜୀବନର ଶେଷ ଗତି ରୂପେ ଗଣନା କରି ବିମର୍ଷ ବିଧୂର ହୁଏ । 'ଶେଷ ଗତି ନୁହେଁ ମୋର ମୃତ୍ୟୁ (ଶେଫାଳି ପ୍ରତି-ଉଚ୍ଛ୍ୱାସ-କୁନ୍ତଳା କୁମାରୀ ସାବତ) ବୋଲି ଉଚ୍ଚାରଣ କରିବାକୁ ସେ ଅସମର୍ଥ ହୁଏ । ଜୀବନ ହୁଏ ସ୍ମୃତିର କଙ୍କାଳ ଖାଲି (ମୃତ୍ୟୁ-ପାଣ୍ଡୁଲିପି-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ) ଦୃଶ୍ୟମାନ ଦେହର ପରିଧିରୁ ଆତ୍ମା-ପକ୍ଷୀର ବିଦାୟରେ ମୁହ୍ୟମାନ ହେବାଜୀବର ସାଧାରଣ ଧର୍ମ । ସ୍ମୃତିର କଙ୍କାଳଟିଏ ମଧ୍ୟ ତା'ର ପ୍ରିୟତମ ଝରା କୁସୁମରୁ ନିଷ୍କ୍ରାନ୍ତ ହୁଏ ଜୀବନ ରାଗ । ତଥାପି ଜୀବନ ସଦାସର୍ବଦା ପୂର୍ବ

ରାଗର ଗୀତିଗୁଚ୍ଛ ପରିମଧୁର । ପରିପାର୍ଶ୍ୱରେ ମୃତ୍ୟୁର ଛାୟା ଘେରି ରହିଥିଲେ ମଧ୍ୟ ଜୀବନର ମାୟା ହୁଏ ସ୍ୱତଃ ବରଣୀୟ ।୨୬।

ଜୀବର ଜୀବନ୍ତ ଶବ୍ଦସମ୍ଭାର ପୂର୍ଣ୍ଣତଃ ଜୀବନରେ ସ୍ଥିର ସଂଯତରହିପାରେନାହିଁ । ଅନ୍ତହୀନ ମୃତ୍ୟୁ ମଧ୍ୟ ତା'ର ଅନନ୍ତ ଆକାଂକ୍ଷା ନୁହେଁ । ଅଧାମୃତ୍ୟୁ ଅଧା ଜୀବନରେ ଶବ୍ଦର ସ୍ଥିତି । ମୃତ୍ୟୁର ମନ୍ତ୍ରଧ୍ୱନି । ମରଣର ନୀଳ ବିଷର ଜ୍ୱାଳାରେ ପରବର୍ତ୍ତୀ କାଳ ହୁଏତ ଜର୍ଜରିତ ହେବ, ଅଥଚ ବର୍ତ୍ତମାନ ତା'ର ଚନ୍ଦନ ଚର୍ଚ୍ଚିତ । ଏଇତ ଜୀବନ, ଫୁଲ ନଥାଏ ମହକୁ ଥାଏ ସୁବାସରେ ଦିଗବିଦିଗ । ଶାଶ୍ୱତ ଜୀବନରଙ୍ଗ କାଳର ବିଭାଜନ ସ୍ୱୀକାର କରେ ନାହିଁ ।୨୭।

ନିଶାର୍ଦ୍ଧରେ ଝରଝର ବର୍ଷାର ସ୍ମୃତିପରି ପ୍ରଣୟୀ ଥାଏ ଚେତନାର ନିଭୃତ କୋଣରେ । ମୃତ୍ୟୁର ବଳୟ ଭେଦକରି ସେଇ ସ୍ମୃତିର ଅନୁଭୂତି ପାଇଁ ନାୟିକା ବାରମ୍ବାର ଜନ୍ମନିଏ । ଆଶା, ଆଶାରେ ହିଁ ରହିଯାଏ । ନୈରାଶ୍ୟ ମୃତ୍ୟୁର ବେଦନା ଜାଗ୍ରତ କରେ । ମରିବାର ସ୍ପୃହା ଛାଡ଼ି ଦେଲେ / ଅନ୍ୟ ସ୍ପୃହା ନିଜର ନଥାଏ (ଶ୍ରୀରାଧା-ରମାକାନ୍ତ ରଥ) ଜୀବନରେ ଏଭଳି ମୁହୂର୍ତ୍ତ ଆସେ ଶବ୍ଦଟିଏ ଭଳି ନାରୀଟିଏ ମଧ୍ୟ ଜୀବନ ମୃତ୍ୟୁର ଛାୟା ଚନ୍ଦ୍ରିକାରେ ଆନ୍ଦୋଳିତ ହୁଏ । ଜଗତ ଆଖିରେ ମୃତ ପ୍ରେମିକଟି ଜୀବନର ଅବିଚ୍ଛିନ୍ନ ସ୍ରୋତରେ ଆତ୍ମାର ସାଗରକୁ ଛୁଇଁ ସାରିଥାଏ । ସେଇ ଅନିର୍ବଚନୀୟ ସ୍ପର୍ଶରେ ସେ ମୃତ୍ୟୁ ଅଥବା ଜୀବନର ତଥାକଥିତ ଭେଦର ସ୍ତରକୁ ଅତିକ୍ରମ କରିଯାଏ । ଏହା ହିଁ ଉତରଣର ଚରମ ସ୍ତର । ସେତେବେଳେ ଚୁଡାନ୍ତ ମନେ ହେଉଥିବା ଅନ୍ଧାର ଭାଷାହୀନ ଆଲୋକ ସୀମାରେ ହୁଏ ଉପନୀତ । ଯନ୍ତ୍ରଣା ହୁଏ ମଧୁକ୍ଷରା ଜୀବନର ସ୍ୱାଦ ।୨୮।

ଜୀବନର ମହାନୁଭୂତି ଏହି ଭଳି - କଢ଼ ନଧରୁଣୁ ସେ ଫୁଲକୁ ଚିହ୍ନି ନିଏ । ମଳୟ ନ ବହୁଣୁ ବସନ୍ତ ହୁଏ ଆପଣାର । ଶରତ ପାଦ ଦେବା ପୂର୍ବରୁ ନିର୍ମଳାଙ୍ଗୀ ବସୁନ୍ଧରାର ସ୍ନେହ ସଜଳ ଆତ୍ମୀୟତା ସେ ବୁଝିନିଏ ! ଋତୁର ନିର୍ବିଶେଷରେ ରକ୍ତର ଜୁଆର ତା'ର ସାଥୀ । ସଂପର୍କର ଏହି ଚିରନ୍ତନତା ଅଗ୍ନିର ଅଦାହ୍ୟ, ପବନର ଅଶୋଷ୍ୟ ଶସ୍ତ୍ରର ଅଛେଦ୍ୟ ଓ ସଲିଳର ଅସ୍ପର୍ଶ୍ୟ ।୨୯।

କବି ସୌରୀନ୍ଦ୍ର ବାରିକ୍ ମୃତ୍ୟୁର ଅସ୍ତିତ୍ୱକୁ ଆବିଷ୍କାର କରିଛନ୍ତି କବିତାରେ । ଜନ୍ମ ଓ ମୃତ୍ୟୁ ମୁଦ୍ରାର ଦୁଇଟି ପାର୍ଶ୍ୱ । ମୃତ୍ୟୁକୁ ବାଦ୍ ଦେଇ ଜୀବନର ମାନେ କିଛି ନାହିଁ । ମୃତ୍ୟୁ ଅଛି ବୋଲି ଜୀବନ ସୁନ୍ଦର, ଜୀବନ ଅଛି ବୋଲି ମୃତ୍ୟୁ ଅମୃତ । ଅନ୍ଧକାର ନଥିଲେ ଆଲୋକର ସତ୍ତାକୁ ଅନୁଭବ କରିହୁଏନା । ଆଲୋକ ଅନ୍ଧାର, ଜନ୍ମ, ମୃତ୍ୟୁ ପରି ଉପର ତଳ, ତଳଉପର । ଜୀବନ ଭିତରେ ମୃତ୍ୟୁକୁ ଅନୁଭବ କରିଛନ୍ତି ସୌରୀନ୍ଦ୍ର । ଜୀବନବାଦୀ କବି ସୌରୀନ୍ଦ୍ର ଜୀବନର ଶାଶ୍ୱତ ପରିଣତି ମୃତ୍ୟୁ ବୋଲି କବିତାରେ ଉପସ୍ଥାପନ କରିଛନ୍ତି । ଆକସ୍ମିକମୃତ୍ୟୁର ଆଗମନ । ସତର୍କ ସୂଚନା ନଦେଇ ନିମିଷକେ ଆସି ପହଞ୍ଚିଯାଏ ଦ୍ୱାରଦେଶରେ ମୃତ୍ୟୁ । ପରାଜୟ ମୃତ୍ୟୁର ଭାଲ ପଟରେ ଲେଖାନାହିଁ । ନିର୍ମଳ ଆକାଶକୁ କଳାମେଘ ଢ଼ାଙ୍କିଲା ପରି

ମୃତ୍ୟୁ ଜୀବନ ଉପରେ କାୟା ବିସ୍ତାର କରେ । ବାଛ ବିଚାର ନରଖି ନିଜର କରିନିଏ ଜୀବନକୁ । ସମସ୍ତପ୍ରକାର କାମନା ବାସନା ଚରିତାର୍ଥ କରିବା ପୂର୍ବରୁ ଜୀବନର ହାତ ଧରି ମୃତ୍ୟୁନେଇଯାଏ ଅଜଣା ରାଜ୍ୟକୁ । କବି ସୌରୀନ୍ଦ୍ର ବାରିକ୍ ମୃତ୍ୟୁ ଭୟାବହ ରୂପକୁ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ଆହତ କଚ୍ଛପ' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

ପୋଛି ଦେଇ ମୃଦୁ ପବନ ଓ ଜଳ ରାଶିର ସୋହାଗ
ହଠାତ୍ ଆସିଲା ଏକ ବର୍ଷାହୀନ ଶୁଖିଲା ଝଡ ।
ଆକାଶରେ ଧୂସର ମେଘ
ସହସ୍ର ପେଚାର ପକ୍ଷ ବିସ୍ତାର ? ଦଳଦଳ କଳା ମଇଁଷି ?
ଶାନ୍ତ ସମୁଦ୍ରରେ ଅପସ୍ମାର ରୋଗୀର ଅଶାନ୍ତି ।୩୦।

ଜୀବନ ଯୁଦ୍ଧରେ କାବ୍ୟ ପୁରୁଷ ବାରମ୍ବାରପରାଜୟ ବରଣ କରୁଛି । ପରାଜୟକୁ ପରାଜୟ ଭାବରେ ଗ୍ରହଣ ନକରି ଜୟ କରିବା ନିଶାରେ ସଂଗ୍ରାମ ଜାରି ରଖିଛି । ରକ୍ତ ନଦୀର ଦୁର୍ଯ୍ୟୋଧନ ପରିକାବ୍ୟ ପୁରୁଷର ଅବସ୍ଥା । ଅନୁଶୋଚନା ଓ ପରାଜୟର ଶିକାର ହୋଇ କାବ୍ୟପୁରୁଷ ଭାଙ୍ଗି ପଡିନି । ଜୀବନ ଯୁଦ୍ଧରେ ସ୍ୱଦେହରେ ବିଦ୍ୟମାନ । ଅଶୁଭ ପରିବେଶ, ମୃତ୍ୟୁ ବିଭୀଷିକା କାବ୍ୟପୁରୁଷର ଯାତ୍ରାପଥକୁ ରୋଧ କରି ପାରିନି ବରଂ ଆଗକୁ ଯିବାକୁ ଉତ୍ସାହ ଦେଇଛି । ଭୟ ଓ ବିଭିଷୀକା ମୃତ୍ୟୁର କରାଳ ରୂପ । ପେଚା ମୃତ୍ୟୁର ପ୍ରତୀକ । ମୃତ୍ୟୁର କରାଳ କଳେବର ନିକଟରେ ଜୀବନ ସମର୍ପିତ ତଥାପି ଜୀବନ ସୁନ୍ଦର ଓ ଲୋଭନୀୟ । ଅନନ୍ତ ଅପ୍ରମିତ ଦୁଃଖ ଭିତରେ ଜୀବନକୁ ଭଲ ପାଇବା, କଳାମେଘ କୋଳରେ ବିଜୁଳିର ଚମକକୁ ସ୍ୱାଗତ କରିବା, ମରୁ ମରୁ ବଞ୍ଚି ଯାଇଥିବା ଜୀବନକୁ କୋଳେଇ ନେବା ସୌରୀନ୍ଦ୍ରଙ୍କ କବିତାର ବୈଶିଷ୍ଟ୍ୟ । ମୃତ୍ୟୁର ମାନଚିତ୍ର ପ୍ରଦାନ କରିବାକୁ ଯାଇ କବି 'ଆହତ କଚ୍ଛପ' କବିତାରେ ପ୍ରକାଶ କରିଛନ୍ତି:-

ଶୁଖିଲା ପବନରେ ହାତରୁ ବନ୍‌ସୀ ଉଡ଼ିଗଲା
ସାଗରର କମ୍ପନରେ ହଜିଗଲା ଆହତ କଚ୍ଛପ
ଆଉ ମୋ' ମାଛଙ୍କ ଜାଗାରେ କାହୁଁ ଉଡ଼ି ଆସି ପଡ଼ିଲା
ଏକ ଛାଗର ଛିନ୍ନ ମସ୍ତକ ।
ରକ୍ତର ଉତ୍ସ । ସେ ରକ୍ତ ଜଳରାଶିକୁ ରକ୍ତିମ କଲା
ସେ ରକ୍ତରେ ଭାସିଲି । ମୁଁ କି ପରାଜିତ ଦୁର୍ଯ୍ୟୋଧନ ।୩୧।

ମିଛ ମାୟାର ସଂସାର । ଲୁହ ଲହୁରେ ସଂସାର ବିଚିତ୍ରବର୍ଣ୍ଣା । କାହାର ସଂସାର ଘିଅ ମହୁରେ ଉଚ୍ଛୁଳୁଛି ତ ଆଉ କାହାର ସଂସାର ଲୁହ ସାଗରରେ ଭାସି ଯାଉଛି । କାହାର ଜୀବନ ତେଲ ନଥିବାବତୀ ପରି ମିଞ୍ଜି ମିଞ୍ଜି ଜଳୁଛି ତ ଆଉ କାହାର ଜୀବନ ଦୀପଅକାଳରେ ଲିଭି

ଯାଉଛି । ସଂସାରର ଦାଉ ଧକ୍କା ସହି ସହି କିଏ ଛାତିକି ପଥର କରିଛି ତ ଆଉ କିଏ ସଂସାର ଛାଡ଼ି ଚାଲି ଯାଉଛି । ଅସୁମାରି ଆଶାର ବୋଝ କାବ୍ୟପୁରୁଷ ମୁଣ୍ଡରେ ନା କିଏ ଲାଘବ କରୁଛି ନାକିଏ ଉତାରୁଚି । ଘାତ ପ୍ରତିଘାତ ଭିତରେ କାବ୍ୟ ପୁରୁଷ ମୁଣ୍ଡ ଟେକି ବାଟ ଚାଲୁଛି । ଦୂର ଦିଗନ୍ତର ପଥିକ ସେ । କ୍ଲାନ୍ତି ଅବସାଦରେ ଚଲାପଥରେ ପଥର ପାଲଟି ଯାଉଛି; ସତେ ଯେମିତି ଗୌତମ ଅଭିଶାପ ଦେଇଛନ୍ତି । ମୃତ୍ୟୁର ସତର୍କ ଘଣ୍ଟି ବାଜିଲେ ମଣିଷ ପାର୍ଥିବ ଜଗତରୁ ସବୁଦିନ ପାଇଁ ବିଦାୟ ନିଏ । ପ୍ରିୟ ପରିଚିତ ପାର୍ଥିବ ସମ୍ପଦ ସବୁ ମାଟି କାମୁଡ଼ି ପଡିରହେ । ପୁରୁଣା ପ୍ରାସାଦ ଅତୀତର ସବୁ ସ୍ପର୍ଦ୍ଧା ଭୁଲି ଅଣ୍ଟାଭାଙ୍ଗି ମାଟିରେ ମିଶିଲା ପରି ମଣିଷ ମାଟିରେ ମିଶିଯାଏ । କବି ସୌରୀନ୍ଦ୍ର ବାରିକ୍ ଚମତ୍କାର ଭାବରେ 'ସଂସାର' କବିତାରେ ମୃତ୍ୟୁର ମାନଚିତ୍ର ଅଙ୍କନ କରିଛନ୍ତି । କବିଙ୍କ ଭାଷାରେ :-'ଏ ଗଛର ଆଶ୍ଲେଷରେ ମାୟାବୀ ମୃତ୍ୟୁର କପଟତା । ତେଣୁ ତା ଶାଖାର ବାହୁ ବନ୍ଧନରେ ଲୌହଭୀମ ପରି ଜୀବନ ଚୁନା ହୁଏ । ପୁରୁଣା ପ୍ରାସାଦ ପରି ଅତୀତର ସବୁ ସ୍ପର୍ଦ୍ଧା ଭୁଲି ଅଣ୍ଟା ଭାଙ୍ଗି ମାଟିରେ ମିଶେ''।୩୨।

ମଣିଷ ଅଦୃଶ୍ୟ ହାତର ଖେଳନା । ଛୋଟ ଶିଶୁ ଯେପରି ପ୍ଲାଷ୍ଟିକ କଣ୍ଢେଇକୁ ଖେଳାଏ, ଅନନ୍ତ ଆନନ୍ଦପାଏ ଠିକ୍ ସେହିପରି ଅଦୃଶ୍ୟ ନିୟତି ହାତର ଆମେ ସବୁ ଗୋଟେ ଗୋଟେ ଖେଳନା । ଆମକୁ ନଚେଇ କନ୍ଦାଇ ସେ ଆନନ୍ଦ ପାଆନ୍ତି । ଆମର ଦୁଃଖ ତାଙ୍କର ହସ । ଆମର କାନ୍ଦ ତାଙ୍କର ଖେଳ । ମାର୍ଜାର ଯେପରି ମୂଷିକକୁ ଖେଳେଇ ନଚେଇ ଶୀକାର କରେ ଆମକୁ ମୃତ୍ୟୁ ସେପରି ହସେଇ ମଜେଇ ଗ୍ରାସ କରେ । ମୃତ୍ୟୁର ମଧୁର ଆଲିଙ୍ଗନ ଠିକ୍ ବିରାଡ଼ିର ମୂଷା ଶିକାର ପରି ! ମୃତ୍ୟୁର ଭୟାବହ ଦୃଶ୍ୟକୁ କବି 'ମାର୍ଜାର' କବିତାରେ ପ୍ରକାଶ କରିଛନ୍ତି । ମାର୍ଜାର ମୃତ୍ୟୁର ପ୍ରତୀକ, ମୂଷିକ ଜୀବନର ପ୍ରତୀକ । ମୂଷା ବିଲେଇର ଖେଳ ଠିକ୍ ଜନ୍ମ ମୃତ୍ୟୁର ଖେଳ ପରି । କିନ୍ତୁ ଉଭୟେ ଖାଦ୍ୟ ଖାଦକ ମହାକାଳର ଅଧୀନ । ମୃତ୍ୟୁର ରୂପ କରାଳ ଓ ଭୟଙ୍କର । କବି 'ମାର୍ଜାର' କବିତାରେ ପ୍ରକାଶ କରିଚନ୍ତି;-

ତୁମ ଆଖିରେ ଅନ୍ଧାରର ନିଆଁ
ପାଦରେ ରାତ୍ରିର ନୀରବତା
ଖାଇବା ଆଗରୁ
ପୁଣି ତାଙ୍କ ସହ ଖୁସିରେ ଖେଳ
ଯେମିତି ତୁମେ ଲୋମଶ ମୃତ୍ୟୁ
ଆଉ ଏ ଖେଳ ଆନନ୍ଦର ହିଂସ୍ରତା ।୩୩।

ମୃତ୍ୟୁ କୋଳରେ ଜୀବନ । ମୃତ୍ୟୁ, ଅଛି ବୋଲି ସଂସାରର ଅନ୍ୟନାମ ମର୍ତ୍ତ୍ୟ । ଭାଗବତରେ ଅଛି ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ । ଦେବତା ଯଦି ନର ରୂପରେ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରନ୍ତି ତେବେ ତାଙ୍କର ମୃତ୍ୟୁ ନିଶ୍ଚିତ । କବି ସୌରୀନ୍ଦ୍ର

ବାଦୁଡ଼ିକୁ ଧ୍ୱଂସର ଦୂତ ଭାବରେ କବିତାରେ ପରିକଳ୍ପନା କରିଛନ୍ତି । ମନର ଅନନ୍ତ ଗହନରୁ କୁତ୍ସିତ କାମନାର ଆର୍ବିଭାବ ପରି ବାଦୁଡ଼ି ଆତ୍ମ ପ୍ରକାଶ କରେ ରାତିର ନୀରବତାକୁ ଭାଙ୍ଗି କୋଳାହଳରେ ପରିଣତକରେ । ଅନ୍ଧକାର ମଧ୍ୟରେ ବାଦୁଡ଼ିର ଚେଁଚାଁ ଶବ୍ଦ ମୃତ୍ୟୁର ଭୟ ସୃଷ୍ଟି କରେ ଓ ଚିତ୍ତରେ ଚାଞ୍ଚଲ୍ୟ ସୃଷ୍ଟି କରେ ରାତିର ନୀରବତାକୁ ହତ୍ୟା କରି । ଶୟନ କକ୍ଷରେ ନିରାପଦରେ ନିଦ ଯାଇଥିବ ମଣିଷ ବାଦୁଡ଼ିର ଅଶୁଭ ଶବ୍ଦରେ ଚେଇଁ ଉଠେ, ଭୟ ପାଏ । କବି ସୌରୀନ୍ଦ୍ର 'ବାଦୁଡ଼ି'ର ଅସଲ ରୂପକୁ କବିତାରେ ପ୍ରକାଶ କରିଛନ୍ତି । କବିଙ୍କ କବିତାରେ:-

ମନର ସାତ ତାଳ ଗହୀର ତଳୁ
କୁତ୍ସିତ କାମନା ପରି ଆସି
ନୀରବତାକୁ ପ୍ରଗଳଭ କର
ଅନ୍ଧାରକୁ କର ତାମସ ।୩୪।

ଆଖି ବୁଜି ଶିକାର କରି ଚାଲିଥାଏ । ବୁଝି ନଥାଏ ଶିକାରୀ ଦିନେ ନା ଦିନେ ମହାକାଳର ହାତରେ ତା'ର ଶିକାର ହେବ । ଜୀବନର ଅନ୍ୟ ନାମ ମୃତ୍ୟୁ । ଆଜି ହେଉ କି କାଲି ହେଉ ଜୀବନର ଯବନିକା ମୃତ୍ୟୁରେ ଆନନ୍ଦରେ ବିଭୋର ହେଉଥିବା ବ୍ୟକ୍ତିକୁ ଅବଲୋକନ କରିକାଳ ମୁରୁହି ହସେ । କାଳ ସଦାସର୍ବଦା କ୍ଷୟ ହୋଇ ଚାଲିଛି ଏ କଥା ମଣିଷ ଭୂଲିଯାଏ । ମୁହୂର୍ତ୍ତେ ମୁହୂର୍ତ୍ତେ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ମଧ୍ୟ ସବୁ ଭାଗ୍ୟ ଉପରେ ଦୋଷ ଦେଇ ଧରାକୁ ସରା ମନେକରେ ମଣିଷ । ବୀଭତ୍ସ ଓ ତାଣ୍ଡବ ନୃତ୍ୟ ରଚନା କରି ଶହ ଶହ ଜୀବନକୁ ନେଇ ଜୁଆ ଖେଳୁଥିବା ମଣିଷମାନଙ୍କ ଚିତ୍ରକୁ କବି ସୌରୀନ୍ଦ୍ର ବାରିକ୍ ବାଦୁଡ଼ି କବିତା ମାଧ୍ୟମରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

ବିଜୁଳି ତାରରେ କିନ୍ତୁ
ଛନ୍ଦିହୋଇ ଯେବେ ମର
ସେତେବେଳେ ହେ ବାଦୁଡ଼ି ତୁମେ
ମୃତ୍ୟୁର କ୍ରୂର କବଳରେ କଲବଲ
ଅସହାୟ ଟିକିଏ ଜୀବନା।୩୫।

ଜୀବନର ଅସରନ୍ତିଗୀତ ଆଉ ତା'ର ଗୁଣୁଗୁଣୁ ସ୍ୱର ଖୁବ୍ ମଧୁର ଓ ଲୋଭନୀୟ । ଏ ସବୁକୁ ହୃଦୟରେ ସାଇତି କ'ଣ ମୃତ୍ୟୁକୁ ଠକି ହେବ ? ମୃତ୍ୟୁ ନିଶ୍ଚିତ ଜାଣି ମଧ୍ୟ ମଣିଷ ବାଜେ କାମରେ ଲିପ୍ତ ରହେ, ମିଛ କହେ, ନିଜର ସ୍ୱାର୍ଥ ପାଇଁ ଅନ୍ୟର ଅଶୁଭ ଚିନ୍ତା କରେ । ଛଳନାରେ ଜୀବନ ବଞ୍ଚେକପଟରେ ସଂପର୍କ ରଖେ । ସ୍ୱାର୍ଥ ପାଇଁ ଭଲପାଏ, ଜୀବନର ସବୁ ଦୁଃଖକୁ ଭୁଲିଯିବାକୁ ମଦପିଏ, ମାତାଲ ହୁଏ । ସମୟର ଆଘାତରେ ଦାନ୍ତ ପଡ଼େ, ମୁଣ୍ଡ ବାଳ ପାଚେ, ବିଭିନ୍ନ ପ୍ରକାର ରୋଗ ଜୀବନକୁ କଲବଲ କରେ ତଥାପି କାବ୍ୟପୁରୁଷର

ଆଶା ମରେନା ସ୍ୱପ୍ନ ହଜେନା । ବୟସକୁ ଫାଙ୍କି ଦେବାକୁ ସତତ ଚେଷ୍ଟାକରେ । ମିଛି ଦାନ୍ତ, ବାଳ ରଂଗ ବହଳ ଚଷମା ଲଗାଇ ଯୌବନକୁ ଫେରି ପାଇବାକୁ ଆପ୍ରାଣ ଉଦ୍ୟମ କରେ ନା ଚପଳ ସମୟକୁ ଫେରିଯାଏ, ଶରୀରରେ ଶିହରଣ ଖେଳେ । କାଳ ପାଖରେଫେରାଦିହୁଏ, ନିଜେ ନିଜକୁ ଠକେ ଶେଷରେ ମାଟି ସହ ଯୁଝି ଯୁଝି କାଳ କୋଳରେ ବିଶ୍ରାମ ନିଏ ମଣିଷ । ସବୁ ସୌନ୍ଦର୍ଯ୍ୟର ଉର୍ଦ୍ଧ୍ୱରେ ସବୁ ସଫଳତାର ଶେଷରେ କବି ମୃତ୍ୟୁକୁ ପ୍ରାଣେ ପ୍ରାଣେ ଅନୁଭବ କରିଛନ୍ତି । ସୌରୀନ୍ଦ୍ରଙ୍କ ଭାଷାରେ:-

ମନଚାହେଁ ଧାଇଁବାକୁଗୋଡ଼ ଯାଏ ଥକି
ପ୍ରାଣ ଖୋଜେ ଶିହରଣ ଦେହ ଦିଏ ଫାଙ୍କି
ଅଣ୍ଟା ବ୍ୟଥା, ଅଗ୍ନିମାନ୍ଦ୍ୟ, ନିଦ ନାହିଁ ଜମା
ମିଛ ଦାନ୍ତ, ହାତବାଡ଼ି, ବହଳ ଚଷମା
ଏ ଯେମିତି ପୁରୁଣାରେ ତାଳି ପକାଇବା
ବିଦୂଷକ ସାଜି ଖାଲି ନିଜକୁ ଠକିବା ।୩୬।

ମୃତ୍ୟୁର ପ୍ରତିଧ୍ୱନୀ ଭିତରେ ଜୀବନର ସରସତାକୁ କାୟମନବାକ୍ୟରେ ଉପଲବ୍ଧ କରିଛନ୍ତି ସୌରୀନ୍ଦ୍ର । ମୃତ୍ୟୁ ଆସୁ ମଇଁଷି ପିଠିରେ ଚଢ଼ି ଆସିବ, ନହେଲେ ଯୁଦ୍ଧ କ୍ଷେତ୍ରରେ ଦୁର୍ଯ୍ୟୋଧନର ହୁଙ୍କାର ପରି ଆସିବ, କିନ୍ତୁ ସୌରୀନ୍ଦ୍ର ଭୀମପରି ଉରୁଭାଙ୍ଗି ପାଇବେ ଜୀବନର ସନ୍ଧାନ । ଉଦ୍ଦାମ ଅନଳ ଭିତରେ ଜୀବନକୁ ନିମିଷେ ଆଲିଙ୍ଗନ କରିବେ । ମୃତ୍ୟୁର ଚକ୍ରବ୍ୟୁହକୁ ଭେଦ କରି ଜୀବନର ସନ୍ଧାନ କରିବେ । ଜୀବନ ସର୍ବସ୍ୱ କବି ସୌରୀନ୍ଦ୍ର । ମୃତ୍ୟୁର ଭୟାବହତା ନିକଟରେ କବି ହାର୍ ମାନି ନାହାନ୍ତି । ମଣିଷ ଇଚ୍ଛା ଯଦିଓ କେବେ ପୂରଣ ହୁଏନି ତଥାପି ସେ ବଞ୍ଚିବେ ତାଙ୍କ ସ୍ୱପ୍ନ ଓ ସ୍ମୃତିକୁ ପାଥେୟ କରି । ମୃତ୍ୟୁର ସାହାନାଇ ଭିତରେ କବି ଆମକୁ ଜୀବନ ସଙ୍ଗୀତର ରାଗିଣୀ ଶୁଣାଇବେ ଓ ଆଶା ଆଶ୍ୱାସନାର ବାଣୀ ପ୍ରଦାନ କରି ଜୀବନକୁ ସମୃଦ୍ଧ କରିବେ । ମରିବା ଓ ବଞ୍ଚିବା ଭିତରେ ସେ ଏକ ବିକଳ ସାଲିସ୍ । ତେଣୁ କବିଙ୍କ ପାଇଁ ମୃତ୍ୟୁ ନର୍କର ଯନ୍ତ୍ରଣାନୁହେଁ, ଚରମବିଜୟର ଦ୍ୱାର ଦେଶ, ତନ୍ମୟ ତୀର୍ଥକ୍ଷେତ୍ର ଓ ତପସ୍ୟାରଫଳ ।

ଜୀବନର ଚର୍ତୁଦିଗରେ ମୃତ୍ୟୁ ପରିବ୍ୟାପ୍ତ । ମୃତ୍ୟୁର ସ୍ୱରୂପ କ'ଣ ? ମୃତ୍ୟୁ କ'ଣ ଜୀବନର ପରମ ଶତ୍ରୁ ନା ମିତ୍ର । ଖୁବ୍ ଆପଣାର ନିହାତି ପର । କିନ୍ତୁ ମୃତ୍ୟୁରେ ଯେ ଜୀବନର ପରିସମାପ୍ତି ଏ କଥା ପୂର୍ଣ୍ଣ ପ୍ରାଣରେ ହୃଦୟଙ୍ଗମ କରେ ସୌରୀନ୍ଦ୍ରଙ୍କ କାବ୍ୟ ପୁରୁଷ । ଜୀବନ ଓ ମୃତ୍ୟୁ ଉଭୟେ ହାତ ଧରାଧରି ହୋଇ ଚାଲିଛନ୍ତି ସୌରୀନ୍ଦ୍ରଙ୍କ କବିତାରେ । ଜୀବନ ଯାତ୍ରାର ପଥ ସରିଗଲେ ସେ ଯେମିତି ଜୀବନକୁ ଟାଣି ନେଇଯାଏ ମହାଶୂନ୍ୟର ଅତଳ ଗହ୍ୱରକୁ । ଯେଉଁଠି ଜୀବନ ନଥାଏ,ମୃତ୍ୟୁ ବି ନଥାଏ, ଥାଏ ଖାଲି ଅପହଞ୍ଚଅଦୃଶ୍ୟ ଆରଦୃଶ୍ୟ । ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଭିତରେ ଉଭେଇ ଯାଏ ତା'ର ରୂପ,ସେହି ଆରଦୃଶ୍ୟ

ଭିତରେ ନଥାଏ ଆକାଶର ଛାଇ କି ମଶାଣିର ଭୂଇଁ; ଭଙ୍ଗା ମାଠିଆ ଆଉ କୁଢ଼ କୁଢ଼ ହାଡ ମାଳ ଭିତରେ ଯେମିତି ମୃତ୍ୟୁର ହିଂସ୍ର ଆଖି ଖାଲି ଚାହିଁ ରହିଥାଏ ଶୂନ୍ୟତା ଭିତରେ । ଏ ଶୂନ୍ୟତାକୁ ଯେମିତି ଗିଳି ଦେଉଥାଏ କେଉଁ ଏକ କାଳହୀନ ଅପୂର୍ବ ପୂର୍ଣ୍ଣତା । ଯେଉଁଠି ଜୀବନ କେବଳ ମୃତ୍ୟୁର ନିୟନ୍ତ୍ରଣାଧୀନ ହୋଇ ତାକୁ ଦର୍ଶନ କରାଏ ଶୂନ୍ୟତାରେ ପୂର୍ଣ୍ଣତା । କବି ସୌରୀନ୍ଦ୍ର ବାରିକଏକ ଦାର୍ଶନିକ ସୁଲଭ ଦୃଷ୍ଟିଭଙ୍ଗୀରେ କବିତାରେ ମୃତ୍ୟୁର ମାନଚିତ୍ର ଉପସ୍ଥାପନ କରିଛନ୍ତି । କବିଙ୍କ ଭାଷାରେ:-

'ମୃତ୍ୟୁ ବୋଧ ହୁଏ
ଶୂନ୍ୟତାରେ ଭରପୂର କାଳହୀନଗୋଟିଏ ପୂର୍ଣ୍ଣତା
ଆଉ ସେ ପୂର୍ଣ୍ଣତା ପାଇଁ
କାଳର କୋଳରେ ଶଉନ୍ୟ ହୋଇଯିବା
ହୁଏ ତ ଜୀବନ ।''।୩୭।

ମୃତ୍ୟୁ ସୁନିଶ୍ଚିତଜାଣିମଧ୍ୟ ସୌରୀନ୍ଦ୍ରଙ୍କ କାବ୍ୟ ନାୟକ ଜୀବନ ଜୀଏଁ, ସଂଘର୍ଷ କରେ, ପରାଜିତ ହେଲେ ମଧ୍ୟ ବିଜୟର ଆଶା ରଖି ମୃତ୍ୟୁକୁ ଆତ୍ମିୟ କରେ । ଭଙ୍ଗା ଲାଇଟ୍ ଓ ଫୁଟା ଲଣ୍ଠନ ଧରି ରାସ୍ତାରେଖଇ ପଇସା ବିଞ୍ଚି ବିଞ୍ଚି ମୃତ୍ୟୁର ଗହଗହ ନୀରବତାକୁ ଉପଲବ୍ଧି କରେ, ଦେହର ଜଖମ ଭିତରେ ।ସମୟ ଧୀରେ ଧୀରେ ଗଡ଼ିଯାଏ । ଅଧା ସ୍ୱପ୍ନ ଅସଜଡା ଯନ୍ତପାତିକୁ ନେଇ ଜୀବନ ଗଢ଼େ ସିନା, ହେଲେ ତାଙ୍କ କାବ୍ୟ ନାୟକ ଅଭିବ୍ୟକ୍ତି ପ୍ରଦାନ କରେ:-

ମୁଁ ଜାଣି ପାରୁ ନଥାଏ ମରଣ କ'ଣ
ଚକ ତଳେ ପେଷି ହୋହଇଯିବା ନା ଚୁରମାର ପୃଥିବୀର
ହାଉଯାଉ ଶୂନ୍ୟତାଭିତରେଏକା ରହିଯିବା ।୩୮।

ସୌରୀନ୍ଦ୍ରଙ୍କ କାବ୍ୟନାୟକ ଭୀରୁ ନୁହେଁ । ସେ ମୃତ୍ୟୁସହ ଯୁଦ୍ଧପାଇଁ ସର୍ବଦା ପ୍ରସ୍ତୁତ । ସେ ମୃତ୍ୟୁର ଅନ୍ଧକାର ଭିତରୁ ଜୀବନର ଆତ୍ମୀୟତାକୁ ଉପଲବ୍ଧି କରିବା ପାଇଁ କାବ୍ୟନାୟକ ଛୋଟ ଛୋଟ କଥାକୁ ନଜର ରଖେ ତାକୁ ଆପଣାର କରେ । ସୌରୀନ୍ଦ୍ରଙ୍କ କାଷାରେ:-

ଚୁପ୍ ଚାପ୍ ପଡ଼ିଥାଏ / ପଡ଼ି ପଡ଼ି ଭାବୁଥାଏ
ଏଇ ବୋଧହୁଏ ମରଣ / ଦେହ ପଡି ରହେ
କାମ ନଥାଏ / ସାଇକେଲ୍ ଥାଏ, ଗଡ଼ିବା ନଥାଏ ।୩୯।

ଆର୍ବିଭାବ ଓ ତିରୋଧାନ ପ୍ରକୃତିର ନିୟମ । ପ୍ରବେଶ ଓ ପ୍ରସ୍ଥାନ ଜନ୍ମ ମୃତ୍ୟୁର ଚାପ ଖେଳ । ମୃତ୍ୟୁର ରୂପରେଖ ଓ ରହସ୍ୟ ସମ୍ପର୍କରେ କାବ୍ୟନାୟକ ଅନୁସନ୍ଧିତ୍ସୁ । ପରଲୋକରପରିଚୟ ବିଷୟରେ ଅନେକ ଅସମାହିତ ପ୍ରଶ୍ନ ଉଠେ କାବ୍ୟ ନାୟକ ମନରେ, ବିଶେଷ କରି ମୃତ୍ୟୁର ସ୍ୱରୂପ ସମ୍ପର୍କରେ । ଜୀବନର ଶେଷ ଲକ୍ଷ୍ୟ କ'ଣ ମୃତ୍ୟୁ ? Death is the final goalof life. ଦୁଃଖର ଦ୍ରାଘିମା ଭିତରେକାବ୍ୟ ନାୟକ ଜୀବନ ବଞ୍ଚିବାକୁ

ଭଲପାଏ, କିନ୍ତୁ ମୃତ୍ୟୁର ନା ଶୁଣିଲେ ଭୟରେ ଶିହରୀ ଉଠେ । କାବ୍ୟ ନାୟକର ଜୀବନ ପ୍ରତି ମୋହ ଅନେକ । ଜୀବନର ଅନ୍ୟନାମ ଯନ୍ତଣା ହେଲେ ବି ତା' ଭିତରେ କାବ୍ୟ ନାୟକ ଆନନ୍ଦ ପାଏ । କାଣିଚାଏ ସୁଖ, ଟିକିଏ ଆହ୍ଲାଦ ତା'ର ପାହାଡ଼ ପରି ଦୁଃଖକୁ ପୋଛିଦିଏ । କେଉଁ ଏକ ଅଜଣା ଅଶୁଣା ଅନ୍ଧାରି ମୂଲକରେ ମୃତ୍ୟୁର ନଗର ? ଯେଉଁଠି କି ଯିଏ ଗଲେ ଆଉ କେବେ ଫେରନ୍ତିନି ? ସବୁଦିନ ପାଇଁ ନା କଟିଯାଏ ସଂସାର ଖାତାରୁ । ଏପରିକି ଅନେକ ପ୍ରଶ୍ନର ଉତ୍ତର ଖୋଜେ କାବ୍ୟନାୟକ ନା ପ୍ର ଶ୍ନର ଉତ୍ତର ପାଏ, ନା ମୃତ୍ୟୁର ଠିକଣାପାଏ । କେବଳ ଏତିକି କାବ୍ୟନାୟକ ବୁଝେ 'ମାଟିର ଏ ଘଟ ମିଶିବ ମାଟିରେ' । କବି କାବ୍ୟ ନାୟକର ମାନସିକତାକୁ ହୃଦୟଙ୍ଗମ କରି ପ୍ରକାଶ କରିଚନ୍ତି;-

ମରିଯିବା କ'ଣ ଏଇମିତି ନ ଆସିବା
ଇସ୍କୁଲ ନଆସିବା, ଖେଳକୁ ନଆସିବା
କେଉଁଠିକି, କା ପାଖକୁ କେବେ ନ ଆସିବା ।୪୦।

ଅନନ୍ତ ଅନୁପସ୍ଥିତି ହିଁ ମୃତ୍ୟୁ । ନିତ୍ୟନିୟତ ଉପସ୍ଥିତି ହିଁ ଜୀବନ । କୀଟରୁ ଓଟ, ଦୁବରୁଦ୍ରୁମ, ସମସ୍ତେ ମହାକାଳର ଅଧୀନ । ମୃତ୍ୟୁର ଦୃଷ୍ଟିରୁ ସାଧାରଣ ଚଢ଼େଇଟି ବାଦ୍ ଯିବ କିପରି ? ମହାନିଦ୍ରାରେ ମଶାଣୀ ଶେଯରେ ସବୁଦିନ ପାଇଁ ଶୋଇଯିବାହିଁ ନିୟତିର ନିୟମ । କାମ ସରୁ କି ନସରୁ, ଘର ହେଉ କି ନହେଉ ସନ୍ତାନ ସନ୍ତତିଙ୍କଠାରେ ପର ଲାଗିଥାଉ କି ନଥାଉ ତାହାର ହିସାବ ରଖେନି ମୃତ୍ୟୁ ବିନା ମେଘରେ ବଜ୍ରପାତ ପରି ଆସେ, ସମସ୍ତଙ୍କ ଆଖି ସାମ୍ନାରୁ ଧରି ନେଇ ଚାଲିଯାଏ । ଛଞ୍ଚାଣ ଶିକାରକୁ ନେଇ ଉଠିଯିବା ପରି ମୃତ୍ୟୁ ସବୁ ସମ୍ଭାବନା ଭିତରୁ ସମର୍ଥ ମଣିଷଟିକୁ ନେଇ ଚାଲିଯାଏ । ଶୁକିଲା ପତ୍ର ବୃକ୍ଷରୁ ଝରି ପଡ଼ିବାପରି ମଣିଷ ଦିନେ ନା ଦିନେ ଜୀବନ ବୃକ୍ଷରୁ ଖସି ପଡିବ, ନା ତା' ଆଖିରେ ପୂର୍ବର ଚାହାଁଣି ଥିବ, ପୃଥିବୀ ପରିକ୍ରମା କରିବାର ସାହସ ଥିବ ? ନରମ ତୁଳା ପରି କେବଳ ଶେଯ ଧରିଥିବ କବି ସୌରୀନ୍ଦ୍ର 'ଚହଲା ଛାଇରେ ଘଡ଼ିଏ' କବିତା ସଂକଳନରେ ସ୍ଥାନିତ 'ଜାପୁ' କବିତାରେ ପ୍ରକାଶ କରିଛନ୍ତି:-

ଏଇମିତି ପଡ଼ିପଡ଼ି ଦିନେ ସେ ଶୋଇଗଲା
ଶୁକିଲା ପତ୍ର ପରି ଖଡ଼ ଖଡ଼ ମେଲା ଆଖିରେ
ଚାହାଁଣିନଥିଲା, ମରଣ ବି ନାଚୁ ନଥିଲା ଆଉ ।୪୧।

ଜୀବନସହ ମୃତ୍ୟୁର ସଂପର୍କ ନିବିଡ଼ । ଜୀବନ ଅଛିତ ମୃତ୍ୟୁ ନିଶ୍ଚିତ । ବୟସର ବ୍ୟବଧାନ, ତାରତମ୍ୟ ମୃତ୍ୟୁର ଆଗମନରେ ଜୀବନର ଅବସାନ । ମାପି ବସିଲେ ଜଣାପଡେନି ଜୀବନଠାରୁ ମୃତ୍ୟୁର ବ୍ୟବଧାନ । ସତେ ଯେପରି ମନେ ହୁଏ ଦୀପ ତଳର ଅନ୍ଧାର ପରି ମୃତ୍ୟୁ । ଅନ୍ଧକାର ଆଲୋକକୁ ଆବୋରିଲା ପରି ମୃତ୍ୟୁ ଜୀବନକୁକୋଳାଗ୍ରତ କରେ । ଦୀପ ଲିଭିଯାଏ ଜୀବନ ଚାଲିଯାଏ । ବିକାଶରେ ଜୀବନର ପ୍ରଶାନ୍ତି । ବିଲୟରେ

ଜୀବନର କ୍ଷତି । ମୃତ୍ୟୁ ଆପଣାର ଚିରସହଚର, ଶରୀର ଛାଇ ପରି, ଆଖି ପତା ତଳର ଅନ୍ଧାର ପରି । ନୀଡ଼ ପରି ନିବିଡ଼, ଦୁଃଖ ପରି ନିଜର ମୃତ୍ୟୁ । କବି ସୌରୀନ୍ଦ୍ର ବାରିକ୍ ବିଗତସ୍ମୃତିକୁ ମନେ ପକାଇ ମୃତ୍ୟୁର ଚିତ୍ରକୁ 'ତୁମେ କୁହତ' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ-

ଝରି ପଡୁଥିବା ପତରେ ପତରେ ପାଚିଲା ଅନନ୍ତ
ମହା ମୃତ୍ୟୁ ·
ମହା ଜୀବନ ।୪୨।

ମୃଥ୍ୟୁ ଅଜଣା ଅଚିହ୍ନା ଅତିଥି ପରି ଆକସ୍ମିକ ଆସିବ । ଜୀବନ ସଉଦା କିଣାବିକା ସରିତିବ କି ନାହିଁ ସନ୍ଦେହ । କେତେ କଥା ବୁଲେଇ କହି ମୋହିବ ଅତିଥି । ଅଚାନକ ଆପଣାର କରିନେବ । ଅନେକ ଦିନରୁ ଚିହ୍ନିଲା ପରି ଲାଗୁଥିବ, ତଥାପି ଭରସାପାଉନଥିବ ଅତିଥିଙ୍କ ସହ ମୁଲାକାତ କରିବାକୁ । କହିବାକୁ ସୁଯୋଗ ଦିଅନ୍ତି ନାହିଁ କେବଳ କହିଚାଲିଥାନ୍ତି । ଅତିଥିଙ୍କ ଗପ ଭିତରେଘର ସଂସାର ସବୁ କିଛି ଭୁଲିଯାଏ କାବ୍ୟପୁରୁଷ । ଭାବେ ଖୋଲା ଭାବରେ ଅତିଥିଙ୍କ ଦୃଢ଼ ପ୍ରେମ ଫାସରେ କବଳିତ ହୁଏ । ବାସ୍ତବିକକବି ସୌରୀନ୍ଦ୍ର ମୃତ୍ୟୁକୁ ଅତିଥି ଭାବରେ ଯେପରି ଚିତ୍ରଣ କରିଛନ୍ତି ତାହା ଅନ୍ୟତ୍ର ବିରଳ । 'ଆକାଶ ପରି ନିବିଡ଼' କବିତା ସଂକଳନରେ 'ଅତିଥି' ଶୀର୍ଷକ କବିତାରେ କି ପ୍ରକାଶ କରିଛନ୍ତି;-

'ସେତେବେଳେ ଆସିବ ସେ ହସିହସି
ପରିଚିତ ବନ୍ଧୁଟିଏ ପରି
ଅରୂପରେ ତୋତେ ସେ ମୋହିବ,
ନୀରବତାର ବେଣୁକୁ ବାଇବ
ତା'ପରେ କୋଳକୁ ତା'ର ଟାଣି ନେବ
ଉଦାସୀନ ଆସକ୍ତିରେ ଭରି ।୪୩।

ସର୍ବଦା ଶୂନ୍ୟ ଗର୍ଭା ମୃତ୍ୟୁ । କେବେ କୌଣସି ମତେ ପୂର୍ଣ୍ଣ ହୁଏନି ମୃତ୍ୟୁର କୋଳ । ଦିନରାତି ଅହୋରାତ୍ର ଚବିଶ ଘଣ୍ଟା ମୃତ୍ୟୁର କାଉଣ୍ଟର ଖୋଲା । ମୃତ୍ୟୁର କୋଳରୁ କେତେ ହସି ହସି ଯନ୍ତ୍ରଣାରେ ସଢ଼ି ସଢ଼ି ଆସନ୍ତି, ଆଉ କେତେ ନୀରବରେ ସ୍ୱଇଛାରେ କୋଳକୁ ତା'ର ଶେଷ ଆଶ୍ରୟ ମଣନ୍ତି । ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତେ ଆପଣାର ମୃତ୍ୟୁର । କାଳଚକ୍ରର ଘୂର୍ଣ୍ଣନ ଭିତରେ କିଏ ସଅଳ ଯାଏ ତ ଆଉ କିଏ ଅଳସରେ ଯାଏ । ଆସିଛି ମାନେ ଯିବାଟା ନିଶ୍ଚିତ । ସତେ ଯେପରି ମନେ ହୁଏ ମୃତ୍ୟୁ ଏକ ଶୂନ୍ୟଗର୍ଭା ଉଦାର ଆକାଶ ଆଉ ସବୁ ମଣିଷ ହରଚଙ୍ଗୀ ଅସଂଖ୍ୟ ଚଢ଼େଇ । କବି ସୌରୀନ୍ଦ୍ର ଚିତ୍ରକଳ୍ପ ମାଧ୍ୟମରେ ମୃତ୍ୟୁରେ ମାନଚିତ୍ର 'କାଉଣ୍ଟର' କବିତାରେ ଯେପରି ଉପସ୍ଥାପନ କରିଛନ୍ତି ତାହା ବେଶ ମର୍ମିଳ । କବିଙ୍କ ଭାଷାରେ :-

ବନ୍ଧୁ ! ବ୍ୟସ୍ତ କାହିଁକି ? ଏ କାଉଣ୍ଟରରେ ଯେ କେବେ
ହାଉସ୍ ଫୁଲ ନୋଟିସ ଝୁଲେନି । ଏ ଯେମିତି
ଶୂନ୍ୟଗର୍ଭା ଉଦାର ଆକାଶ ଆଉ ଆମେ ସମସ୍ତେ
ଉଡ଼ି ବୁଲୁଥିବା ହରରଙ୍ଗୀ ଅସଂଖ୍ୟ ଚଢ଼େଇ ।୪୪।

କବି ସୌରୀନ୍ଦ୍ରଙ୍କ କବିତାରେ ମୃତ୍ୟୁର ମାନଚିତ୍ର ବେଶ ସରଳ ଓ ଭାବଉଦ୍ଦିପକ । ପ୍ରତୀକ, ଚିତ୍ରକଳ୍ପ ମାଧ୍ୟମରେ ମୃତ୍ୟୁର ଉପସ୍ଥିତିକୁ କବି ସୁନ୍ଦର ଭାବରେ କବିତାରେ ଉପସ୍ଥାପନ କରିଛନ୍ତି ।

## (ଘ) ସମାଜ ଚେତନା :

ସମାଜ ଶିକ୍ଷାର ଗନ୍ତାଘର । କବି ଏକ ସାମାଜିକ ଜୀବ । ସାଧାରଣ ମଣିଷ ପରି କବିର ଜୀବନ, ଯୌବନ, ଘର ସଂସାର । ସମାଜର ପ୍ରଗତୀରେ କବିର ଭୂମିକା ଅନସ୍ୱୀକାର୍ଯ୍ୟ । ସାଧାରଣ ଜୀବନ କବି ଅତିବାହିତ କଲେ ବି ତା'ର ଦୃଷ୍ଟି ଅସାଧାରଣ । ସମାଜର ଦୋଷ ଦୁର୍ବଳତାକୁ ଦେଖି କବି ପରିବର୍ତ୍ତନ ପାଇଁ ଲେଖନୀ ଚାଳନା କରେ । ସମାଜର ଜାଗ୍ରତ ପ୍ରହରୀ କବି । କେଉଁଠି ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ କବି କବିତାରେ ଦୃଢ଼ସ୍ୱର ଉତ୍ତୋଳନ କରେ ତ ଆଉ କେବେ ସମତା ପାଇଁ କାରାବରଣ କରେ । ସମାଜରେ ବାସ କରୁଥିବା ମଣିଷ ମୁହଁରେ ଟିକେ ହସ, ହୃଦୟରେ ଟିକେ ଆନନ୍ଦ ପାଇଁ କବିକବିତାରେ ସ୍ୱର ଉତ୍ତୋଳନ କରେ । ଜଣ ପାଇଁ ନୁହେଁ ଗଣ ପାଇଁ କବି ଲେଖନୀ ଚାଳନା କରେ । ଦୀନହୀନ ମଣିଷେ ଯେତେବେଳେ ସାମାଜିକ ନ୍ୟାୟରୁ ବଞ୍ଚିତ ହୁଏ, ଦାନାକନା ଯୋଗାଡରେ ଅପାରଗ ହୁଏ ଧନୀମାନେ ଅଧିକରୁ ଅଧିକ ଧନଶାଳୀ ହୋଇଯାଆନ୍ତି, ଗରୀବ ଦିନକୁଦିନ ତଳିତଳାନ୍ତ ହୋଇଯାଆନ୍ତି ସେହି ସମୟରେ କବିର ହୃଦୟ ବିଳାପ କରେ ସମାଜର ଏପରି ଅବ୍ୟବସ୍ଥାକୁ ଅବଲୋକନ କରି । କବି ତାର କବିତାରେ ଦୃଢ଼ ପ୍ରତିବାଦର ସ୍ୱର ଉତ୍ତୋଳନ କରେ । ପଞ୍ଚମହାଭୂତ ସମ ପରିମାଣରେ ସମସ୍ତଙ୍କୁ ଉଦାର ହୃଦୟରେ ସାହାଯ୍ୟ କରନ୍ତି । ସୂର୍ଯ୍ୟ, ଚନ୍ଦ୍ର, ଜଳ, ଆକାଶ, ମାଟି, ପବନ ଅକାତରରେ ବିନା ଦ୍ୱିଧାରେ ଧନୀ ନିର୍ଦ୍ଧନ ଅବିଚାରରେ ସମସ୍ତଙ୍କ ଜୀବନକୁ ସମୃଦ୍ଧ କରନ୍ତି ଓ ସୃଷ୍ଟିର ବିକାଶରେ ସମ ପରିମାଣରେ ନିଜକୁ ଉତ୍ସର୍ଗ କରନ୍ତି । ତେଣୁ ପ୍ରକୃତି ହୁଏ ସୌନ୍ଦର୍ଯ୍ୟର ଗନ୍ତାଘର । କବିର ଯୁକ୍ତି ଈଶ୍ୱରଙ୍କ ସୃଷ୍ଟିରେ ସମସ୍ତେ ସମାନ । ସେଥିରେ ମୋର ତୋର ଭାବ କାହିଁକି ? ଉଚ୍ଚ ନୀଚ ଭାବ କାହିଁକି ?

ପରିବେଶ ଓ ପରିସ୍ଥିତିର ଦାସ ମଣିଷ । ଆଗରୁ କହିଛି ପ୍ରତ୍ୟେକ କବି ଜଣେ ଜଣେ ମଣିଷ କିନ୍ତୁ ପ୍ରତ୍ୟେକ ମଣିଷ ଜଣେ ଜଣେ କବି ନୁହଁନ୍ତି । କବି ବସବାସ କରୁଥିବା ପରିବେଶ ଭିତରୁ କବିତାର ଉପାଦାନା ସଂଗ୍ରହ କରେ । ଜୀବନ ବଞ୍ଚିବାର ଶୈଳୀ, ସଂସ୍କୃତି ଓ ପ୍ରଗତିର ସ୍ଥିତିକୁ ଅନୁଭବ କରି କରି କବିତା ରଚନା କରେ । କବିତାର ସୃଷ୍ଟି ହୁଏ କବିର ଜୀବନ ଚଳଣିରୁ ଓ ସାମାଜିକ ପରିବେଶରୁ । ପରିବେଶ ପରିସ୍ଥିତି ଯେପରି କବିକୁ ସୁହାଏ କବି

ସେପରି କବିତା ରଚନା କରେ ଅନ୍ଧବିଶ୍ୱାସ, ଅପସଂସ୍କୃତି ମୁଳୋତ୍ପାଟନ ପାଇଁ କବି କବିତାରେ ପରାମର୍ଶ ଦିଏ । କବିର ସ୍ୱକୀୟ ଅନୁଭୂତି ଓ ଦର୍ଶନ ଯେତେବେଳେ ଜଣର ନହୋଇ ଗଣର ହୋଇଯାଏ କବି ସେତେବେଳେ ପାଠକୀୟ ସ୍ୱୀକୃତି ଲାଭ କରେ । କବି ସାମାଜିକ ଜୀବ ହୋଇଥିବାରୁ ତା'ର ସୃଷ୍ଟିରେ ସାମାଜିକ ଚିତ୍ର ପ୍ରତିଫଳିତ ହେବା ସ୍ୱାଭାବିକ୍ ।

ସୌରୀନ୍ଦ୍ର କେବଳ ସ୍ୱପ୍ନ-ସଂପକ୍ତ-ସ୍ୱୀକାରୋକ୍ତିର କବି ନୁହଁନ୍ତି ସମକାଳୀନ ସମାଜରେ ଦୈନନ୍ଦିନ ଘଟୁଥିବା ଯାବତୀୟ ଘଟଣା ଓ ଚରିତ୍ର ଗୁଡ଼ିକୁ ନେଇ ତାଙ୍କ କବିତା ଋଦ୍ଧିମନ୍ତ । ତାର ଚର୍ତୁଦିଗରେ ଘେରି ରହିଥିବା ପରିବେଶ ଓ ତା'ର ଜୀବନ୍ତ ଅନୁଭୂତିକୁ ପ୍ରକାଶ କରିବାରେ କବି ବେଶ୍ ସିଦ୍ଧହସ୍ତ । ଅନନ୍ତ ଅନ୍ୱେଷାଣ ଓ ସୂକ୍ଷ୍ମ ନିରୀକ୍ଷଣ ତାଙ୍କ କବିତା ଗୁଡ଼ିକୁ କରିଛି ଚିର ଭାସ୍ୱର । ପତ୍ନୀପ୍ରେମ ଓ ପାରିବାରିକ ସଂପ୍ରୀତି ବ୍ୟତିତ ବାହ୍ୟ ଘଟଣା ଓ ଚରିତ୍ରମାନଙ୍କ ସହ ତାଙ୍କର ଯୋଗସୂତ୍ର ଆତ୍ମିକ । କବିକର୍ମ ବ୍ୟକ୍ତିଗତ ହୋଇପାରେ ମାତ୍ର ତା'ର ଚାରିପାଖରେ ଘଟୁଥିବା ଘଟଣାବଳୀ ପ୍ରତି ସେ ବେଶ୍ ସଚେତନ । ମର୍ମିଳ ମୁହୂର୍ତ୍ତ ଗୁଡ଼ିକ ଆବେଗପୂର୍ଣ୍ଣ ଓ ଆନ୍ତରିକ କବିଙ୍କ କବିତାରେ । ଭଲ କବି ମାତ୍ରେ ବହିର୍ବିଶ୍ୱ ସଚେତନ । ତାରି ଭିତରେ କବିର ଆତ୍ମ ଉନ୍ମୋଚନର ଆକାଂକ୍ଷା । ନଚେତ ପୂର୍ଣ୍ଣତା ପ୍ରାପ୍ତିର ପ୍ରତ୍ୟାଶା ଅସମ୍ଭବ । C.M. Bowra Poetry and Politics ଗ୍ରନ୍ଥରେ ପ୍ରକାଶ କରିଛନ୍ତି:- Poetry is concerned with our whole sentiment being different to what happens around us and is likely sooner or latter to strike us at some vital point.।୪ ୫। ଚତୁପାର୍ଶ୍ୱକୁ ଆଖି ବୁଜିଦେବା ଭଲ କବିତାର ଲକ୍ଷଣ ନୁହେଁ । ସମାଜ ସହ କବିର ସମ୍ପର୍କ ସ୍ୱୀକୃତ । ସାଧାରଣର ଦୁଃଖ କବିର ଦୁଃଖ ହେଲେ ଏଇ ସଚେତନତା ତା'ର ବ୍ୟକ୍ତିଗତ କାବ୍ୟିକ ଅନୁଭବ ମାଧ୍ୟମରେ ରୂପାୟିତ । ସାମାଜିକ ସତ୍ୟ (Social Truth) କାବ୍ୟିକ ସତ୍ୟ (Poetic Truth) ନୁହେଁ । କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଆନ୍ଦୋଳନର ସିଦ୍ଧାନ୍ତ କବି ପକ୍ଷରେ ଗ୍ରହଣୀୟ ନୁହେଁ । କବି ଆପଣା ଭିତରେ ସ୍ୱାଧୀନ ଓ ପୂର୍ଣ୍ଣତାର ସନ୍ଧାନୀ । ଜୀବନର ସମଗ୍ର ରହସ୍ୟକୁ, ସମଗ୍ର ଜଟିଳତାକୁ ରୂପାୟଣ କରିବା ତା'ର ଧର୍ମ । ନିର୍ଦ୍ଦିଷ୍ଟ ସତ୍ୟ ପାଖରେ ଆତ୍ମ ସମର୍ପଣ କବିତା ପକ୍ଷରେ ଅଶୁଭଙ୍କର । ସାମାଜିକ ବାସ୍ତବତାର ଚେତନାୟିତ ସଂକ୍ରମଣ କବି ପୁରୁଷର ଚେତନାରେ ଯେଉଁଠି ଅନ୍ୱିତ, ସେଇଠୁ କବିତାର ସତ୍ୟ ଅନ୍ୱେଷଣର ଅୟମାରମ୍ଭ ।୪ ୬।

ଏଠାରେ ବର୍ହିବିଶ୍ୱ ପ୍ରତିଫଳିତ ବ୍ୟକ୍ତି-ବିଶ୍ୱର ଚେତନାସ୍ତରରେ । କବି ପୁରୁଷର ସମଗ୍ର ରକ୍ତ, ମାଂସ ଓ ଆତ୍ମାସହ ସମାଜର ସମଗ୍ର ଚେତନାୟିତ ଶରୀର ଯେତେବେଳେ ଏକୀଭୂତ ସେତେବେଳେ କାବ୍ୟିକ ଉଚ୍ଚାରଣ ଉଚ୍ଚକୋଟୀର ହେବା ସମ୍ଭବ । ସମାଜର ଫଟୋଗ୍ରାଫ ନୁହେଁ ତା'ର ଚେତନାୟିତ ସ୍ୱରୂପ ହିଁ କବିର ଧ୍ୟେୟ । ସାମାଜିକ ଦୁଃସ୍ଥିତିରେ କ୍ରୋଧ ଜର୍ଜରିତ ପ୍ରତିବାଦ ତୋଳିବା କି ନିର୍ଦ୍ଦିଷ୍ଟ ଆଦର୍ଶର ପ୍ରଚାର ଧର୍ମୀ ଇସ୍ତାହାର ଲେଖିବା କବି କର୍ମ ନୁହେଁ, ତାକୁ ଭୋଗ କରିବାହିଁ କବିର ନିୟତ । ସେହି ବେଦନାର୍ତ୍ତ ମୁହୂର୍ତ୍ତଟିରେ ଆନ୍ତରିକ ଆବେଗପୂର୍ଣ୍ଣ ସ୍ୱୀକାରୋକ୍ତି କବିପାଇଁ ଶୁଭଙ୍କର ।୪ ୭।

ଉପଦେଶ, ବିଦ୍ରୋହ, ଆଦେଶ କି ଆହ୍ୱାନ ତା'ର ଧର୍ମ ନୁହେଁ, ଆପଣା ଅସହାୟ ଅନୁଭବଟିର ଆନ୍ତରିକତାକୁ ସତ୍ୟଶୀଳ ଭାବେ ସ୍ୱୀକାର କରିବା ତା'ର ଧର୍ମ । କବି ପ୍ରତିବାଦୀ ସତ; ହେଲେ ଏ ପ୍ରତିବାଦ କବିତାର ଆତ୍ମାରେ ଅନ୍ତର୍ଲୀନ । ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପୂର୍ଣ୍ଣ ବକ୍ତବ୍ୟ ଉପସ୍ଥାପନ ବା ବିଦ୍ରୋହ ଉଦ୍‌ଘୋଷଣା ଠୁ ତା'ର ଦୂରତା ଅନିବାର୍ଯ୍ୟ । ସମାଜ ସଚେତନ ରହି କବିତା ମନସ୍କ ହେବା ତା'ର ଦାୟିତ୍ୱ । ତା ପରର ଦାୟିତ୍ୱ ସମାଜର ! ନଚେତ୍ ସେ ସ୍ୱଧର୍ମରୁ ବିଚ୍ୟୁତ ହୋଇ ଭଲ କବିତାଠୁ ଦୂରେଇ ଯିବା ଅସମ୍ଭବ ନୁହେଁ । କୋଳାହଳ କବିତା ପକ୍ଷରେ ଶୁଭଙ୍କର ନୁହେଁ । Words, after speech, reach / Into the silence.।୪୮। ନୀରବତା ହିଁ କବିତାର ଭାଷା । ନିର୍ଜନତା ହିଁ କବିର ନିୟତ । ଆଉ ଏଇ ନିର୍ଜନତାରେ ସମ୍ପର୍କର ସେତୁ ବାନ୍ଧିବା ହିଁ କବି କର୍ମ । ସୌରୀନ୍ଦ୍ରଙ୍କ ସମାଜ ସମ୍ପର୍କ ଏଇ ପର୍ଯ୍ୟାୟର । ସବୁଠି ବାସ୍ତବତାର ନିବିଡ଼ ସ୍ପର୍ଶ; ହେଲେ ରୋମାଣ୍ଟିକ୍ ଅନ୍ତର୍ଲୀନତା ଅବଧାରିତ । ଅନେକାଂଶରେ ବ୍ୟଙ୍ଗାତ୍ମକ ଏହି କବିତା ଗୁଡ଼ିକର ସ୍ୱର ବେଶ୍ ସମ୍ବେଦନଶୀଳ । ସମ୍ପର୍କ ଓ ଅନୁଭବ ବେଶ୍ ଆନ୍ତରିକ । ସୌରୀନ୍ଦ୍ର କବିତାକୁ ଜୀବନଠୁ ଭିନ୍ନ ଭାବନ୍ତି ନାହିଁ । ବରଂ ଜୀବନକୁ କବିତାକରିବାରେ ତାର ଶାନ୍ତି । କାବ୍ୟିକ ଉପାଦାନ ବ୍ୟକ୍ତିଗତ ପ୍ରେମ ହେଉ କି ସମାଜ ସମ୍ପର୍କ ହେଉ ସବୁଠି ଆପଣାକୁ ନିନିଡ଼ ଭାବରେ ଆବିଷ୍କାର କରିବାର ଆକାଙ୍‌କ୍ଷାରୁ ତାଙ୍କର କବିତା ଲେଖା । ଏଥିପାଇଁ ବାହ୍ୟଘଟଣା ଚରିତ୍ର ତାଙ୍କ ଭିତରେ ଯେଉଁ କ୍ରିୟା ପ୍ରତିକ୍ରିୟା ସୃଷ୍ଟିକରେ, କେଉଁ ନା କେଉଁ ସ୍ତରରେସେ ଗୁଡ଼ିକ ସହ ସେ ଆପଣାର କବି ସତ୍ତାକୁ ଅନ୍ୱିତ କରି ସେଇ ମୁହୂର୍ତ୍ତଟିର ନିବିଡ଼ ଅନୁଭବଟିକୁ ସ୍ୱଭାବ, ସୁଲଭ ବ୍ୟକ୍ତିଗତ ଶୈଳୀରେ ରୂପାୟନ କରନ୍ତି ।୪୯।

'ଗୁଣୁ ଗୁଣୁ ଚିତ୍ରପଟ'ର ଅଧିକାଂଶ କବିତାରେ ସମାଜ ଚେତନାର ସ୍ୱରସ୍ପଷ୍ଟ । 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଦେଖିଥିବା ଗୋଟିଏ ଏକସିଡେଣ୍ଟର ଦୃଶ୍ୟ' କବିତାରେ କବି ନିଛକ ସମାଜ ଚିତ୍ର ଉପସ୍ଥାପନ କରିଛନ୍ତି । ଦୈନନ୍ଦିନ ଜୀବନରେ ଦୁର୍ଘଟଣା ଆକସ୍ମିକ । ଏକ ଦୁଃଖଦ ଦୁର୍ଘଟଣା କବିଙ୍କ ସ୍ୱଚକ୍ଷୁରେ ଘଟିଯାଇଛି । ଗୋଟିଏ ଟ୍ରକ ସହିତ ଏକ ଶଗଡ଼ ଗାଡ଼ିର । ରାସ୍ତାର ଗଲା ଅଇଲା ଲୋକ ସବୁ ଦେଖେଣା ହାରି । ସମସ୍ତଙ୍କ ଆଖିରୁ ସମବେଦନାର ଲୁହ ଝରୁଛି, କିନ୍ତୁ କାହାକୁ କିଏ ସାହାଯ୍ୟ କରୁନାହାଁନ୍ତି । ସ୍ୱାର୍ଥ ସର୍ବସ୍ୱ ଦୁନିଆରେ ସମସ୍ତେ ଯେଝା ବାଟରେ ଯେଝା । କିଏ କାହାକୁ ପଚାରୁଛି ? କି ଦୁଃଖ ବୁଝିବାକୁ କାହାର ଅବସର ଅଛି । ପ୍ରତ୍ୟେକ ପ୍ରତ୍ୟେକଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ ସଫଳ ହେବାକୁ ସଂଗ୍ରାମରତ । ଉପରକୁ ଉଠିବାର ପ୍ରତିଯୋଗିତାରେ କିଏ ପ୍ରତିବନ୍ଧକ ସାଜୁଚି ତ ଆଉ କିଏ ଦୁର୍ବଳକୁ ଦଳି ଚକଟି ତା'ର ଆହାର ଉପରେ ପାହାର ଦେଇ ଉପରକୁ ଉଠୁଛି । ପାଞ୍ଚ ଲୋକରେ ଗଣା ହେଉଛି, ଆଖି ଦୁରୁସିଆ ଜୀବନ ବଞ୍ଚୁଛି । ଅନ୍ୟକୁ ଅଚାନକ ଅତିକ୍ରମି ଯିବାର ନିଶା ହିଁ ଏକ୍ସିଡେଣ୍ଟର କାରଣ । ରାସ୍ତାରେ ନିତ୍ୟନିୟତ ଘଟୁଥିବା ଦୁର୍ଘଟଣାର ଚିତ୍ର କବି ସୌରୀନ୍ଦ୍ର ବାରିକ୍ ସୁନ୍ଦର ଭାବରେ କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

ଟ୍ରକ ଆଉ ଶଗଡର ମୁହାଁ ମୁହିଁ ଧକ୍‌କା
ଶଗଡ଼ ଭାଙ୍ଗି ଯାଇଥିଲା, ରାସ୍ତାକଡରେ ଚାରିକାତ ମେଲି
ଟ୍ରକଟି ଓଲଟି ପଡିଥିଲା । ବଳଦ ଦୁଇଟି ମାଂସ ପିଣ୍ଡୁଳା ପରି
ରାସ୍ତା ମଝିରେ ପଡିଥିଲେ ଆଉ କିଛି ଦୂରରେ
ଆଣ୍ଠୁଏ ରକ୍ତରେ ବୁଡ଼ି ।୫୦।

ଆଜିର ମଣିଷ ଲାଞ୍ଚ ମିଛର ଜୀବନ ବଞ୍ଚୁଛି । ପ୍ରତି ମୁହୂର୍ତ୍ତରେ ଦୁର୍ନିତୀ କରୁଛି, ମିଛ କହୁଛି । ଗୀତା ଛୁଇଁ ଶପଥ କରୁଚି ସତ କହିବାକୁ; କିନ୍ତୁ ତାହା ମିଛ କହି ଚାଲିଛି । ଯେ କୌଣସି ଉପାୟରେ ଉପୁରି ଯଦି ଦି'ପଇସା ମିଳିଲା ତେବେ ତାହା ଘର ଖର୍ଚ୍ଚକୁ ନ ଆସି ସିଧା ସିଧା ମଦ ଭାଟିକୁ ଗଲା । ନାଲି ପାଣି ପେଟେ ପିଇ ଦେଲା ପରେ ପଞ୍ଚ ତାରକା ରେସ୍ତୋରାଁରେ କାଳଯାପନ କଲା । ମଣିଷ ସିନା ମଦପିଏ କିନ୍ତୁ ବେଳେବେଳେ ମଦ ମଣିଷକୁ ଚଲୁ କରିଦିଏ । ହୋଟେଲରେ ଖାଇ ହସ୍‌ପିଟାଲରେ ଶେଷ ବିଶ୍ରାମ ନିଏ ମଣିଷ । ସବୁକିଛି ବୁଝିଲା ବେଳକୁ ଡାକତରଖାନାରେ ତା'ର ଶବ ବ୍ୟବଛେଦ ହୋଇଥାଏ ।

ସାମାଜିକ ଚଳଣିରେ ମଦ୍ୟପ ମାନଙ୍କର କାର୍ଯ୍ୟ କଳାପକୁ କବି 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ପିଇ ପିଇ ଶେଷର' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

ସିଏ କ'ଣ ସତରେ କିଛି ଖୋଜୁଥିଲା ?
ହୋଟେଲ୍‌ରେ ଖାଇ ହସ୍‌ପିଟାଲ୍‌ରେ ମରିବାତ ଆଜିର ନିୟତି ।
ଏପରି ହରରଙ୍ଗୀ ଦିଗନ୍ତ ଭିତରେ
ଆଉ କେଉଁ ରଂଗ, କେଉଁ ମେଘ ରହିଗଲା ଯେ
ସେ ଏତେ ଖୋଜୁଥିଲା ?
ପୂର୍ଣ୍ଣତାର ଏତେ ଅନ୍ଧାର ଭଲ ଲାଗିଲାନି ଯେ
ଶେଷରେ ଶୂନ୍ୟତାର ରଂଗକୁ
ଢ଼କ ଢ଼କ ପିଇଗଲା ।୫୧।

ଯେତେବେଳେ ଜୀବନରେ ମଣିଷପ୍ରଥମ କରି ଲାଞ୍ଚନିଏ, ମିଛ କହେ, ସେତେବେଳେ ତା'ର ସ୍ୱାଭିମାନୀ ବିବେକ ବାଧାଦିଏ ଅଜଣା ଭୟରେ ଥରେ । କାଳକ୍ରମେ ଦୈନନ୍ଦିନ ଜୀବନରେ ପାଣିପାଗ ଅନୁସାରେ ମିଛ କହିବା ଲାଞ୍ଚ ନେବା ଅଭ୍ୟାସରେ ପରିଣତ ହୋଇଯାଏ । ମରିବା ପୂର୍ବରୁ ମଣିଷ ବହୁବାର ବିବେକକୁ ବଳୀଦେଇ ମୃତ୍ୟୁବରଣ କରିଥାଏ । କେବଳ ବଞ୍ଚିଥାଏ କ୍ରୀତଦାସର ଜୀବନ । ସେ ଜୀବନରେ ପୌରୁଷର ସ୍ୱାଭିମାନ ଅଛି ନା ମାନବିକତା ଅଛି ? କେବଳ ମାନବର ମୁଖାତଳେ ଦାନବଟିଏ ରାଜତ୍ୱ କରୁଛି । ପଶୁ ପାଲଟି ଯାଇଛି ମଣିଷ । ଛ'କୁ ନଅ କରିକାଳ କ୍ଷେପଣ ନୀତିରେଜୀବନ ବିସର୍ଜନ କରିବା ଛଡା ଆଉ କ'ଣ ଅଛି ତା'ର ଭାଗ୍ୟରେ ? ଜୀବନ ଦୁର୍ବିସହ । ଛଳନା, ଶଠତାରେ ପୂର୍ଣ୍ଣ

ହୃଦୟ ! ମାନବିକତାକୁ ହରିଲୁଟ କରିଛି ଅସୁସ୍ଥ ସମୟ । ବାସ୍ତବ ଜୀବନର ଚିତ୍ରକୁକବି ସୌରୀନ୍ଦ୍ର 'ପ୍ରଥମ ଲାଞ୍ଚ ନେଲା ଦିନ' କବିତାରେ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । କବିଙ୍କ ଭାଷାରେ:-

ପ୍ରଥମ ଲାଞ୍ଚ ନେଲା ଦିନ
x x x x x
ତାକୁ ଲାଗିଲା ଯେମିତି
ସେ ଗୋଟେ ଡଷ୍ଟବିନ - ଯା' ଭିତରେ
ଜମା ହୋଇଛି ପୃଥିବୀର ସବୁ ଆବର୍ଜନା ।
x x x x x
ପୃଥିବୀର ସବୁ ଭଲ ଜିନିଷ ତ
ନୂଆ ନୂଆ ଖରାପ ଲାଗେ;
ଶଳା ମୋତେ ଏମିତି ଜଣା ନାହିଁ ।୫୨।

ଅସହାୟ ବାର୍ଦ୍ଧକ୍ୟ ଜୀବନ । ଅତୀତର ବହୁବର୍ଣ୍ଣୀ ସ୍ମୃତି ଗୋଟି ଗୋଟି ମନେପଡ଼େ । ସବୁ ଅତୀତ ସୁବର୍ଣ୍ଣ ବର୍ତ୍ତମାନ ହୋଇଯାଆନ୍ତି ବୃଦ୍ଧର ମାନସ ପଟରେ । ସହଧର୍ମିଣୀର ପାନଭଙ୍ଗା, ପାନ ଛାଡ଼ିବା ପାଇଁ ଅହରହ ତାଗିଦ, ପରିବାର ଗୋଟାକର ଗତ ସବୁ ସବୁଜ ସ୍ମୃତି ପରି ବୁଢ଼ା କାଳରେ ମନ ଆଇନାରେ ଭାସିଉଠେ । ଅଝଟ ନାତି ଟୋକାର ଆଣାବାଡ଼ି ଲୁଚେଇବା, ପ୍ରଜାପତି ପରି ଚାରି ପାଖରେ ଚକର କାଟିବା, ଥଟ୍ଟାରେ ଖୁପୁରେଇ ଦେଇ ଖଟ ତଳେ ଯାଇ ଲୁଚିବା, ଏପରି ଅନେକ ସ୍ମୃତି ବାର୍ଦ୍ଧକ୍ୟକୁକରେ କରୁଣ ଓ ଅସହାୟ ଅନକେ ସମ୍ପର୍କୀୟ ଆସିଛନ୍ତି ଅକାଳରେ କାଳର ଶୀକର ହୋଇଛନ୍ତି । କେତେ ସାଙ୍ଗ ସାଥୀ ପରିଜନ ଦୂର ଦିଗ୍‌ବଳୟର ଆଁ ଭିତରେ ହଜି ଯାଇଛନ୍ତି ତା'ର ଇୟତା ନାହିଁ । ସବୁ ଅସଂଲଗ୍ନ ସ୍ମୃତିକୁ ପାଥେୟ କରି ବୁଢ଼ାକାଳ ଆଜି କରୁଣ ଓ ମଳିନ । ଅସହାୟ ଓ ରୁଗ୍ଣ ଅବସ୍ଥାରେ ଅତୀତକୁ ପାଉଁଶ ତଳର ନିଆଁ ପରି ଉଖାରିବା ଛଡା କ'ଣ ଅଛି କପାଳରେ ? ବାର୍ଦ୍ଧକ୍ୟ ଜୀବନ ଦିନର ଜହ୍ନ ପରିନିଃସଂଗ, ଗାଁ ଶେଷବରଗଛ ପରି ଅସହାୟ । ଅଣହେଲା ଓ ହତାଦର ଭିତରେ ବୃଦ୍ଧର ଆଖି ଦୁଇଟି ତେଲ ସରିଯାଇଥିବା ଲଣ୍ଠନର ବତୀ ପରି ମିଞ୍ଜି ମିଞ୍ଜି ସତେ ଯେପରି ମନେହୁଏ କାହାର ପ୍ରଶ୍ୱାସରେ ଲିଭିଯିବ । କବି ସୌରୀନ୍ଦ୍ର 'ବୁଢ଼ାକାଳ' କବିତାରେ ବାର୍ଦ୍ଧକ୍ୟ ସମୟର ଯେଉଁ ଚିତ୍ର କବିତାରେ ଉପସ୍ଥାପନ କରିଛନ୍ତି ତାହା ବେଶ୍ ମର୍ମିଳ ଓ ହୃଦୟସ୍ପର୍ଶୀ । କବିଙ୍କ ଭାଷାରେ:-

'କାଳର ପହ୍ନାରୁ ସ୍ମୃତିର କ୍ଷୀର ପରି
ବଉଳ ଗଛର ଛାଇ ତାକୁ ଭିଜାଇ ଦିଏ
ପାନବଟା ହୋଇ, ହାତବାଡ଼ି ହୋଇ ଆଉ ଶେଷରେ
ଚୂନ କାଳି ଘରୁ ଚାଲି ଯାଇଥିବା ସେ କୁନି ପ୍ରଜାପତିଟିର
ଭ୍ରାନ୍ତି ହୋଇ ମନରେ ଖାଲି ଚନ୍ଦନ ଲେପିଦିଏ ।୫୨।

..............................

ଅଭାବି ମଣିଷ ସାରା ଜୀବନ ଭଡ଼ା ଘରେ ଜୀବନ କାଟେ । ଯାହା କିଛି ମୁଣ୍ଡ ଝାଳ ତୁଣ୍ଡରେ ମାରି ରୋଜଗାର କରେ, ତାହା ତା'ର ତେଲ ଲୁଣ ପରିବାରକୁ ନିଅଣ୍ଟ । ଘର ଚଟିଆର ବସା ଦେଖି ଈର୍ଷା କରେ, ପକ୍ଷୀଟିଏ ହୋଇ ଖରା ବର୍ଷାରୁ ରକ୍ଷା ପାଇଁ ବସା ତିଆରି କରିପାରୁଛି ହାୟ ମଣିଷ ମୁଣ୍ଡ ଗୁଞ୍ଜିବା ପାଇଁ ବାରଦ୍ୱାର ଶୁଣ୍ଢିପିଣ୍ଡା ହେଉଛି । ଘର ମାଲିକର ଦୟାର ପାତ୍ର ହୋଇ କାଳାତିପାତ କରୁଛି ? ମଧ୍ୟବିତ ଜୀବନର ଛବି, କବି କବିତାରେ ଅଙ୍କନ କରିଛନ୍ତି । ପେଟ ପାଟିରୁ କାଟି ସଞ୍ଚୟ କରି ରଖିଥିବା ଅର୍ଥକୁ ଯେତେବେଳେ ସ୍ତ୍ରୀ ପୁଅର ଔଷଧ ଖର୍ଚ୍ଚ ପାଇଁ ଧରାଇ ଦିଏ ସେତେବେଳେ ସେ ଘର କଥା ଭୁଲିଯାଏ । ପଚାରିଲେ ଉତ୍ତର ଦିଏ ଛୁଆଟି ମୋର ବଞ୍ଚିଯାଉ, ସେ ମୋର ଚଳନ୍ତି ଘର, ଯୁଗ ଯୁଗର ଆଶ୍ରୟ । ସ୍ୱଳ୍ପ ବେତନ ଭୋଗୀ ଜୀବନର ମର୍ମିଳ ଚିତ୍ର କବି ସୌରୀନ୍ଦ୍ର ବାରିକ 'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଘର' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

'ମାସ ମଝିରେ ପିଲାର ଔଷଧ ପାଇଁ ଟ୍ରଙ୍କର ଲୁଗା ତଳେ ସଞ୍ଚି ରଖିଥିବା ଶେଷ ଟଙ୍କାଟି ମୋ ହାତକୁ ବଢ଼ାଇ ଦେଉଥିଲା ବେଳେ ମୁଁ ପଚାରିଲି 'ଘର କରିବା ଟଙ୍କାରୁ ଦେଉନ ତ ? ସେ ମୋତେ ଚାହିଁଲେ । ତାଙ୍କ ଆଖିରେ ସ୍ୱପ୍ନ ନଥିଲା, ଥିଲା ଗଭୀର ଅନୁଭୂତି । ପକ୍ଷୀ ହୋଇ ଉଡ଼ିବାର ଚତୁରତା ପରିବର୍ତ୍ତେ ଢ଼ୋକେ ପିଇ ଘଡ଼ିଏ ଜିଇଁବାର ଅସହାୟ ପ୍ରଚେଷ୍ଟା । ଅଳ୍ପ ହସି ଦେଇ ପ୍ରଶ୍ନ ପୁଣି ଥରେ କଲି । ଏଥର ସେ କହିଲେ 'ଛାଡ଼ ମୋର ଘର ଫର କିଛି ଦରକାର ନାହିଁ । ଛୁଆଟି ମୋର ବଞ୍ଚିଯାଉ । ସେଇ ମୋର ଚଳନ୍ତି ଘର ମୋ ଯୁଗ ଯୁଗର ଆଶ୍ରୟ'' ।୫୪।

ସମାଜରେ ଭଣ୍ଡ ପ୍ରତାରକମାନଙ୍କ ସଂଖ୍ୟା ଅଧିକ । ସନ୍ନ୍ୟାସୀ ସଂପୂର୍ଣ୍ଣ ରୂପେ ନିଜକୁ ଈଶ୍ୱରଙ୍କ ଅବତାର ପୁରୁଷ ଭାବରେ ସମାଜରେ ପ୍ରଚାର କରନ୍ତି । ସମସ୍ତ ପ୍ରକାର ଦୁର୍ନିତୀରେ ଲିପ୍ତ ରହି ଶିଷ୍ୟମାନଙ୍କୁ ଗଭୀର ଜୀବନ ଦର୍ଶନ କଥା କହି ଆକର୍ଷିତ କରନ୍ତି । ଧଳା ପୋଷାକ ତଳେ କଳା ବେପାର କରନ୍ତି । ଜୀବନ ଯୁଦ୍ଧରେ ହାରିଯାଉଥିବା ମଣିଷ ମାନଙ୍କୁ ଭବିଷ୍ୟତ କହନ୍ତି, କର୍ଣ୍ଣମନ୍ତ୍ର ଦିଅନ୍ତି । ରାତାରାତି ଲକ୍ଷ୍ମୀ ପ୍ରାପ୍ତି ନିମନ୍ତେ ଅର୍ଥ ଶ୍ରାଦ୍ଧ କରି ଯାଗଯଜ୍ଞ କରିବାକୁ ପରାମର୍ଶ ଦିଅନ୍ତି । ନାରୀର ତନୁତୀର୍ଥରେ ଅଗୋଚରରେ ଅବଗାହନ କରନ୍ତି । ନାରୀକୁ ମାଆ ପରି ସମ୍ମାନ ଦେବାକୁ ଭାଷଣରେ ଶିଷ୍ୟମାନଙ୍କୁ ଉପଦେଶ ଦିଅନ୍ତି । ସନ୍ନ୍ୟାସୀଙ୍କ କରୁଣା ଲାଭ କରିବାକୁ ଶିଷ୍ୟ ପ୍ରଶିଷ୍ୟ ପାଗଳ ହୁଅନ୍ତି । ଯୋଗୀ ସନ୍ନ୍ୟାସୀ ମାନଙ୍କର ଅସଲ ସ୍ୱରୂପକୁ କବି ସୌରୀନ୍ଦ୍ର ବାରିକ 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଆଜିର ଈଶ୍ୱର' କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

'ନିର୍ଗୁଣ, ନିର୍ଲିପ୍ତ ସେ ନିର୍ଭୀକ ସନ୍ନ୍ୟାସୀ
ପାଖରେ କଳାଧନର କୈବଲ୍ୟ, ଚାନ୍ଦର ବିଭୂତି
ଶିଷ୍ୟ ପାଗଳସେ କରୁଣାରେ ନାହିଁ ଊଣା
ଏମିତିକି ଶତ୍ରୁ ବି ପାଇଯାଏ କଉଡ଼ି ପାଉଣା

କଉଡ଼ି ଦଉଡ଼ି ତାଙ୍କ ବଡ଼ ବଡ଼ିଆ ଗାଈ
ଗୋଡ଼ ତଳକୁ ଖାଲି ଟାଣୁ ଯେ ଥାଉ ।୫୫।

ପାଠ ପଢ଼ି ଆଜିର ଯୁବକ ବେକାର । ବାପାଙ୍କ ହୋଟେଲରେ ଖାଇ, ଫୁଟ୍ ପାଥରେ ଶୋଇ, ପର ଝିଅ ବୋହୂ ମାନଙ୍କୁ କମେଣ୍ଟ ମାରିବାରେ ବେକାର ଯୁବକମାନଙ୍କ ସମୟ ଅତିବାହିତ ହୁଏ । କେବେ ଚା' ଦୋକାନରେ ତ ଆଉ କେବେ ଛକ ମଝି ପାନ ଗୁମୁଟିରେ ବସି ଗୁଲିଖଟି ଚାଲେ, ଗଲା ଅଇଲାରେ ଗୋଟେ ଅଧେ କଲେଜ ଝିଅଙ୍କୁ ଦେଖିଲେ ଟିଉାସାର୍ଟ ପକେଟରୁ ପାନିଆ କଢ଼ାଯାଇ ଅସଂଯତ କେଶକୁ ସାଉଁଳି ଦିଆଯାଏ । ଗୋଟେ ଦିଟା ହିନ୍ଦୀ ସିନେମାର ଗୀତ ଗାଇ ନିଜକୁ ହୀରୋ ମନେକରେ । ତୀବ୍ର ଦୁଃଖର ଦହନରେ ଜଳୁଥାଏ ବେକାରୀ ଯୁବକ । କିନ୍ତୁ ଉପରେମିଛି ମିଛିକା କୃତ୍ରିମ ହସର ପସରା ମେଲିଥାଏ । କବି ସୌରୀନ୍ଦ୍ର ତଥାକଥିତ ବେକାରୀ ଯୁବକ ମାନଙ୍କର ଅଭାବନୀୟ ଦୃଶ୍ୟକୁ କବିତାରେପ୍ରକାଶ କରିଛନ୍ତି । କବିଙ୍କ ଭାଷାରେ:-

କା' ପାଖରୁ ସେ ଏଠାକୁ ପଳାଇ ଆସେ !
ପଳାଇ ଆସେ ସେ କାହା ପାଖକୁ !
ଖାଁ ଖାଁ ଶୂନ୍ୟତାର ଅହଂଟିଏ ଧରି ଝିଅମାନଙ୍କୁ
କମେଣ୍ଟ କଲାବେଳେ ତା' ଦେହରେ କେଉଁ ନିର୍ଜନତା
ମନରେ କେଉଁ ଦୂରତାର କପୋତୀ ବାହୁନା ? ।୫୬।

ଶୂନ୍ୟତାର ନେଣଦେଣ ନୈତିକ ଅଧୋଗତିର ଚରମ ଚିତ୍ର । ବିଷୟ ବସ୍ତୁ ସାଂପ୍ରତିକ ସମାଜର ଦୈନିକ ଖବର ଧର୍ଷଣ । ଫୁଲଟିଏ ପରି ଝିଅଟିଏ ସ୍ୱପ୍ନ ଦେଖେ ପ୍ରଜାପତି କି ଭଅଁର ମହୁମାଛିର ସ୍ୱପ୍ନ । ହେଲେ ହଠାତ୍ ଝଡ ଆସେ । ଦଳେ ଡାହାଳ କୁକୁର ତା'ର ସର୍ବସ୍ୱ ଲୁଣ୍ଠି ନିଅନ୍ତି ହିଂସ୍ର ଭାବରେ । ହେଲେ ହଠାତ୍ ଝଡ ଆସେ । ଦଳେ ଡାହାଳ କୁକୁର ତା'ର ସର୍ବସ୍ୱ ଲୁଣ୍ଠି ନିଅନ୍ତି ହିଂସ୍ର ଭାବରେ । ହେଲେ କ'ଣ ବା ନେଇ ପାରନ୍ତି ସେମାନେ ! ନାରୀର ସମ୍ମତି ବିନା ଯୌନ କ୍ରିୟାର ଅର୍ଥ କାହିଁ ? ବଳପୂର୍ବକ ଜାନ୍ତବ ଯୌନଲିପ୍ସାରେ ମିଳନର ଆନନ୍ଦ କାହିଁ ? ଖାଲି ଅଦ୍ଭୁତ ଏକ ଆସୁରିକ ଆସ୍ଫାଳନର ନିର୍ଲଜ ପଦଚିହ୍ନ ! କେହି କିଛି ଦେବାର ନାହିଁ ? କି କେହି କିଛି ନେଇଯିବାର ନାହିଁ । କବି ସୌରୀନ୍ଦ୍ର ସେଥିପାଇଁ କହନ୍ତି 'ଶୂନ୍ୟତାର ଦେଣ ନେଣ' ତଥାପି ଝିଅଟିର ସ୍ୱପ୍ନ ମରିଯାଏ । କିଛି ନଦେଇ ବି ସେ ଶୂନ୍ୟ ହୋଇଯାଏ । କେଉଁଠି ପ୍ରତିବାଦର ସମ୍ଭାବନା ନାହିଁ ମାନବିକତାର ମୃତ୍ୟୁ ଘଟିଛି ଅନେକ ଦିନରୁ । ଅପସଂସ୍କୃତିର ଅପପ୍ରବାହରେ ଆସୁରିକତାର ବିଜୟ ପର୍ବ ଏ ! ସାମାଜିକତାର ସଂଜ୍ଞା ଖୋଜିବା ଅର୍ଥହୀନ ।୫୭।

'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନର ଅନେକ କବିତା ସମାଜ ଚେତନାରେ ଋଦ୍ଧିମନ୍ତ ।

................................

## (ଙ) ସୌନ୍ଦର୍ଯ୍ୟ ଚେତନା:

ସକଳ କଳା-ସୃଷ୍ଟି ମୂଳରେ ସୌନ୍ଦର୍ଯ୍ୟ ନିହିତ। ଶିଳ୍ପୀର ସେହି ସୌନ୍ଦର୍ଯ୍ୟ ବୋଧ ଓ ପ୍ରକାଶ କାମନାରୁ କଳାର ଜନ୍ମ। କବି ଶିଳ୍ପୀମାନେ ଅନ୍ତରରେ ଭୁବନ ମୋହିନୀ ସୌନ୍ଦର୍ଯ୍ୟଲକ୍ଷ୍ମୀଙ୍କର ସାକ୍ଷାତ ଲାଭ କରି କାବ୍ୟ ଶିଳ୍ପ ଆଦିରେ ତାହାର ବନ୍ଦନା ଗାନ କରିଥାନ୍ତି। ଏହି ସୌନ୍ଦର୍ଯ୍ୟବୋଧ କଳା ସୃଷ୍ଟି ମୂଳରେ ବିଦ୍ୟମାନ ଥିବାରୁ କବିର ସୃଜନ ବ୍ୟାପାର କ୍ରିୟାଶୀଳ ହୁଏ। କଳା ଓ ସୌନ୍ଦର୍ଯ୍ୟ ଶିଳ୍ପ କବିମାନଙ୍କ ପାଇଁ ଏକ ସାଧନା। ଏହା ମାନବ ସଂସ୍କୃତିର ସର୍ବୋତ୍ତମ ଆଦର୍ଶର ସୃଷ୍ଟି। ସୌନ୍ଦର୍ଯ୍ୟ ପ୍ରତି ଆଦିମ କାଳରୁ ମାନବ ମନର ଏହି ଜାଗରୁକତା ଫଳରେ ସେ ଉର୍ଦ୍ଧ୍ୱୋନ୍ମୁଖ ଚେତନାର ବିକାଶ କରି ଚାଲିଛି। ଲଳିତ କଳା ମାନବର ନିରନ୍ତର କଳା ସାଧନାର ଉପଯୁକ୍ତ ମାଧ୍ୟମ।୫୮।

ଆନନ୍ଦ ପ୍ରଦାନ କରିବା କଳାର ଲକ୍ଷ୍ୟ। କଳା ବା କବିତା ସୃଷ୍ଟି ମୂଳରେ କବିର ସୌନ୍ଦର୍ଯ୍ୟ ଚେତନା ନଥିଲେ ପାଠକର ଆନନ୍ଦ ପ୍ରାପ୍ତି ଘଟେ ନାହିଁ। ସୌନ୍ଦର୍ଯ୍ୟ ସହିତ ଆନନ୍ଦର ନିତ୍ୟ ସହାବସ୍ଥାନ; ଅର୍ଥାତ ସୌନ୍ଦର୍ଯ୍ୟାନୁଭୂତିରେ ଆନନ୍ଦ ପରିଣାମ ସ୍ୱରୂପ ଲାଭ କରିଥାଏ। ପାର୍ଥିବ ସୌନ୍ଦର୍ଯ୍ୟ, କବି କଳ୍ପନାର ଇନ୍ଦ୍ରଧନୁ ରଂଗରେ ରଞ୍ଜିତ ହୋଇ କଳାରେ ଚିରନ୍ତନତା ପ୍ରାପ୍ତ ହୁଏ। କବିମାନଙ୍କ ବାକ୍ ଧର୍ମ ମଧ୍ୟରେ ଶୋଭନ ଲକ୍ଷ୍ମୀ ଅବସ୍ଥାନ କରନ୍ତି - ''ଭଦ୍ରୈଷାଂ ଲକ୍ଷ୍ମୀର୍ନିହିତାଧି ବାଚି।'' କଳା ସୌନ୍ଦର୍ଯ୍ୟକୁ ଘେନି ପ୍ରକାଶ ପାଏ ଓ କଳାରେ ରୂପାନ୍ତରିତ ହୋଇ ସୌନ୍ଦର୍ଯ୍ୟ ପ୍ରତିଷ୍ଠା ଲାଭ କରେ।୫୯।

ରବୀନ୍ଦ୍ରନାଥ ଆନନ୍ଦ ଓ ସୌନ୍ଦର୍ଯ୍ୟ ମାଧ୍ୟମରେବିଶ୍ୱର ପ୍ରତ୍ୟେକ ନରନାରୀଙ୍କର ପରସ୍ପରର ମଙ୍ଗଳକାମନାକୁ ସାହିତ୍ୟର ଯୋଗାଯୋଗର ପ୍ରଧାନ ଲକ୍ଷ୍ୟ ବୋଲି କହିଛନ୍ତି - କାରଣ ମଙ୍ଗଳ ମାତ୍ରେ ସମସ୍ତ ଜଗତ ସହିତ ଏକ ଗଭୀରତମ ସାମଞ୍ଜସ୍ୟ ରହିଛି, ସକଳ ମଣିଷର ମନ ସଙ୍ଗେ ତାହାର ନିଗୂଢ଼ ମେଳରହିଛି। ସତ୍ୟ ସହିତ ମଙ୍ଗଳର ସେହି ପୂର୍ଣ୍ଣ ସାମଞ୍ଜସ୍ୟ ଦେଖି ପାରିଲେ ତାହାର ସୌନ୍ଦର୍ଯ୍ୟ ଆମ୍ଭମାନଙ୍କର ଅଗୋଚର ରହେ ନାହିଁ। ସୌନ୍ଦର୍ଯ୍ୟ ମୂର୍ତ୍ତି ହିଁ ମଙ୍ଗଳର ପୂର୍ଣ୍ଣ ମୂର୍ତ୍ତି ସୌନ୍ଦର୍ଯ୍ୟର ପୂର୍ଣ୍ଣ ସ୍ୱରୂପ। ମଣିଷରସୌନ୍ଦର୍ଯ୍ୟ ବୋଧ ତା'ର ଶ୍ରେୟ ଓ ପ୍ରେୟ ବୋଧ ସହିତ ହରିହର ଆତ୍ମାଭଳି ମିତ୍ରତା ବନ୍ଧନରେ ଆବଦ୍ଧ।୬୦।

କବିତା ଶିଳ୍ପ ସହିତ ପାଠକ ମନର କେବଳ ଆନନ୍ଦର ସଂଯୋଗ,ତା' ସହିତ ଅନ୍ୟ କୌଣସି ସମ୍ବନ୍ଧ ନିରୂପଣ କରିବା ନିରର୍ଥକ। କାରଣ ସୌନ୍ଦର୍ଯ୍ୟ ସହିତ ବାସ୍ତବ ଜଗତର କୌଣସି ପ୍ରୟୋଜନର ସଂପର୍କ ନାହିଁ ସୌନ୍ଦର୍ଯ୍ୟ ଚେତନା ବସ୍ତୁ ନିରପେକ୍ଷ ବୋଧ-ଆନନ୍ଦାନୁଭୂତି ମାତ୍ର। ଏହି ସମ୍ବନ୍ଧ ପ୍ରୟୋଜନର ନୁହେଁ କି ସ୍ୱାର୍ଥର ମଧ୍ୟ ନୁହେଁ। କବିତା ପାଠ ଫଳରେ ଅପାର୍ଥିବ ଆନନ୍ଦରେ ହୃଦୟ ପରିପୂର୍ଣ୍ଣ ହୋଇଉଠେ।୬୧।

ହୃଦୟରେ ସୁପ୍ତ ଲୋଭ ଓ କାମନାଦି ତା' ଫଳରେ ଜାଗି ଉଠନ୍ତି ନାହିଁ। ମମ୍ମଟ କାବ୍ୟକୁ ଲୋକୋତ୍ତର ବର୍ଣ୍ଣନା ନିପୁଣ କବିକର୍ମ କହନ୍ତି। କବିର ଶିଳ୍ପ କର୍ମର ରସଲୋକ ମଧ୍ୟରେ ଏପରି ଏକ ଅନିର୍ବଚନୀୟ ଲୋକୋତ୍ତର ରମଣୀୟତା ରହିଛି, ଯାହାର ଆସ୍ୱାଦନରେ ଆତ୍ମର ବନ୍ଧନ ମୁକ୍ତି ଘଟେ। ଯଥାର୍ଥରେ ବିଶିଷ୍ଟ କବି ମନୀଷୀ ଗେଟେ ପ୍ରକାଶ କରିଛନ୍ତି :-

"For beauty they have sought in every age. He who perceives itisfrom himself setfree."।୬୨।

ପ୍ରକୃତ ଆନନ୍ଦାନୁଭୂତିର ମୁହୂର୍ତ୍ତ ବଚନାତୀତ । ତାହା କେବଳ ଅନୁଭବବେଦ୍ୟ । ସୌନ୍ଦର୍ଯ୍ୟ ଓ କବିତା ଶ୍ରୀରାଧାଙ୍କର 'ସେଇ ପୀରତି ଅନୁଭବ ବାଖାନିତେ ନିତି ନିତି ନଉତନ ହୟେ' ଭଳି ଅନୁଭବଟି ଆଣିଦିଏ । ଥରେ ଦେଖି ବା ପଢ଼ି ତାହାର ଆସ୍ୱାଦନ ସ୍ପୃହା ନିବୃତ୍ତି ହୁଏ ନାହିଁ । ରସ ଓ ସୌନ୍ଦର୍ଯ୍ୟାନୁଭୂତି କାଳରେ ଆମର ଧାରଣା ହୁଏ ସ୍ୱର୍ଗ ଏକ ବାସ୍ତବିକତା । ପ୍ରେମିକର ପ୍ରେମାନୁଭୂତି ଓ ଦାର୍ଶନିକ ସନ୍ଥଙ୍କର ସତ୍ୟାନୁଭୂତି ପରି ଶିଳ୍ପୀ ଓ ଭୋକ୍ତାର ସୌନ୍ଦର୍ଯ୍ୟାନୁଭୂତି ବାସ୍ତବ । ସୁନ୍ଦର ବସ୍ତୁରୁ ମିଳୁଥିବା ଆନନ୍ଦରେ ତାହାର ମୂଲ୍ୟ ନିହିତ, ଯେଉଁଠାରେ ଆନନ୍ଦ ସେଠାରେ ସୌନ୍ଦର୍ଯ୍ୟର ଉପସ୍ଥିତି । ଶିଳ୍ପ ନିକଟରୁ ପାଠକର ସେହି ନୈର୍ବ୍ୟକ୍ତିକ ନିର୍ମଳ ଅନୁଭୂତି ପ୍ରାପଣୀୟ । ସୌନ୍ଦର୍ଯ୍ୟ ସନାତନ ଓ ସୌନ୍ଦର୍ଯ୍ୟବୋଧ ସ୍ବୟଂଭୂ । ସୌନ୍ଦର୍ଯ୍ୟ ହେଲା ବିଶ୍ୱ ବ୍ୟାପିନୀ ଛନ୍ଦୋଧାରା ସହିତ ବ୍ୟକ୍ତିର ଅନ୍ତରାତ୍ମାର ଅନୁଭୂତି ମୂଳକ ଏକ ବିଶେଷ ଅବସ୍ଥା, ଯାହା ସମଞ୍ଜସ୍ୟର ଅନୁଭବ ଆଣିଦିଏ । ଏହି ସ୍ୱୟଂଭୂ ସାମଞ୍ଜସ୍ୟବୋଧର ନିଦର୍ଶନ ପାଇବା ପାଇଁ ମାନବଅନ୍ତର ଚିର ପିପାସିତ । ଅନ୍ତର ଓ ବାହ୍ୟର ସମ୍ବାଦ ହିଁ ସୌନ୍ଦର୍ଯ୍ୟ, ଦ୍ରଷ୍ଟା ଓ ଦୃଶ୍ୟ ମଧ୍ୟରେ, ଅନ୍ତର ଓ ବାହାର ମଧ୍ୟରେ ଏହି ସମ୍ବାଦ ବା ସମ୍ବନ୍ଧ ହିଁ ସୌନ୍ଦର୍ଯ୍ୟ । ବସ୍ତୁ ସହିତ ବ୍ୟକ୍ତିଚିତ୍ତର ସଂଯୋଗ ଫଳରେ ବସ୍ତୁରରମଣୀୟତା ଉପଲବ୍ଧ ହୁଏ । ବ୍ୟକ୍ତି ଓ ବସ୍ତୁ ମଧ୍ୟରେ ଏହା ଏକ ପ୍ରକାର ସାମଞ୍ଜସ୍ୟ ଭାବ । ବସ୍ତୁରେ ସୌନ୍ଦର୍ଯ୍ୟ ନିହିତ ଥିଲେ ମଧ୍ୟ ସହୃଦୟର ହୃଦୟରେ ମଧ୍ୟ ଆନନ୍ଦର ଉପଲବ୍ଧି ।୬୩।

ଚଳମାନ ମୁହୂର୍ତ୍ତକୁ ଅଚଳ ତାତ୍ପର୍ଯ୍ୟ ଦାନ କରିବା କବିର କାମ । ବିଶ୍ୱଧାରାର ଅନ୍ତରାଳରେ ଯେଉଁ ସର୍ଜନଶକ୍ତି ଯେଉଁ ସୃଜନୀ ଶକ୍ତି ଚେତନ ସ୍ତରରେ ପ୍ରକାଶ ପାଏ । କଳା ଜାଗ୍ରତ ଚୈତନର ସୃଷ୍ଟି । ଉଦ୍‌ବୁଦ୍ଧ ଚୈତନ୍ୟ ହିଁ କଳା ସୃଷ୍ଟି ପରିପାରେ । ଯେଉଁ କବିର ରୂପେନ୍ଦ୍ରିୟର ବିକାଶ ଯେତେ ଅଧିକ ସେ ସେତେ ଉଚ୍ଚକୋଟୀର ସୌନ୍ଦର୍ଯ୍ୟ ସ୍ରଷ୍ଟା । ରୂପେନ୍ଦ୍ରିୟର ସ୍ଫୁର୍ତ୍ତି ଘଟିଲେ କବି ସମ୍ମୁଖରେ ସମଗ୍ର ସୌନ୍ଦର୍ଯ୍ୟ ଜଗତ ଉଦଘାଟିତ ହୁଏ ।୬୪।

ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ବୀଜ ସ୍ୱରୂପ ସୁନ୍ଦର ଭାବନା ପ୍ରୟୋଜନ । ଅସୁନ୍ଦର ଭାବନା ଘେନି କେହି ସୌନ୍ଦର୍ଯ୍ୟ ସୃଷ୍ଟି କରିପାରନ୍ତି ନାହିଁ । ସୌନ୍ଦର୍ଯ୍ୟ-ପୂଜାରୀ କବି ଶିଳ୍ପୀ ଗଣ ଶାଶ୍ୱତଭାବ ରାଜ୍ୟର ଅଧିବାସୀ । ସୃଜନ କ୍ଷେତ୍ରରେ ସ୍ରଷ୍ଟା ଏକେଶ୍ୱର । ଜୀବନର କୁତ୍ସିତ୍‌ତା, ଇତରତା, ଅପମାନ ଓଦାରିଦ୍ର୍ୟ ତାଙ୍କର ସୀମା ସ୍ପର୍ଶ କରିପାରେ ନାହିଁ । କବିତାମାନବ ମନର ସୁନ୍ଦରତମ ଅଭିବ୍ୟକ୍ତି ଓଅଭିବ୍ୟକ୍ତି ହିଁ ସୌନ୍ଦର୍ଯ୍ୟର ସାରକଥା ।

ସୌନ୍ଦର୍ଯ୍ୟ ଏକ ସ୍ଫୁରଣ ପ୍ରେରଣା - ତା'ର ସତ୍ତା, ଅନ୍ତରରେ ଖୋଜା ଯାଇପାରେ । କବି ଚେତନା ସ୍ତରରେ ଲାଭ କରିଥିବା ସେହି ସ୍ଫୁରଣକୁ କାବ୍ୟରେନିବଦ୍ଧ କରିଥାନ୍ତି । ବଙ୍କିମଚନ୍ଦ୍ର ପ୍ରକାଶ କରିଛନ୍ତି:- 'ସମସ୍ତଙ୍କର ଚିତ୍ତକୁ ଯାହା ଆକୃଷ୍ଟ କରେ ତାହା କ'ଣ ?'' ସୌନ୍ଦର୍ଯ୍ୟ ଅତଏବ ସୌନ୍ଦର୍ଯ୍ୟ ସୃଷ୍ଟି ହିଁ କାବ୍ୟର ମୁଖ୍ୟ ଉଦ୍ଦେଶ୍ୟ । ସୌନ୍ଦର୍ଯ୍ୟ ଅର୍ଥରେ

କେବଳ ବାହ୍ୟ ପ୍ରକୃତିର ବା ଶାରୀରିକ ସୌନ୍ଦର୍ଯ୍ୟ ନୁହେଁ; ସକଳ ପ୍ରକାର ସୌନ୍ଦର୍ଯ୍ୟ ବୁଝିବାକୁ ପଡ଼ିବ । କବି ଚୈତନ୍ୟ ନିହିତ ନିସର୍ଗ ଆଧ୍ୟାତ୍ମିକ ଓ ମାନବୀୟ ପରିବେଶ ସୌନ୍ଦର୍ଯ୍ୟ ଅନୁସନ୍ଧାନର ବିଷୟ । କାରଣ ସାହିତ୍ୟ ବିଚାର ମୁଖ୍ୟତଃ ସୌନ୍ଦର୍ଯ୍ୟ ବିଚାର । ପ୍ରକୃତି ଓ ମାନବ ଜଗତ, ସାକାର, ନିରାକାର, ଆଧ୍ୟାତ୍ମ ଜଗତ, ସକଳ ସୌନ୍ଦର୍ଯ୍ୟ କବି ଚିତ୍ତରଞ୍ଜନୀ ବୃତ୍ତି ହେତୁ ସାହିତ୍ୟରେ ସଞ୍ଚିତ ରହେ । ତେଣୁ ସମାଲୋଚକର କର୍ତ୍ତବ୍ୟ, କବି ଯେଉଁ ଚେତନାର ଇଙ୍ଗିତରେ ଚାଳିତ ହୋଇ ବିଶ୍ୱମୟ ସେହି ସୌନ୍ଦର୍ଯ୍ୟର ଚୟନ କରିଛନ୍ତି ତାହାରି ମୂଲ୍ୟାୟନ କରିବା । ଚୈତନ୍ୟ ସୃଜନ ଶକ୍ତିର ଅଧିକାରୀ ହୋଇଥିବାରୁ କାବ୍ୟ ସମାଲୋଚନା କାଳରେ ପ୍ରଥମେ ସେହି ଚେତନାର ବିଶ୍ଲେଷଣ କରାଯିବା ଉଚିତ । ସୌନ୍ଦର୍ଯ୍ୟ ସହିତ ଆମର ସଂପର୍କ ସର୍ବ ପୁରାତନ ଓ ନିବିଡ଼ । ଏହା ମାନବ ମନର ସୁଖାତ୍ମକ ଅନୁଭୂତି । ଏହା ପ୍ରତି ମାନବର ଆକର୍ଷଣ ସହଜ ଓ ସ୍ୱାଭାବିକ । କାବ୍ୟ ଓ କଳାର ଏହା ବ୍ୟାପକ ଗୁଣ ତଥା କାବ୍ୟୋତ୍କର୍ଷ ଓ ରସାନୁଭୂତିରେ ଏହା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସାହାଯ୍ୟ କରେ । ଆନନ୍ଦ ଓ ସୌନ୍ଦର୍ଯ୍ୟ କବିତାରେ ରସ ସୃଷ୍ଟି କରନ୍ତି ।୬୫।

ବିଶ୍ୱକବି ରବୀନ୍ଦ୍ର ନାଥ ସୌନ୍ଦର୍ଯ୍ୟର ସେହି ପ୍ରଭାବ ସଂପର୍କରେ ପ୍ରାଞ୍ଜଳ ରୂପେ ପ୍ରକାଶ କରିଛନ୍ତି । 'ସୁନ୍ଦରର ଅନ୍ତରରେ ରହିଛି ଗୋଟିଏ ରସମୟ ରହସ୍ୟମୟ ଆୟତ୍ତର ଅତୀତ ସତ୍ୟ, ଆମ୍ଭମାନଙ୍କ ଅନ୍ତର ସହିତ ତା'ର ଅନିର୍ବଚନୀୟ ସମ୍ବନ୍ଧ । ତା'ର ସଂପର୍କରେ ଆମ୍ଭମାନଙ୍କର ଆତ୍ମଚେତନା ମଧୁର, ଗଭୀର ଓ ଉଜ୍ଜ୍ୱଳ ହୁଏ । ଆମ ଭିତର ମଣିଷ ବଢ଼ିଉଠେ, ରଞ୍ଜିତ ହୋଇଉଠେ, ରସେଇ ଉଠେ । ଆମ୍ଭମାନଙ୍କର ସତ୍ତା ଯେପରି ତା'ର ସଙ୍ଗେ ରଙ୍ଗରେ ରସରେ ମିଳିଯାଏ ଏହାକୁ ହିଁ କହନ୍ତି ଅନୁରାଗ । କବିର କାମ ଏହି ଅନୁରାଗରେ ମଣିଷର ମଗ୍ନ ଚୈତନ୍ୟବୋଧକୁ ଉଦ୍ଦୀପ୍ତ କରିବା, ଔଦାସୀନ୍ୟରୁ ଉଦ୍‌ବୋଧିତ କରିବା । ସେହି କବିଙ୍କୁ ମଣିଷ ବଡ଼ କହେ ଯେ ଏପରି ସବୁ ବିଷୟରେ ମଣିଷର ଚିତ୍ତକୁ ଆଶ୍ଳିଷ୍ଟ କରିଛନ୍ତି, ଯା ମଧ୍ୟରେ ନିତ୍ୟତା ଅଛି ମହିମା ଅଛି, ମହିମା ଅଛି, ଯା ବ୍ୟାପକ ଏବଂ ଗଭୀର । କଳା ଓ ସାହିତ୍ୟର ଭଣ୍ଡାରରେ ଦେଶେ ଦେଶେ କାଳେ କାଳେ ମଣିଷର ଅନୁରାଗ ସମ୍ପଦ ରଚିତ ଓ ସଞ୍ଚିତ ହୋଇଉଠୁଛି । ଏଠାରେ ବିଶ୍ୱଗୁରୁ ରବୀନ୍ଦ୍ର ନାଥ ଯେଉଁ ଅନୁରାଗ ସମ୍ପଦ ବିଷୟରେ ଗୁରୁତ୍ୱ ଦେଇଛନ୍ତି, ତାହା କବିର ସୌନ୍ଦର୍ଯ୍ୟ ଚେତନାର ଉଜ୍ଜ୍ୱଳ ଅବଦାନ । କବି ଶିଳ୍ପୀ ମାନଙ୍କ ଭିନ୍ନ ସମାଜସ୍ଥ ଅନ୍ୟ କୌଣସି ବର୍ଗ ସମାଜଙ୍କୁ ଏତେ ଆନନ୍ଦ ଓ ଅନୁରାଗ ବିତରଣ କରିନପାରନ୍ତି ।

କବିତାରେ କବିର ସୌନ୍ଦର୍ଯ୍ୟ ଚେତନା ଅନ୍ୱେଷଣ କରିବାର ଉଦ୍ଦେଶ୍ୟ ହେଲା ସୌନ୍ଦର୍ଯ୍ୟତତ୍ତ୍ୱ, କାବ୍ୟର ଆଦର୍ଶକୁ ସୂଚିତ କରେ । କଳା ଓ କାବ୍ୟକୁ ଉଚିତ ରୂପେ ବିଚାର କରିବା ପାଇଁ ସଙ୍ଗତ ରୂପେ ମତଦାନ ପାଇଁ ସୌନ୍ଦର୍ଯ୍ୟ ତତ୍ତ୍ୱର ଅନୁଶୀଳନ ଓ ପ୍ରୟୋଗ ଆବଶ୍ୟକ । ସୌନ୍ଦର୍ଯ୍ୟତତ୍ତ୍ୱ ଓ କାବ୍ୟତତ୍ତ୍ୱ କେବଳ କଳା ଓ କାବ୍ୟରତତ୍ତ୍ୱ ବିଚାର ନୁହେଁ, ତାହାର ପ୍ରାୟୋଗିକ ଦିଗ ମଧ୍ୟ ରହିଛି । ସମାଜତତ୍ତ୍ୱ ହେଉ ବା ନନ୍ଦନତତ୍ତ୍ୱ ହେଉ, ତାହା

ସମାଲୋଚନାରେ ସାହାଯ୍ୟ କରିବା ଉଚିତ ଶିଳ୍ପ କର୍ମ ବା ସୃଷ୍ଟି ପ୍ରତି କଳା ପ୍ରଯୁକ୍ତ ହେବା ଉଚିତ । ନହେଲେ ତାହା କେବଳ ବନ୍ଧାସୂତ୍ର ବା ନିର୍ଦ୍ଦେଶ ମାତ୍ରରେ ପର୍ଯ୍ୟବେସିତହେବ । ତେଣୁ ତତ୍ତ୍ୱର ପ୍ରୟୋଗ ଯୋଗ୍ୟତା ପ୍ରମାଣିକ କରିବାକୁ ତାହାର ସାହାଯ୍ୟ ନେବାକୁପଡ଼ିବ । ରସବସ୍ତୁର ମର୍ମ ଗ୍ରହଣ, ରସସ୍ୱାଦନ, ଉପଲବ୍ଧି ଓ ମୂଲ୍ୟ ନିରୂପଣ ନିମନ୍ତେ ତାହାର ସାହାଯ୍ୟ ନେବାକୁ ପଡ଼ିବ । ସୌନ୍ଦର୍ଯ୍ୟ ତତ୍ତ୍ୱ କେବଳ ଦାର୍ଶନିକ ବ୍ୟାଖ୍ୟା ବା ତତ୍ତ୍ୱଜିଜ୍ଞାସା ନୁହେଁ ଆନନ୍ଦ ବର୍ଦ୍ଧନ, ଅଭିନବ ଗୁପ୍ତ, ହେଗେଲ, କ୍ରୋଚେ, କଲେରିଜ୍, ବ୍ରାଡଲେ ପ୍ରଭୃତି ଆଚାର୍ଯ୍ୟ ମାନଙ୍କର କାବ୍ୟତତ୍ତ୍ୱ କେବଳ ତାତ୍ତ୍ୱିକ ବିଚାର ହୋଇଥିଲେ, ସାହିତ୍ୟର ରସ ଓ ସୌନ୍ଦର୍ଯ୍ୟ ଉପଲବ୍ଧି ନିମନ୍ତେ ତାହାର ଉପଯୋଗିତା ନିରର୍ଥକ ହୋଇଥାନ୍ତା । ତତ୍ତ୍ୱ ନିରୂପଣ ସଙ୍ଗେ କାବ୍ୟର ମୂଲ୍ୟାୟନ ନିମନ୍ତେ ମଧ୍ୟ ତାହାର ସାହାଯ୍ୟ ନିଆଯାଇପାରେ ।୬୬।

ସୌନ୍ଦର୍ଯ୍ୟଶାସ୍ତ୍ର କଳାର ଜ୍ଞାନ କ୍ଷେତ୍ରକୁ ପ୍ରସାରିତ କରେ, ସ୍ରଷ୍ଟାକୁ ନିର୍ଦ୍ଦେଶ ଦିଏ ନାହିଁ । ସୌନ୍ଦର୍ଯ୍ୟ ବିଚାର କରିବା ଓ ସୌନ୍ଦର୍ଯ୍ୟ ସୃଷ୍ଟି କରିବାରେ ପାର୍ଥକ୍ୟ ରହିଛି । ସୌନ୍ଦର୍ଯ୍ୟ-ଦର୍ଶନ ଆଲୋଚନା କରି ଜଣେ ରୂପଦକ୍ଷ ହେବେ - ଏପରି ବିଚାର କରିବା ମଧ୍ୟ ଭ୍ରମାତ୍ମକ । କବିର ସୌନ୍ଦର୍ଯ୍ୟଚେତନା ତାଙ୍କର କାବ୍ୟ ଚେତନାଠାରୁ ଆରମ୍ଭ କରି ଜୀବନ ଚେତନା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏଣୁ ସୌନ୍ଦର୍ଯ୍ୟ ଚେତନା କହିଲେ କେବଳ ସୌନ୍ଦର୍ଯ୍ୟ ସଂପର୍କିତ ଆଲୋଚନା ନୁହେଁ । ଶିଳ୍ପ-ସୃଷ୍ଟି ମୂଳରେ ଯେପରି କବିର ବାସନା ବିଧୃତ । ଶିଳ୍ପର ରସୋପଭୋଗ ନିମନ୍ତେ ଶିଳ୍ପ ରସିକ ପ୍ରାଣରେ ସେହିପରି ସଜାତୀୟ ବା ସମଧର୍ମୀ ବାସନା ରହିବା ଦରକାର ।୬୭।

କାବ୍ୟରସ ସୌନ୍ଦର୍ଯ୍ୟ ଆଲୋଚନା କାଳରେ କେବଳ ସ୍ରଷ୍ଟାର ଅନ୍ତର ପ୍ରକାଶକୁ ମୁଖ୍ୟ ରୂପେ ଗ୍ରହଣ କଲେ ଚଳେ ନାହିଁ । ତା ସହିତ ଭୋକ୍ତାର ରସ, ଚର୍ବଣା ମଧ୍ୟ ଜଡ଼ିତ । ଭୋକ୍ତାର ମନରେ ସ୍ରଷ୍ଟାର ପ୍ରକାଶିତ ଅନୁଭୂତି ମୁଦ୍ରିତ, ଚିହ୍ନିତ ଓ ଆସ୍ୱାଦିତ ହୁଏ - ଏହାକୁ କୁହାଯାଏ ସହୃଦୟ ହୃଦୟ-ସମ୍ବାଦ; ଅର୍ଥାତ ଶିଳ୍ପ ସୌନ୍ଦର୍ଯ୍ୟର ଅନୁଭୂତିକୁ ଏକମନରୁ ଅନ୍ୟମନରେ ପହଞ୍ଚାଇ ଦେବା, ସଞ୍ଚାରିତ କରିଦେବା । ଶିଳ୍ପ ବସ୍ତୁର ଏହି ଅନୁଭୂତି - ଉପାଦାନ କବି ମନରୁ ଭୋକ୍ତାମାନଙ୍କୁ ସଂକ୍ରମିତ ହୋଇ ନବନବ ରୂପେ ଆସ୍ୱାଦିତ ହୁଏ ।୬୮।

ସୌନ୍ଦର୍ଯ୍ୟରେ ଏପରି ଏକ ଅଲୌକିକ ଶକ୍ତି ରହିଛି, ଯାହାଦ୍ୱାରା ହୃଦୟର କଳୁଷ ଦୂର ହୋଇ ଚରମ ଦିବ୍ୟସୃଷ୍ଟିର ପ୍ରତିଷ୍ଠା ହୋଇପାରେ । ସୌନ୍ଦର୍ଯ୍ୟ କବିତାରେ ଏକ ଉନ୍ମାଦକ ପ୍ରେରଣା ଦେଇଥାଏ । ଏହି ଉନ୍ମାଦନା ହିଁ କବିର ସୃଷ୍ଟିକୁ ସରସ ସୁନ୍ଦର କରେ । ସୌନ୍ଦର୍ଯ୍ୟରୁ ବିଶୁଦ୍ଧ ସୁଖ ମିଳେ । ଏଥିରେ ଇନ୍ଦ୍ରିୟ ଜନିତ ଅଶୁଦ୍ଧ ସୁଖ ଭଳି ସ୍ୱାର୍ଥ ମୂଳକ ପ୍ରୟୋଜନ ନଥାଏ । ପ୍ରକୃତ ପ୍ରୟୋଜନ ଓ ସୌନ୍ଦର୍ଯ୍ୟ ସମ୍ବଳୀ ପ୍ରୟୋଜନ ମଧ୍ୟରେ ପାର୍ଥକ୍ୟ ହେଲା, ପ୍ରଥମଟିରୁ ଇନ୍ଦ୍ରିୟ ଜନିତ ସୁଖ-ଯାହା ସ୍ୱାର୍ଥ ମୂଳକ ପ୍ରୟୋଜନ ନଥାଏ । ପ୍ରକୃତ ପ୍ରୟୋଜନ ଓ ସୌନ୍ଦର୍ଯ୍ୟ ସମ୍ବଳୀ ପ୍ରୟୋଜନ ମଧ୍ୟରେ ପାର୍ଥକ୍ୟ ହେଲା, ପ୍ରଥମଟିରୁ ଇନ୍ଦ୍ରିୟ ଜନିତ

ସୁଖ-ଯାହା ସ୍ୱାର୍ଥ ମୂଳକ ହୋଇ ଥିବାରୁ ଅଶୁଦ୍ଧ ଓ ଦ୍ୱିତୀୟଟି ରୂପାତ୍ମକ ସୌନ୍ଦର୍ଯ୍ୟ ହେତୁ ଶୁଦ୍ଧ ସୁଖ ମିଳେ ।୬୯।

ସୌନ୍ଦର୍ଯ୍ୟର ତିନିଗୋଟି ବୈଶିଷ୍ଟ୍ୟ - ନିଶ୍ଚିତ ବିସ୍ତାର ବ୍ୟବସ୍ଥା ବା ସୁଡ଼୍ଙ୍ଗ ପଣ ଓ ସାମଞ୍ଜସ୍ୟ ଉପରେ ନିର୍ଭର କରେ । ସୌନ୍ଦର୍ଯ୍ୟର ଉଦ୍‌ଭବ ଏଇ ସବୁ ହେତୁ ସମ୍ଭବ ହୋଇଥାଏ । ଯାହା ଯଥାର୍ଥରେ ସୁନ୍ଦର, ତାହାର କୌଣସି ଅଂଶ ଅପସାରିତ ହେଲେ ତାହାର ସୌନ୍ଦର୍ଯ୍ୟ ବ୍ୟାହତ ହେବ । ସମଗ୍ର ସହିତ ଅଂଶର ସାମଞ୍ଜସ୍ୟରୁ ସୌନ୍ଦର୍ଯ୍ୟ ଜନ୍ମଲାଭ କରେ ଓ ଏହାହିଁ ସୌନ୍ଦର୍ଯ୍ୟର ଧର୍ମ । ଯେଉଁ ବସ୍ତୁର ବର୍ତ୍ତମାନତା ଓ ଅବର୍ତ୍ତମାନତାରେ କୌଣସି ଲକ୍ଷଣୀୟ ପାର୍ଥକ୍ୟ ନଥାଏ, ତାହା ସମଗ୍ରର ଏକ ଆବୟବିକ (Organic) ଅଂଶ ନୁହେଁ ।୭୦।

କବି ସୌରୀନ୍ଦ୍ର ବାରିକ୍ ସୌନ୍ଦର୍ଯ୍ୟର ସାରସ୍ୱତ ପୂଜକ । କବିତାରେ କବି ସୌନ୍ଦର୍ଯ୍ୟ ଉପାସନା କରିଛନ୍ତି । କବିଙ୍କ ଲେଖନୀ ପ୍ରସୂତ 'ହଳଦୀ ବସନ୍ତ', ଯେତେସବୁ ବୀଥିକୁ ନେଇ' ଦୁଇଟି କବିତା ସଂକଳନରେ ସୌନ୍ଦର୍ଯ୍ୟ ଚେତନା ନିହିତ । 'ହଳଦୀ ବସନ୍ତ' କବିତା ସଂକଳନରେ କବି ହଳଦୀ ବସନ୍ତକୁ ସେ ସୌନ୍ଦର୍ଯ୍ୟର ପ୍ରତୀକ (Symbol of Beauty) ଭାବେ ଗ୍ରହଣ କରି ଜୀବନର କେବଳ ଅସଲ ରହସ୍ୟକୁ ସେ ଅନ୍ୱେଷଣ କରିନାହାନ୍ତି, ତା' ଭିତରେ ସେ ସୃଜନଶୀଳତା, ଆତ୍ମାନୁସନ୍ଧାନ ଓ ଜୀବନର ରହସ୍ୟକୁ ପ୍ରକାଶ କରିବା ମାଧ୍ୟମରେ ଦେଖିଛନ୍ତି, ଶୁଣିଛନ୍ତି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ଅଲଗା ରୂପ ଓ ଅଲଗା ତେଜ । ସେ ତେଜ ଭିତରେ ଖୋଜିଛନ୍ତି ସୌରୀନ୍ଦ୍ର ଜୀବନର ଶାନ୍ତ ଭୀଷଣତାକୁ । ଜୀବନର ଅନନ୍ତ ରହସ୍ୟକୁ, ଯାହାକୁ ଭେଦ କରି ହୁଏନି, ଅଥଚ ରସାଳ ଅନୁଭୂତି ମାଧ୍ୟମରେ ସେ ପାଇଛନ୍ତି ବିଶ୍ୱରୂପ ଦର୍ଶନ ।

ହଳଦୀ ବସନ୍ତର ପ୍ରତିଟି ଲୋମକୂପରେ ଅସଂଖ୍ୟ କମ୍ପନ ଦେଖିଲେ ଲାଗେ ଯେମିତି ହଳଦୀ ଗୁରୁଗୁରୁ ଗାଁ ବୋହୂଟିଏ ଯିଏ ହଳଦୀ ମାଖି କଜଳ ନାଇ କଅଁଳା ଛୁଆଟେ ପରି ଦାଣ୍ଡରେ ଏମୁଣ୍ଡରୁ ସେ ମୁଣ୍ଡ ବିଚରଣ କରେ, ହସିଖେଳି ନାଚି କୁଦି ଚୁପି ଚୁପି କଥାରେମନ ଓ ହୃଦୟକୁ ଅଥୟ କରିଦିଏ । ଆମ୍ବ ତୋଟାର ସେ ସବୁଜ ଅନ୍ଧାର ଭିତରୁ ସୌରୀନ୍ଦ୍ର ଫେରି ପାରନ୍ତିନି ବରଂ ପହଞ୍ଚିଯାନ୍ତି ଦିଗ୍‌ବଳୟର ଅପହଞ୍ଚ ଆରପାରିର ଦୃଶ୍ୟ ଆଡକୁ । ତାକୁ ପାଇ ହୁଏନି, ଭୋଗି ହୁଏ, ସାରାଜୀବନ ତା' ପାଇଁ ସଢ଼ି ହୁଏ, ଅଥଚ ତା ହଳଦୀ ହଳା ହଳ ରୂପ ଭିତରେ ସୌନ୍ଦର୍ଯ୍ୟର ରହସ୍ୟକୁ ବୁଝିହୁଏନା । ପ୍ରକୃତରେ କ'ଣ ସେ ସୌନ୍ଦର୍ଯ୍ୟ, କ'ଣ ତା'ର ରୂପରେଖ ? ତା' ଛାଇରେ ଦେଖିହୁଏ ଆଷାଢ଼ର ଗର୍ଭିଣୀ ମେଘ, ମନେ ହୁଏ ଝରିପଡ଼ିବ କେଉଁ ମୁହୂର୍ତ୍ତରେ, ଉକୁଟି ଉଠିବ, ଆଉ ଜୀବନର ରହସ୍ୟକୁ ଭେଦି ତା' ଭିତରୁ ଗୁଣୁଗୁଣୁ ହୋଇ ଗାଇ ଉଠିବ ସଂଗୀତର ଧ୍ୱନୀ । ସେ ସୌନ୍ଦର୍ଯ୍ୟର ରହସ୍ୟ ଏତେ ଭୟଙ୍କର ଯେ ମନେ ହୁଏ ଗୁଣି କରି ସମସ୍ତଙ୍କୁ ମେଣ୍ଢା କରିଦେବ । କବି ସୌରୀନ୍ଦ୍ର 'ହଳଦୀ ବସନ୍ତ' କବିତା ସଂକଳନରେ ସ୍ଥାନିତ 'କମ୍ ଜଣେ ନୁହେଁ' କବିତାରେ ପ୍ରକାଶ କରିଛନ୍ତି:-

କଳା ସାଂଗକୁ ହଳଦୀ ରଂଗ
ଏତେ ଚହଟ ଯେ ଡର ଲାଗେ
କାଳେ ପୁଣି ଗୁଣିକରି ମେଣ୍ଢା କରିଦେବ

X X X X X X

ନୀଳକାନ୍ତି କପାଳରେ ଯା'ର
ନିଜେ ଝଟକି ଉଠେ
ଗୋରଚନାର ବୁନ୍ଦାଟିଏ ହୋଇ ।୭୧।

ସେ ସୌନ୍ଦର୍ଯ୍ୟ ସତ ହେଉକି ମିଛ ହେଉ, ଜୀବନର ଅନନ୍ତ ରହସ୍ୟକୁ ପ୍ରକାଶ କରିବା ପାଇଁ ସେ ଆସେ ଗଛବୃଛରେ ଫୁଲଫଳ ଧରି ଆଉ ପାଚିଲା ଧାନ କ୍ଷେତରେ କୁଆଁରୀ ଦେହର ମଂଗୁଳା ହଳଦୀ ପରି । ସବୁଠି ବୋଳି ହୋଇଯାଏ ସତ୍ୟର ମଂଜକୁ, ସେ ସୌନ୍ଦର୍ଯ୍ୟ ଓ ତା'ର ରହସ୍ୟ ଏବଂ ସୃଜନଶୀଳତାର ଅସଲ ରହସ୍ୟକୁ ଅନ୍ୱେଷଣ କରିବା ପାଇଁ ମାନବ ଜୀବନର ସ୍ୱପ୍ନ ଓ ତାର ବାସ୍ତବତାକୁ ଛୁଇଁବା ପାଇଁ କବି ବ୍ୟାକୁଳ । ଯିଏ ବାଇ ହେଲା / ଚାରି ଦଉଡ଼ି କାଟିଲା / ଜାଣିଥା ସେ ମଲା / ଚାରି ପାଞ୍ଜିରୁ ଗଲା / କିନ୍ତୁ ଏମିତି ନମଲେ ଜୀଇଁବାର ମଜା କେଉଁଠି ରହିଲା । ଯିଏ କବି ଯିଏ ଭାବୁକ ସିଏ ରସିକ, ସିଏତ ଏମିତି ଖୋଜିବାରେ ଚିହ୍ନିବାରେ ତା'ର ସତିଆ ପଣକୁ ଡାକି ଆଣେ, ଧୁ-ଧୁ ଜହ୍ନରାତିର ଅଜଣା ଦୂରତା ଭିତରୁ । ସିଏ ନଥିଲେ ସବୁଠି ଖୁଣ ଆଉ ସବୁ ମାରା ହୋଇଯାଏ । ଗଛ, ବୃଛ, ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ତାରା, ଜହ୍ନ ଯେମିତି ସବୁ ସେମାନଙ୍କର ଅସଲ ରୂପକୁ ହରାଇ ବସନ୍ତି । ହଳଦୀବସନ୍ତ କେବଳ ସୌନ୍ଦର୍ଯ୍ୟର ପ୍ରତୀକ ନୁହେଁ, ସେ ଅଗଣିତ ପାଠକ ପାଇଁ ଆଣିଦିଏ ଶୁଭ ସଙ୍କେତର ବାର୍ତ୍ତା । ହଳଦୀ ବସନ୍ତକୁ ଦେଖିଲେ ଲାଗେ ସବୁ ଅସଂପୂର୍ଣ୍ଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଯାଏ । ସବୁ କଅଁଳି ଉଠେ, ନୂଆ ଆକାଶ, ଆଉ ନୂତନ ପୃଥିବୀର ନୂଆ ରୂପରେଖ ଏତେ ସହଜରେ ତାକୁ ଖୋଜି ହୁଏନି କି ପାଇ ହୁଏନି, ଖୋଜିଲେ ଦରକାର ବେଳେ ମଧ୍ୟ ମିଳେନି । ତା'ର ଆସିବାର ସମୟ ନଥାଏ କେତେବେଳେ ଆସିବ, କେଉଁଠି ଆସିବ, ତା'ର ମଧ୍ୟ ପତ୍ତାନଥାଏ । ତା'ପଛରେ ଭୂଆଁ ବୁଲି ବୁଲି ତାକୁ ପାଇବା ହିଁ ସାର ହୁଏ । କବି ସୌରୀନ୍ଦ୍ର ବାରିକ 'ହଳଦୀ ବସନ୍ତ' କବିତା ସଂକଳନରେ ସ୍ଥାନିତ 'ବେଳେବେଳେ ଭାବେ' କବିତାରେ ପ୍ରକାଶ କରିଛନ୍ତି:-

ନୂଆ ତ ସବୁବେଳେ ଅଚିହ୍ନା
ଚିହ୍ନା ହେଲେ ପୁରୁଣା ହୁଏ
ଘଷରା ହୁଏ ।୭୨।

ତା'ର କେତେରୂପ କେତେ ଲୀଳା ଖେଳ, ସବୁଦିନ ସମାନ ଦିଶେନି ତା'ର ରୂପ ଆଉ ଭେକ । କେତେ ରକମର ଲୀଳା ଖେଳା ତାର । କେତେବେଳେ କଦମ୍ବ ମୂଳରେ ତ ପୁଣି କେତେବେଳେ ଯମୁନା କୂଳରେ କୁଳୁକୁଳୁ ନଈ ପରି ଉଚ୍ଛୁଳି ପଡୁଥାଏ । ସେଥିପାଇଁ ସୌରୀନ୍ଦ୍ର ପ୍ରଶ୍ନ କରନ୍ତି - ଏଠି କିଏ କାହାକୁ ବୁଝିଲାଣି ଯେ ମୁଁ ତାକୁ ବୁଝି ପକେଇବି । ତା'ର ଚହଟ ରୂପ ଆଉ ତରକା ଉଡାଣରେ ଖାଲି ତହକବିକଳ ହୁଏ ମନ । ସେଥିପାଇଁ ସୌରୀନ୍ଦ୍ର ଅନୁଭବ କରିଛନ୍ତି ବାସ୍ତବରେ ସୌନ୍ଦର୍ଯ୍ୟ ଏଇଠି, ଯାହାର ବାହାର ଭିତର କିଛି ନାହିଁ । ଗୋଟାପଣେ ହଳଦୀବସନ୍ତ, ଗୋଟାପଣେ ସୌନ୍ଦର୍ଯ୍ୟର ରହସ୍ୟମୟ ରୂପରେଖ । ତାକୁ ନିଜ ଅକ୍ତିଆର କରିହୁଏନି, ଅଥଚ ତା' ପାଖରେ ଏମିତି ମିନତି କରିହୁଏ, ସବୁଦିନ ତା ହଳଦୀ ଗୁରୁଗୁରୁ ଦେହ ମିଛଠୁ ମିଛ ସତଠୁ ସତ ଆଉ ସବୁ ଜଞ୍ଜାଳର ମୁକାବିଲା ହଳଦୀ ବସନ୍ତ । ହଳଦୀ ବସନ୍ତ ପକ୍ଷୀ ପ୍ରତି କବିଙ୍କ ଆକର୍ଷଣ ଅନନ୍ତ । 'ହଳଦୀ ବସନ୍ତ'ର ସୌନ୍ଦର୍ଯ୍ୟ କବିଙ୍କୁ ମୁଗ୍ଧ କରିଚି, ଚକିତ କରିଛି । ହଳଦୀ ବସନ୍ତ ପକ୍ଷୀ ପ୍ରତି ଅଶେଷ ସ୍ନେହ ଓ ଅନୁରକ୍ତି କବିଙ୍କ ହୃଦୟରେ ବସାବାନ୍ଧିଛି । ଏମିତି ଏକ ପ୍ରେମରେ କବି ଛନ୍ଦି ହୋଇ ପଡିଛନ୍ତି ନା ସେ ପ୍ରେମରୁ ମୁକୁଳି ପାରୁଛନ୍ତି ନା ତାକୁ ହାତ ପାହାନ୍ତାରେ ପାଇ ପାରୁଛନ୍ତି । ରହସ୍ୟ ଓ ସୌନ୍ଦର୍ଯ୍ୟର ଅନ୍ୱେଷଣ ଜୀବନକୁ ଚିହ୍ନାଇ ଦିଏ, ଜୀବନର ଅସଲ ରୂପକୁ ଧରାଇ ଦିଏ । ଜୀବନରେ ମଣିଷ କେତେ କାହାକୁ ଭଲପାଏ, ନିମିଷକେ ଭୁଲିଯାଏ । କିନ୍ତୁ କବି ହଳଦୀ ବସନ୍ତକୁ ଭୁଲି ପାରି ନାହାଁନ୍ତି ।

ଜୀବନରେ ପ୍ରାଣେ ପ୍ରାଣେ ଦୁଃଖକୁ ଅନୁଭବ କରିହୁଏ । ଦୁଃଖର ଧକ୍କା ଛାତିକୁ ପଥର କରିଦିଏ । ଦୁଃଖକୁ ବୁଝିହୁଏ ମାତ୍ର ସୁଖକୁ ବୁଝି ହୁଏନା । ସୁଖ ସ୍ୱପ୍ନ ପରି ଆସେ ଚାଲିଯାଏ । ସବୁ ସ୍ୱପ୍ନ ବାସ୍ତବରେ ପରିଣତ ହୁଏ ନା କି ସବୁ ସୁଖ ଚିରକାଳ ଜୀବନକୁ ଆନନ୍ଦ ଦିଏନା । କବି ସଚରାଚର ବ୍ରହ୍ମାଣ୍ଡର ଦୁଃଖକୁ ଅନୁଭବ କରିପାରେ ଏବଂ ସଂପର୍କର ସ୍ୱାଦ ସମସ୍ତଙ୍କୁ ଚଖେଇ ଦିଏ । ସ୍ୱପ୍ନ ସଂପର୍କ - ସୌନ୍ଦର୍ଯ୍ୟର ଲୁଚକାଳି ଖେଳ ଭିତରେ କବି ଜୀବନର ରହସ୍ୟକୁ ଉଦ୍‌ଘାଟନ କରେ । ସମସ୍ତଙ୍କୁ ଚିହ୍ନି ଚିହ୍ନାଇ ଦିଏ କବି । ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ସବୁ ମଣିଷର ହୃଦୟରେ ସଞ୍ଚରି ଯାଏ କବି । ମୋର ତୋ'ର ଭାବ ନରଖି ବିନୟ ଭାବରେ କୁତ୍ସିତ ଭିତରେ ସୌନ୍ଦର୍ଯ୍ୟର ଆରାଧନା କରେ କବି । ସୌନ୍ଦର୍ଯ୍ୟ କେବଳ ଜୀବନରେ ନଥାଏ ବସ୍ତୁ ଅବସ୍ତୁ ଭିତରେ ଅଣ ସତ, ଅଣ ମିଛ ହୋଇ ଭରି ରହିଥାଏ । ତାକୁ ବୁଝି ପାରିଲେ ହେଲା, ଚିହ୍ନି ପାରିଲେ ହେଲା ।·ମାଟି ପରି ସୌନ୍ଦର୍ଯ୍ୟ ଖାଲି ଦେଇଥାଏ କିଛି ନିଏନି, କୋଳେଇ ନିଏ ଦୂରେଇ ଦିଏନି, ମାଟି ପଞ୍ଚାମୃତ, ସବୁ ଅମୃତର ଅମୃତ ମାଟି, ମାଟିର ମହ ମହ କୋଳ ସମସ୍ତଙ୍କୁ ଆପଣେଇ ନିଏ ନିର୍ବିକାରରେ । ମାଟି ହିଁ ସୌନ୍ଦର୍ଯ୍ୟ ଆଉ ମାଟି ହିଁ ସୌନ୍ଦର୍ଯ୍ୟର ଇଲାକା, ଅପହଞ୍ଚ ଦିଗ୍‌ବଳୟ ଆରପାରିର ସଂଭାବନା । ତାହା ସଦାକାଳ ଚିରନ୍ତନ, ସଫା ପାଣିର ଝର, ଅଚିହ୍ନା ତାରର ଛାଇ ପରି ଦେଖାଯାଏ । ତା'

ରଙ୍ଗର କୁହୁକରେ ବୋଲି ହୋଇଯାଏ କୁହୁକୀ ପୁଟ, ଯେଉଁଠି କାଳର କଳଙ୍କି ଲାଗିବାକୁ ଦିଏନି । ଅଥଚ ବଦଳିଯାଏ ତା ସହ ଯେତେଥର ସାକ୍ଷାତ ହୁଏ । ସବୁଥର ମନେ ହୁଏ ଇଏ ଯେମିତି ତା ସହ ପହିଲି ଦେଖା, ପହିଲି ପ୍ରେମ । ପ୍ରେମ ଓ ସୌନ୍ଦର୍ଯ୍ୟ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱପରି । ସୌନ୍ଦର୍ଯ୍ୟରୁ ପ୍ରେମର ଉତ୍ପତ୍ତି ।

ସୌରୀନ୍ଦ୍ର ସୌନ୍ଦର୍ଯ୍ୟର ପ୍ରତୀକ ଭାବେ ହଳଦୀ ବସନ୍ତ ଭିତରେ ଜୀବନର ରହସ୍ୟ ଓ ତା'ର ସ୍ୱରୂପକୁ ଉଦ୍‌ଘାଟନ କରିବା ଫଳରେ ସୌନ୍ଦର୍ଯ୍ୟ ଓ ରହସ୍ୟର ଏକୀଭୂତ ଚେତନାର ସନ୍ଧାନ ମିଳେ କାବ୍ୟପୁରୁଷର ଆତ୍ମାନୁସନ୍ଧାନରେ ।

ସର୍ଜନଶୀଳତା, ସୌନ୍ଦର୍ଯ୍ୟ, ଶବ୍‌ଦ, କଳ୍ପନା, ପ୍ରେରଣା ଓ ସଂପର୍କ ଜରିଆରେ ଜୀବନର ଅସଂପୂର୍ଣ୍ଣତାକୁ ବୁଝିବା ପାଇଁ ଉଦ୍ୟମ କରିଛନ୍ତି । କବି, 'ଯେତେ ସବୁ ବୀଥିକୁ ନେଇ' କବିତା ସଂକଳନରେ । ସର୍ଜନଶୀଳତା ଏକ ଧାରା, ଯେମିତି ବୀଥି ତାରକା । ଏହି 'କା' ମଣିଷ ଜୀବନର ସାଥୀ । ନିହାତି ସରଳ ଆଉ ସାଧାରଣ ସତ ସତ ପୁଣି ମିଛ ମିଛ । ଜୀବନ ମରିଯାଏ କିନ୍ତୁ ତ 'କା' ମରେ ନାହିଁ । ସେହି 'କା'କୁ ମଣିଷ ସାଥି କରି ବଞ୍ଚେ, ତାହା ସହ ସୁଖ ଦୁଃଖ ହୁଏ, ସଦାସର୍ବଦା ଭଲ ମନ୍ଦରେ ଥାଏ । ସୌରୀନ୍ଦ୍ରଙ୍କ କବିତାର ପ୍ରତିଟି ଶବ୍ଦ ଭିତରେ ପ୍ରତିଟି ଛନ୍ଦ ଭିତରେ ତା'ର ଛାଇ ଆଉ ନୀରବତାକୁ ବୁଝି ହୁଏ । ଏହି ବୀଥି ସତକୁ ମିଛ, ମିଛକୁ ସତ କରି ଜୀବନକୁ ସରସ ସୁନ୍ଦର କରେ । କଇଁ ଫୁଲିଆ ଜହ୍ନ ହୋଇ ରାତିରେ ସାଥୀ ହୁଏ, ପୁଣି ନହେବାର ହେବା ଏବଂ ନପାଇବାର ପାଇବା ହୋଇ ମଣିଷକୁ ସ୍ୱପ୍ନ ଦେଖାଏ । କଳ୍ପନାର ପ୍ରଖର ଶକ୍ତି ଭିତରେ ସତ୍ୟର ରହସ୍ୟଟିକୁ ମିଛୁଆଟିଏ ହୋଇ ସତିଆ ଭାବେ ପ୍ରକାଶ କରେ । ସେ ଏକ ସତ ସତିକା ଜୀବନ ମରଣ ପରି, ଆଲୁଅ ଅନ୍ଧାର ପରି । ଜୀବନର ସ୍ୱପ୍ନ କଢ଼ି ଧୀରେ ଧୀରେ ଫୁଟିଯାଏ । ଜୀବନକୁ ବିକଶିତ କରେ ନୁଖୁରା ସତ୍ୟ ପାଖରେ ।

ସବୁଠି ସେଇ ସ୍ଥିରତା, ସେଇ ନୀରବତା, ଅଥଚ ପାଇ ଯିବାର ସବୁ କ୍ଲାନ୍ତ ବାସ୍ତବତା । ସେ ସୌନ୍ଦର୍ଯ୍ୟକୁ ସୁନ୍ଦର କରେ, ଆନନ୍ଦକୁ ଅପୂର୍ଣ୍ଣ କରେ । ମୁହୂର୍ତ୍ତେ ବର୍ତ୍ତମାନ ହୋଇ ଜୀବନର ଚିରନ୍ତନ ଉତ୍ତରଣକୁ ପ୍ରକାଶ କରେ । ସୌରୀନ୍ଦ୍ର କିଛି ବୁଝନ୍ତିନି ପାଇବାର ନିଶାରେ,ଖୋଜିବାର ତୃଷ୍ଣାରେ, ଅନ୍ୱେଷାର ପ୍ରାପ୍ତିରେ । ତାକୁ ନଦେଖିଲା ପରିଦେଖନ୍ତି ନଚାହିଁଲା ପରି ଚାହାଁନ୍ତି । ସେଥିରେ ଦୂରତା ନଥାଏ, ଅଥଚ ତାକୁ ଖୋଜି ଖୋଜି ନୟାନ୍ତ ହେବାକୁ ହୁଏ । କବି ସୌରୀନ୍ଦ୍ର ବାରିକ୍ 'ଯେତେ ସବୁ ବୀଥିକୁ ନେଇ' କବିତା ସଂକଳନରେ ସ୍ଥାନିତ 'ବୀଥି କୁଆଡ଼େ ଭାରି ସୁନ୍ଦର' କବିତାରେ ପ୍ରକାଶ କରିଛନ୍ତି:-

ସୌନ୍ଦର୍ଯ୍ୟରେ ପରା ଦୂରତା ଥାଏ
ସୌନ୍ଦର୍ଯ୍ୟକୁ ଖୋଜାଯାଏ, ଗଢ଼ାଯାଏ ବୁଝାଯାଏ
ଏମିତିକି ତା' ପାଇଁ ଅଂକ କଷାଯାଏ,

ବୀଥି ପାଖରେ କିନ୍ତୁ ଏସବୁର ପ୍ରଶ୍ନ ଉଠେନା
ସିଏତ ସୌନ୍ଦର୍ଯ୍ୟ ପଣକୁ ଭୁଲେଇ ଦେବା
ସବୁ ବିଚାରକୁ ଟପିଯାଏ / ବୀଥିମୟ ହୋଇ ଯିବା ।୭୩।

ସୌନ୍ଦର୍ଯ୍ୟ ଚେତନା ଭିତରେ ସର୍ଜନଶୀଳତାର ସଂଭାବନା ଥାଏ, ସବୁଜ ଶିହରଣର ଉପତ୍ୟକା ଥାଏ, ବର୍ଷା ଭିଜା ମାଟିର ଗନ୍ଧ ଥାଏ, ଆଉ ନିବିଡତାର ଅନ୍ତରଙ୍ଗ ପ୍ରତିକୃତି ଥାଏ । ସେ ସତ୍ୟଠୁ ଅନେକ ଗୁଣରେ ବାସ୍ତବ ଓ ରହସ୍ୟଠାରୁ ଆହୁରି ରହସ୍ୟମୟ । ସେଇ ବୀଥି ପାଇଁ ଯେମିତି ତାଙ୍କର ସ୍ମୃତି, ସ୍ୱପ୍ନ, ସତ୍ୟ । ଗତ ଓ ଆଗତ, ଅର୍ଥ ଓ ଅନର୍ଥ, ବର୍ତ୍ତମାନ ଓ ଭବିଷ୍ୟତ ସବୁ ଏକାକାର । ତାକୁ ଘଡ଼ିଏ ନଦେଖିଲେ ତାଙ୍କର ହୋସ ଉଡ଼ିଯାଏ କାହିଁକି କେଜାଣି ! ଜହ୍ନ ଉଇଁ ଆସିଲେ ତାଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଯାଏ, ଘରଦ୍ୱାର ଗଛବୃଛ ସବୁ ଅଲଗା ଅଲଗା ଦିଶନ୍ତି । ଶ୍ରାବଣର ନଈ, ନୂଆ ସକାଳର ସୂର୍ଯ୍ୟ, ସବୁ ମିମଛି ମିଛିକା ହୋଇ ସତର ଡେଣା ପାଲଟି ଉଡ଼ିଯାଆନ୍ତି ତାଙ୍କ ଚେତନା ଭିତରୁ ପାଠକ ପାଖକୁ । କବି ସୌରୀନ୍ଦ୍ର ବାରିକ ସେଥିପାଇଁ 'ଯେତେ ସବୁ ବୀଥିକୁ ନେଇ' କବିତା ସଂକଳନରେ ସ୍ଥାନିତ 'କାହିଁକି କେଜାଣି' କବିତାରେ ପ୍ରକାଶ କରିଛନ୍ତି:-

କାହିଁକି କେଜାଣି ଜହ୍ନ ଉଇଁଲେ
ରକ୍ତରେ ସ୍ୱପ୍ନ ଉଏଁ
ସ୍ୱପ୍ନରୁ ଶବ୍ଦ
ଶବ୍ଦରୁ ବୀଥି ।୭୪।

ବୀଥି କବିଙ୍କ ପାଇଁ ସ୍ମୃତି, ସ୍ୱପ୍ନ, ସୌନ୍ଦର୍ଯ୍ୟ, କବିତା ତଥା ସର୍ବୋପରି ସର୍ଜନଶୀଳତାର ବାହନ ହୋଇ ପାଖେ ପାଖେ ରହିଥାଏ । ତାଙ୍କ ସ୍ୱପ୍ନର ଇଲାକାରେ ଆସନ ଜମାଇ ଶବ୍ଦର ନୀରବତା ଭିତରୁ ଜୀବନକୁ ବୁଝେ । କବି ଦୃଷ୍ଟିରେ ବୀଥି କେତେବେଳେ ଜେମାରାଣୀ ପରି ଗଂଭୀରା ଘରେ ରକ୍ଷିଥାଏ ତ ପୁଣି କେତେବେଳେ ଋଷିକନ୍ୟା ହୋଇ ଫୁଲ ଗଛରେ ପାଣି ଢ଼ାଳୁଥାଏ । ଆଉ ସବୁବେଳେ ଲାଗୁଥାଏ ତା ଆସିବାର ବେଳ, ଶବ୍ଦରେ ଶୁଭେ ତା'ର ପ୍ରତିଟି ପାଦଶବ୍ଦ ।

ସୌରୀନ୍ଦ୍ରଙ୍କ କାବ୍ୟପୁରୁଷ ନ ପାଇବାର ତୃପ୍ତିରେ ସମୁଦ୍ରକୁ ଡେଇଛି, ଆଉ ବୁଡ଼ିଛି ମଧ୍ୟ । ଏତେ ନିଜର ଚେଷ୍ଟାକରି ମଧ୍ୟ ନିଜେ ନିଜର ହୋଇ ପାରିନି । ଆଲୁଅ ନହୋଇ ବାଟ ଦେଖାଇଛି, ରାତି ନହୋଇ ସ୍ୱପ୍ନ ଦେଖାଇଛି, ଗୀତନଗାଇ ଗୁଣୁ ଗୁଣୁ ହୋଇଛି । ଅହଂର ପରିଧି ଭିତରୁ ଅନୁଭୂତିର ଉଦାର ଉଚ୍ଚାରଣ ହୋଇଛି ତାଙ୍କ କାବ୍ୟପୁରୁଷ । ସୌନ୍ଦର୍ଯ୍ୟ ଚେତନା ଆଉ ତା'ର ରହସ୍ୟ ଭିତରେ ଦେଖିବାକୁ ଗଲେ ପ୍ରକୃତରେ କବିତାକୁ କେହି ବୁଝିବାକୁ ଚେଷ୍ଟା କରେନି ଆଭିଧାନିକ ଅର୍ଥଖୋଜି । ତଥାପି ପାଠକ ପଢ଼େ ରହସ୍ୟକୁ ଖୋଜେ । ଆଉ କବି ଲେଖେ ରହସ୍ୟରୁ ରହସ୍ୟ ପାଇଁ ଜୀବନ ନଈରେ ବନ୍ଧ ହୋଇ ।

ଧାଡ଼ିଏ ଗୀତରେ ଥାଏ ଧାଡ଼ିଏ ଭାବ / ଟିକିଏ ଭାବରେ ଜୀବନେ ଅନୁଭବ / ଏଇ ଅନୁଭବର ଅର୍ଥ ବଞ୍ଚିବା ଆଉ ଜୀବନକୁ ଭଲପାଇବା । ସବୁଠି ଭଲ ପାଇବାର ଆଲୁଅ ଭିତରେ, ସବୁଠି ନିଜର କରିବା ଭିତରେ ପ୍ରାଣର ଦିବ୍ୟ ଆନନ୍ଦକୁ ପ୍ରକାଶ କରେ ବୀଥି । ସୌନ୍ଦର୍ଯ୍ୟ ଚେତନା କବି ସୌରୀନ୍ଦ୍ରଙ୍କ କବିତାର ଅନନ୍ୟ ଉପାଦାନ ।

**(ଚ) ପ୍ରଣୟ ଚେତନା :**

ପ୍ରେମର ସଂପର୍କ ସବୁଠାରୁ ଆଦିମ ତମ ସଂପର୍କ । ସେଥିପାଇଁ ପ୍ରେମ କବିତାର ଇତିହାସ ସୁ-ପ୍ରାଚୀନ । ଆଦାମ-ଇଭ, ଯମ-ଯମୀ, ମଦନ-ରତି ଓ ସଂସ୍କୃତ ସାହିତ୍ୟର ଶୃଙ୍ଗାରାଷ୍ଟକ ଶୃଙ୍ଗାର ତିଳକ ଠାରୁ ଆରମ୍ଭ କରି ଗ୍ରାମ ଅଞ୍ଚଳର ଲୋକ ସଂଗୀତ ପର୍ଯ୍ୟନ୍ତ ସବୁଥିରୁ ଏହାର ପ୍ରାଣବନ୍ତ ସ୍ପର୍ଶ ମିଳେ । ଦେଶ, କାଳ ଓ ପ୍ରସଙ୍ଗ ଭେଦରେ ସେଥିରେ ଯାହା ଅଳ୍ପ ଅଧିକ ପ୍ରଭେଦ ଦେଖାଯାଏ, ନଚେତ ସବୁରି ମୂଳ ଧର୍ମ ଗୋଟିଏ । ହେଲେନର ଅସାମାନ୍ୟ ରୂପ, କ୍ଲିଓପ୍ୟାଟ୍ରାର ସର୍ବନାଶୀ ପ୍ରେମ, ପିଙ୍ଗଳାର ଅଦ୍ଭୂତ ଅଭିସାର ଓ ସୀତା ସାବିତ୍ରୀର ଅସାମାନ୍ୟ ପତି ଭକ୍ତି ମଧ୍ୟରେ ମଣିଷ ସମାଜର ସର୍ବ ପ୍ରାଚୀନ ଓ ସର୍ବ ପ୍ରଧାନ ପ୍ରବୃତ୍ତି ହିଁ କାର୍ଯ୍ୟ କରିଛି । ଭିନ୍ନ ଭିନ୍ନ କବି ସେମାନଙ୍କୁ ଭିନ୍ନ ଭିନ୍ନ ସାହିତ୍ୟ ଓ ସମାଜର ଭୂମିକାରେ ଅବତୀର୍ଣ୍ଣ କରାଇଥିବାରୁ ଅନ୍ତର୍ନିହିତ ଐକ୍ୟବୋଧ ସହଜରେ ଆଖିକୁ ଆସିପାରୁ ନାହିଁ । ପ୍ରେମର ଜନ୍ମ ରୂପର ସାଗର ମଧ୍ୟରୁ, ଠିକ୍ କବି ଗୁରୁଙ୍କ ପରିକଳ୍ପିତ ଉର୍ବଶୀ ଭଳି ତାର ବ୍ୟାପ୍ତି ଓ ବିକାଶ ଅରୂପ ମଧ୍ୟରେ । ଦେହରୁ ଦେହାତୀକୁ ଗତିକରେ ସେ, ସେଥିପାଇଁ ଯେଉଁ ଲୋକ କବି ପ୍ରକାଶ କରିଛନ୍ତି – 'ମରିଯିବି ଧନ ତୁମରି କୋଳେ, ପୀରତି ଲାଗିଲା ବେଳେ' ସେ ଯେତିକି ରସାନୁଭୂତି ବ୍ୟକ୍ତ କରିଛି 'ବିଦଗ୍ଧ ଚିନ୍ତାମଣି'ର କବି ମଧ୍ୟ ରାଧା ଓ ବିଶାଖାଙ୍କର ଭକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ସେତିକି ରସାନୁଭୂତି ବ୍ୟକ୍ତି କରିଛନ୍ତି ।୭୫।

ସ୍ଥାନ ବିଶେଷରେ ଦାର୍ଶନିକ ପ୍ଲେଟୋ ରୂପାତୀତ ପ୍ରେମର ଶାନ୍ତ ସୁନ୍ଦର ଅନୁଭୂତିର ପରିଚୟ ପ୍ରଦାନ କରିବାକୁ ଯାଇ ପ୍ରକାଶ କରିଛନ୍ତି Our love at its hightest flood, goes beyond its limit and loses itself in the infinite. ପ୍ରେମ କ'ଣ ? ଆଶୀର୍ବାଦ ନା ଅଭିଶାପ । ଦେହଜ ତୃଷା ନା ଅତୀନ୍ଦ୍ରିୟ ପୁଲକାନୁଭୂତିପୂର୍ଣ୍ଣ, ତ୍ୟାଗ ମଧୁର, ତିତିକ୍ଷା-ଗମ୍ଭୀର ଜ୍ଞାନମୟ ଭାବଭରା ଏକ ମାନସିକ ଅବସ୍ଥା ? ଯେଉଁଠି କି ଜୀବନ ଧାରଣ ଅପେକ୍ଷା ଜୀବନ ଦର୍ଶନ, ଆତ୍ମ-ପ୍ରଜନନ ଅପେକ୍ଷା ଆତ୍ମ ପ୍ରସାରଣ ଅଧିକ ଗୁରୁତ୍ୱ ଲାଭ କରିଛି ଏବଂ ବ୍ରହ୍ମ ହିଁ ତା'ର ବୋଧ ବୋଧନର ସର୍ବମୟ ସ୍ରଷ୍ଟା । ଏହି ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ ଯାଇ 'ପ୍ରେମ'ର ବିଭିନ୍ନ ଦୃଷ୍ଟିକୋଣ ଓ ବିବିଧ ପରିପ୍ରେକ୍ଷୀରୁ ବହୁମୁଖୀ ବିଶ୍ଳେଷଣ ଯୁଗ ଯୁଗ ଧରି ସାହିତ୍ୟ, ଇତିହାସ, ଦର୍ଶନଶାସ୍ତ୍ର ପ୍ରଭୃତିରେ ବହୁ ପ୍ରତିଭା-ପ୍ରୋଜ୍ଜ୍ୱଳ ଚିନ୍ତାଶୀଳ ମନୀଷୀମାନଙ୍କ ଦ୍ୱାରା ବର୍ଣ୍ଣିତ ହୋଇ ଆସିଛନ୍ତି । କେତେ କବି ସାଧକ କଳାକାର ବିଭିନ୍ନ ମାଧ୍ୟମରେ ପ୍ରେମର ଯେଉଁ ସ୍ୱରୂପ ଓ ପ୍ରକୃତି ନିର୍ଣ୍ଣୟ କରିପାରିଛନ୍ତି ତାହା ସବୁ ସମୟ ପାଇଁ

ସ୍ଥିର ଓ ଶେଷ ସିଦ୍ଧାନ୍ତ ରୂପେ ଗୃହୀତ ହୋଇ ପାରିନାହିଁ । ଫଳରେ ମାନବ ସଭ୍ୟତା ଉନ୍ମେଷର ପ୍ରଥମ ପ୍ରଭାତରୁ ଆଜି ପର୍ଯ୍ୟନ୍ତ ମନୁଷ୍ୟ ଜୀବନର ନିରବଚ୍ଛିନ୍ନ ଚିନ୍ତା ସ୍ରୋତରେ, ଏଇ ଚିର ପରିଚିତ, ଅଥଚ ଅମୀମାଂସିତ ପ୍ରଶ୍ନ, ଯୁଗ ଯୁଗ ଧରି ନାନା ଆଲୋଚନା, ଯୁକ୍ତି ଆଉ ମତ ଦେଇ ଭାସି ଆସିଛ ଏବଂ ପ୍ରତ୍ୟେକ ତାକୁ ସ୍ୱୀୟ ବ୍ୟକ୍ତିଗତ ସ୍ୱତନ୍ତ୍ର ଓ ସ୍ୱାଧୀନ ଦୃଷ୍ଟିକୋଣରୁ ଅଧ୍ୟୟନ ଓ ଅନୁଧ୍ୟାନ କରିଛନ୍ତି ।୭୬।

ସାହିତ୍ୟ ସାଧକ ନିକଟରେ 'ପ୍ରେମ' କୁଝ୍‌ଟୀକାଚ୍ଛାଦିତ ମନୋରମ ପ୍ରଭାତ ପରି ଜଟିଳ ରହସ୍ୟର ମାୟାଜାଲ ମଧ୍ୟରେ ଅଧିକ ଲୋଭନୀୟ ଆକର୍ଷଣୀୟ ଅଥଚ ଅସ୍ପଷ୍ଟ । ବୈଷ୍ଣବଯୁଗୀୟ ପ୍ରେମାନୁଭୂତି, ଅତୀନ୍ଦ୍ରିୟ, ଶୁଦ୍ଧ ଓ କାମନା ଶୂନ୍ୟ ବୋଲି ସମାଲୋଚକମାନଙ୍କ କଣ୍ଠରେ ସ୍ୱୀକୃତ ହେଲେ ହେଁ ନରନାରୀର ଯେଉଁ ଦୈହିକ-ସମ୍ଭୋଗର ଚିତ୍ର ତହିଁରେ ମିଳେ ତାକୁ 'ଜୀବାତ୍ମା ସହ ପରମାତ୍ମା' ବା 'ପ୍ରକୃତି ଓ ପୁରୁଷ'ର ଛନ୍ଦାଚରଣ ତଳେ ଲୁଚାଇ ରଖିବା ଏକ ଉପହସନୀୟ ଅପପ୍ରୟାସ ଅବଶ୍ୟ ପ୍ରେମ ମନୁଷ୍ୟ ଜୀବନର ଏକ ମୁଖ୍ୟ ବିଭାଗ । କିନ୍ତୁ ଫ୍ରଏଡ୍ ଯେପରି ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟକଳାପ, ସ୍ନେହ, ମମତା ଏବଂ ଆବେଗ ଉତ୍ସାହର ଅନ୍ତରାଳରେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ଏହାର ଉପସ୍ଥିତି ନିର୍ଦ୍ଦେଶ କରିପାରିଛନ୍ତି; ତାହା ଅବାନ୍ତର ଅତି ରଞ୍ଜିତ ମନେହୁଏ । ଦେହ ଓ ମନ ଉଭୟକୁ ପ୍ରେମ ଗଭୀର ଭାବରେ ପ୍ରଭାବିତ କରେ । ମାନସିକ ସଂପର୍କ ବର୍ଜିତ ଦୈହିକ ମିଳନ ଯେପରି ଘୃଣ୍ୟ ଓ ପାଶବ ପ୍ରବୃତ୍ତିର ନାମାନ୍ତର, ସେହିପରି ଦୈହିକ ସଂପର୍କ ବିରହିତ 'କେବଳ ମାନସିକ ପ୍ରଣୟ' ବିକାର ଗ୍ରସ୍ତ ମନର ଏକ ଦୁର୍ବଳ ଅଥଚ ଲାଞ୍ଛନୀୟ ପ୍ରତିକ୍ରିୟା ମାତ୍ର । କିନ୍ତୁ ବୈଷ୍ଣବ ପ୍ରେମ ସାହିତ୍ୟରେ 'ପ୍ରେମ' ଦେହାତୀତ ବୋଲି ଡିଣ୍ଡିମ ବାଜୁଥିଲେ ହେଁ ସେଥିରେ ନାରୀର ବିଭିନ୍ନ ଅଂଗ-ସୌଷ୍ଠବ, ମିଳନ କାଳୀନ ଯେଉଁ ଉତ୍ତେଜନାମୟ କାମନା-କୁଟିଳ ନଗ୍ନ, ଲୋଭନୀୟ ମାଂସଳ ଚିତ୍ରଣ ଦେଖିବାକୁ ମିଳେ, ତାହାରି ଅନ୍ତରାଳରେ ରକ୍ତମାଂସର କବି ପ୍ରାଣର ଦୈହିକ ବାସନା ଓ ଯୌନ-ଲାଳସାର ପ୍ରଚ୍ଛନ୍ନ ପ୍ରକାଶ ଘଟିନାହିଁ କହିଲେ, ଅନ୍ୟାୟ ଓ ଅଜ୍ଞାତ ହେବ ।୭୭।

ଏପରିକି ଚନ୍ଦ୍ରଚାଳନ, ନୀବିମୋଚନ, ସ୍ତନ ମର୍ଦ୍ଦନର ଦ୍ୱିଧାହୀନ ବର୍ଣ୍ଣନା ବିସ୍ତୃତ ଭାବେ ମିଳେ, ତାହା ସାଧାରଣ ମନୁଷ୍ୟ ଜୀବନର କଥା-ସେଥିରେ ଅଲୌକିକତାର ଲେଶମାତ୍ର ଗନ୍ଧ ନାହିଁ, ତେଣୁ କବି ସେଠି ନିଜ ଜୀବନର ରସାଳ ଅନୁଭୂତିକୁ ହିଁ ବ୍ୟକ୍ତ କରିଛନ୍ତି । ଏ ସଂପର୍କରେ ଉଦାହରଣ ନିଷ୍ପ୍ରୟୋଜନ । 'ଗୋପୀଭାଷା', 'ରସକଲ୍ଲୋଳ', 'ବିଦଗ୍ଧ ଚିନ୍ତାମଣି' ପ୍ରଭୃତି କାବ୍ୟର ଏତାଦୃଶ ପଂକ୍ତି ସହିତ ସାଧାରଣ ପାଠକ ଅପରିଚିତ ନୁହଁନ୍ତି । ତେଣୁ ମୋଟ ଉପରେ କହିବାକୁ ଗଲେ, ସେହି ସମୟର ସାହିତ୍ୟ ମୁଖ୍ୟତଃ ଧର୍ମାଶ୍ରୟୀ ଥିଲେ ହେଁ ଏବଂ ସେଥିରେ ବର୍ଣ୍ଣିତ ପ୍ରେମ ଚିତ୍ର ଅପାକୃତ ପ୍ରେମ ମୂର୍ତ୍ତି ରାଧାହରିଙ୍କ ଚରିତ୍ରକୁ କେନ୍ଦ୍ରକରି ଗଢ଼ି ଉଠିଥିଲେ ହେଁ ତହିଁରେ ଦେହର ସ୍ଥାନ ଅଛି । ରାଧାକୃଷ୍ଣଙ୍କର ପ୍ରେମ

ଅତୀନ୍ଦ୍ରିୟ, ଆଧିଭୌତିକ, ଶୁଦ୍ଧ ସ୍ୱର୍ଗୀୟ ଏବଂ ଅପ୍ରାକୃତ ହେଲେ ବି ତା'ର ଯେଉଁ ବର୍ଣ୍ଣନା କବି କଣ୍ଠରେ କରାଯାଇଛି, ତାରି ମଧ୍ୟରେ ମନୁଷ୍ୟ-ମନର ଶୋଣିତ ଲାଳସା ଓ ସ୍ୱଭାବ ସୁଲଭ ଦୁର୍ବଳତାର ପ୍ରକାଶ ସ୍ପଷ୍ଟ । ଏଇ ପାରମ୍ପରିକ ସ୍ରୋତରେ, ସାହିତ୍ୟ ସ୍ରୋତସ୍ୱିନୀ ଗତି କରି ଚାଲିଥିଲାବେଳେ, ଉପେନ୍ଦ୍ର ଭଞ୍ଜ ଯେଉଁ ବ୍ୟତିକ୍ରମ ସୃଷ୍ଟିକଲେ, ଯାହା ଫଳରେ ପୌରାଣିକ ଚରିତ୍ର ସ୍ଥାନରେ କାଳ୍ପନିକ ଚରିତ୍ରମାନେ ଗଢ଼ି ଉଠିଲେ ଏବଂ ପରକୀୟା ପ୍ରୀତି ସ୍ୱକୀୟାରେ ପରିଣତ ହେଲା । ଏହା ଫଳରେ ଭଞ୍ଜ କ୍ରମ-ବିଲୟମାନ ସାମାଜିକ ନୈତିକତାକୁ ଉଦ୍ଧାର କରି ପୁନଃ ପ୍ରତିଷ୍ଠାର ପ୍ରୟାସ କରିଥିଲେ ହେଁ ସ୍ଥୁଳତଃ ପ୍ରେମର ଧାରା ଅବ୍ୟାହତ ରହିଲା । ନରନାରୀର ପ୍ରେମ ବର୍ଣ୍ଣନାରେ ବିଶେଷ କିଛି ଉଲ୍ଲେଖ ଯୋଗ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ । ସେ ଅଲୌକିକ ବା ଅପ୍ରାକୃତ ପ୍ରେମର ବନ୍ଦନା ଗାନ କରିବା ପରିବର୍ତ୍ତେ ମୁକ୍ତ କଣ୍ଠରେ ଲୌକିକ ତଥା 'ଜାଗତିକ', 'ଦୈହିକ' ପ୍ରୀତିର ଗୌରବ ଗାନ କରିଅଛନ୍ତି । ତାଙ୍କର ନାୟକ ନାୟିକା କଳ୍ପନା ପ୍ରସୂତ ଏବଂ ସେମାନଙ୍କର ପ୍ରେମ ତ୍ୟାଗ-ନ୍ୟାୟ ନୁହେଁ କି ସଂଯମ ଓ ସାଧନାର ଅଗ୍ନି କୁଣ୍ଡରେ ପରୀକ୍ଷିତ ହୋଇ ମହିମାନ୍ୱିତ ନୁହେଁ, ବରଂ ଦେହଜ ଲାଳସା ଓ ଉପଭୋଗ ହିଁ ସେମାନଙ୍କର ଧ୍ୟେୟ । ଉପବନ ବିହାର ଜଳକେଳି ଭିତରେ ଭଞ୍ଜୀୟ ପ୍ରତିଭା କେନ୍ଦ୍ରୀଭୂତ । କବି ନିଜେ ପ୍ରକାଶ କରିଛନ୍ତି:-

''ବିଚାରଇ କବି ଉତ୍ତମ ଛାନ୍ଦଗୀତ
ରସ-ସାର-ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ ।'' (ଲାବଣ୍ୟବତୀ)

ଅବଶ୍ୟ 'ଶୃଙ୍ଗାରୀଚେତଃ କବି'ର ଆଦର୍ଶାନୁପ୍ରାଣିତ ଭଞ୍ଜଙ୍କର ସମସାମୟିକ ପରିସ୍ଥିତି 'ପ୍ରେମ' କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ବା ପରମ୍ପରା ସୃଷ୍ଟି ନିମନ୍ତେ ଅନୁକୂଳ ନଥିଲା, କିନ୍ତୁ ଶୃଙ୍ଗାର ରସ ମାଧୁରୀ ପରିପୂର୍ଣ୍ଣ ଭଞ୍ଜୀୟ-କାବ୍ୟରାଜିର ରାଜ ପ୍ରାସାଦ କେଳିକୁଞ୍ଜ, ବାସର ରାତ୍ରିର ବିଳାସ ବିଲୋଳ ବର୍ଣ୍ଣନାର ବହୁଳତା ମଧ୍ୟରେ ପାଠକକୁ ଅଣନିଃଶ୍ୱାସୀ ହେବାକୁ ପଡ଼େ । ସେଥିରେ ଯେଉଁ ଦୁଃଖ ବା କାରୁଣ୍ୟର ଅବତାରଣା କରାଯାଇଛି, ତାହା କେବଳ ରୂପ ମୁଗ୍‌ଧ ନରନାରୀଙ୍କ ସଙ୍ଗ ଲାଭ-ଲିପ୍‌ସା-ଜନିତ ବ୍ୟାକୁଳ ଆର୍ତ୍ତନାଦ ! ସେ କାରୁଣ୍ୟ ବା ବିରହ ପୁଣି ଅଳ୍ପକ୍ଷଣ ସ୍ଥାୟୀ, କେବଳ ମିଳନ ପର୍ବ ବାୟୁ ମଣ୍ଡଳର କାବ୍ୟିକ ମହତ୍ତ୍ୱ ପୂର୍ଣ୍ଣ କରିବ ବୋଲି, ବିରହର ଅବତାରଣା କରାଯାଇଛି, ଫଳରେ ଭଞ୍ଜ ଯୁଗରେ ଯେଉଁ ପ୍ରେମଚିତ୍ର ଦେଖିବାକୁ ମିଳେ ତାହା କାମ ସର୍ବସ୍ୱ ଦେହ ହିଁ ସେଥିରେ ମୁଖ୍ୟ । ଉଚ୍ଚ ଚିନ୍ତା ଆଦର୍ଶ, ଆତ୍ମ ବିଶ୍ଲେଷଣ ସ୍ୱାର୍ଥତ୍ୟାଗ ସଂଯମ, ସାଧନା, ଆତ୍ମତ୍ୟାଗର କୌଣସି ଉଦାହରଣ ସେଠି ମିଳେ ନାହିଁ ।୭୮।

ପ୍ରାଚୀନ କବି ମାନଙ୍କର ପ୍ରଣୟ ବର୍ଣ୍ଣନାଠାରୁ ଆଧୁନିକ କବି ମାନଙ୍କର ପ୍ରଣୟ ବର୍ଣ୍ଣନା ନିଆରା । ପ୍ରାଚୀନ କବି ମାନଙ୍କର ପ୍ରଣୟ ବର୍ଣ୍ଣନାରେ ଦେହଥିଲା ମୁଖ୍ୟ ଓ କାମୋଦ୍ଦୀପକ ବର୍ଣ୍ଣନାରେ ସେମାନଙ୍କର ଲେଖନୀ ଥିଲା ଚଳଚଞ୍ଚଳ ଓ ଗତିଶୀଳ । ଯୌବନ ବର୍ଣ୍ଣନା ଭିତରେ

କାମଲାଳସା ଜାଗ୍ରତ କରିବାରେ ସେମାନଙ୍କର କାବ୍ୟକବିତା ଥିଲା ଶତମୁଖ କିନ୍ତୁ ଆଧୁନିକ କବି ମାନବିକତା ଦୃଷ୍ଟିକୋଣରୁ ନାରୀ ମନସ୍ତତ୍ତ୍ୱକୁ ବିଚାର କରିବା ସହିତ ତା'ର ମାନସିକତାକୁ କବିତାରେ ପ୍ରକାଶ କରିଛି । ଆଧୁନିକ କବିର ମନରେ ବିରହ ଜାଗ୍ରତ ହୋଇଛି ସତ କିନ୍ତୁ ତା'ର ବିରହ ରୂପାନ୍ତରିତ ହୋଇଛି ପ୍ରଣୟରେ ।

କବି ସୌରୀନ୍ଦ୍ର ବାରିକ୍ ତାଙ୍କ କବିତାରେ ଯେଉଁ ପ୍ରଣୟର ସ୍ୱରୂପ ଅଙ୍କନ କରିଛନ୍ତି ତାହା ଅନନ୍ୟ ଓ ଅସାଧାରଣ । କବି କେତେବେଳେ ପତ୍ନୀପ୍ରେମରେ ଆତ୍ମବିଭୋର ତ ଆଉ କେତେବେଳେ ବିଭୁପ୍ରେମରେ ତଲ୍ଲୀନ କେତେବେଳେ ପ୍ରକୃତି ପ୍ରେମରେ ବିସ୍ମୃତ ତ କେତେବେଳେ ବସ୍ତୁପ୍ରେମରେ ମଗ୍ନ । ସଚରାଚର ବ୍ରହ୍ମାଣ୍ଡର ଯେ ସ୍ରଷ୍ଟା କବି ତାଙ୍କ ପ୍ରେମରେ ପଡ଼ିବା ସ୍ୱାଭାବିକ । ଈଶ୍ୱରଙ୍କ ସ୍ଥିତି ସଂପର୍କରେ ସଦାସର୍ବଦା କବି ସଚେତନ କିନ୍ତୁ କେବେ ପାଏ ନାହିଁ ତାଙ୍କ ଦର୍ଶନ । ସକଳ ଘଟରେ ଆତଯାତ କିନ୍ତୁ କବି ତାଙ୍କର ଠିକଣା ପାଏନା । କୃଷ୍ଣସାର ମୃଗର ନାଭିରୁ ସୁଗନ୍ଧ ଚତୁର୍ଦ୍ଦିଗକୁ ମୋହିତ କରେ କିନ୍ତୁ ମୃଗ ତାହା ବୁଝିନପାରି ଇତଃସ୍ତତ ଭ୍ରମଣ କରେ । ଠିକ୍ ସେହିପରି 'ମଣିଷ ଦେହେ ଦିବ୍ୟଜ୍ଞାନ, ଦେଖି ସନ୍ତୋଷ ଭଗବାନ', ଏହି ମର୍ମବାଣୀକୁ ଯଦିବା କବି ଭଲ ଭାବରେ ହୃଦୟଙ୍ଗମ କରିଛି ତଥାପି ଈଶ୍ୱରଙ୍କ ସାନ୍ନିଧ୍ୟ ପାଇବା ପାଇଁ କବି ବ୍ୟାକୁଳ ।

ଭକ୍ତର ଅନନ୍ତ ଅନ୍ୱେଷଣ ଈଶ୍ୱର । ଶୟନେ ସ୍ୱପନେ ଜାଗରଣେ ଭକ୍ତ ଭଗବାନଙ୍କର ନାମ ସ୍ମରଣ କରେ । ତାଙ୍କ ପାଇଁ ଦାରା, ସୂତ, ଧନ, ଦଉଲତ ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ କରେ । କାୟମନବାକ୍ୟରେ ଦାନ୍ତ ନିକୁଟି ନିର୍ଜଳ ଉପବାସରେ ଶରଣ ପଶେ, କେବଳ ଦର୍ଶନ ଓ କରୁଣାପାଇଁ । କବି ସୌରୀନ୍ଦ୍ର ସାର୍ଥକ ଭକ୍ତ ଭାବରେ ଈଶ୍ୱରଙ୍କୁ ଅନ୍ୱେଷଣ କରିଛନ୍ତି । କେତେବେଳେ କବି ତାଙ୍କୁ ଦର୍ଶନ କରିଛନ୍ତି ସନ୍ଧ୍ୟା ରୂପରେ କଳା ଶାଢ଼ୀ ପିନ୍ଧି ଧରା ବକ୍ଷକୁ ଅବତରଣ କରିଛନ୍ତି ତ ଆଉ କେତେବେଳେ କେଦାର କାନନ ଉପରେ ପବନର ହିଲ୍ଲୋଳ ପରି ପ୍ରତୀୟମାନ ହୋଇଛନ୍ତି । ଚତୁର୍ଥୀ ଜହ୍ନର ମଳିନତା ଭିତରେ ଦୀପ୍ତିମୟୀ ସ୍ୱାତୀପରି କବି ତାଙ୍କୁ ଅବଲୋକନ କରିଛନ୍ତି । କବି ସୌରୀନ୍ଦ୍ର ବାରିକ୍ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ଅନ୍ୱେଷଣ' କବିତାରେ ପ୍ରକାଶ କରିଛନ୍ତି:-

ଅତୀତର ସର୍ପିଳ ସିଡ଼ିରେ
ଡେଇଁ ଡେଇଁ ଅନ୍ଧାରର ପ୍ରତିଟି ପାହାଚ
ତୁମେ ଆସ କଳାଶାଢ଼ୀ ପିନ୍ଧି
ଆଉ ଅମା ଅନ୍ଧାରରେ ନିହାରିକା ପରି
ଅବାଶସ୍ୟ କେଦାରରେ ପବନର ଅଳି ପରି
ଅସ୍ପଷ୍ଟ ତୁମେ ହଠାତ ହୋଇ ଉଠ
ଚତୁର୍ଥୀ ଜହ୍ନର ମଳିନତାରେ ଯେମିତି ଦୀପ୍ତିମୟୀ ସ୍ୱାତୀ ।୭୯।

ଦୁଃଖର ପାହାର ଖାଇ ଭାଙ୍ଗି ଯାଇଥିବା ମନ ହଠାତ୍ ଯୋଡ଼ି ହୋଇଯାଏ । ଅଚାନକ ଶରୀରରେ ସୃଷ୍ଟିକରେ ଅଗ୍ନିର ଝଡ଼, ହୃଦୟରେ ଖେଳିଯାଏ କଂପନ, ପାଗଳ ପରି କଂପନକୁ ପ୍ରାଣେ ପ୍ରାଣେ ଅନୁଭବ କରେ ମୁଁ ବୁଝି ପାରେନା କାହାର ନିର୍ଦ୍ଦେଶରେ, ଚାହାଁଣିରେ ଚମକ ଆସେ ନାହିଁ ନଥିବା ଘଟଣା ସବୁ ଘଟିଯାଏ ? ଅନନ୍ତ ଅନ୍ୱେଷଣ କବି ଜୀବନର ମାନେ ଖୋଜୁ ଖୋଜୁ ଜୀବନ ନିୟନ୍ତ୍ରକକୁ ପାଇବା ନିମନ୍ତେ, ନୀରବତାର କୋଠରୀ ଭିତରେ, କଳାଘୂମର ଜଳରାଶି ଭିତରେ, ଅନନ୍ତ ଆକାଶର ଉଦାର ଛାତିରେ, ଶେଷ ଶିଶିର ଶୀର୍ଷକରେ, ଘାସଫୁଲର କାକର ଟୋପାରେ, କୁଷ୍ଠରୋଗୀର ଯନ୍ତ୍ରଣାରେ କଳକଣ୍ଠର କୂଜନରେ, ଝରା ଶେଫାଳୀର ବାସ୍ନାରେ, ଫଗୁଣର ପହିଲି ସ୍ପର୍ଶରେ, ଆମ୍ର ବୀଥିକାର ନିବିଡ଼ ଅନ୍ଧାରରେ, ଦରୋଟି ଶିଶୁର କଅଁଳ କଥାରେ, ଆଷାଢ଼ର ଅଦିନ ବର୍ଷାରେ, ଈଶ୍ୱରଙ୍କ ସ୍ୱର କବି ଶୁଣି ପାରେ । ବୁଝିପାରେ ଏ ସବୁର ନାଟ୍ୟକାର ଜଣେ । ତାଙ୍କ ନାଟକର ଚରିତ୍ର ସବୁ ଆସିବେ ଯିବେ କିନ୍ତୁ ନାଟ୍ୟକାର ନାଟକ ଲେଖି ଚାଲିଥିବେ ନା କାହାଣୀ ସରୁଥିବ ? ନା ମଞ୍ଚ ଭାଙ୍ଗୁଥିବ ? କେବଳ ନାୟକ ନାୟିକା ପରିବର୍ତ୍ତନ ହେଉଥିବେ । କବି ସୌରୀନ୍ଦ୍ର ବାରିକ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ ଅନ୍ୱେଷଣ କବିତାରେ ପ୍ରକାଶ କରିଛନ୍ତି:-

'ମୋ ପ୍ରାଣକୁ ତୁମେ ଉଦ୍‌ଭାସିତ କର
ପୁଣି ମୋ ଶରୀରରେ ସୃଷ୍ଟିକର ଅଗ୍ନିଝଡ଼
ମାନସୀର ଅନାଶିତ ସ୍ପର୍ଶରେ ଶରୀରରେ ସେ ଝଡ଼ ଉଠେ
ଯେ କମ୍ପନ ଖେଳେ ।
ପାଗଳ ପରି ଏ କମ୍ପନକୁ ଅନୁଭବ କରେ
ପାଗଳ ପରି ଏ ଅଗ୍ନିଝଡ଼ ଭିତରେ ଜମାଟ ବାନ୍ଧି ଯିବାକୁ ଚାହେଁ
କିମ୍ବା ଏଇ କମ୍ପନର ଅନ୍ୱେଷଣରେ ହିଁ ଚାହେଁ
ପାଗଳ ଉଲ୍‌କା ପରି ପଥଭୁଲି ଜଳିଯିବା ପାଇଁ ।୮୦।

କେତେବେଳେ ନବବଧୂ ଚୁଡ଼ି କିଙ୍କିଣୀ ପରି ତାଙ୍କର ଶବ୍ଦ ତ ଆଉ କେତେବେଳେ ପ୍ରଣୟୀ ବକ୍ଷର କଲ୍ଲୋଳ ପରି ତାଙ୍କର ଆହ୍ୱାନ କବିଙ୍କୁ କରିଛି ପାଗଳ । ପଦ୍ମ ପତ୍ରର ଶିଶିର ବିନ୍ଦୁରେ ଈଶ୍ୱରଙ୍କ ନେତ୍ର ଦର୍ଶନ କରନ୍ତି ଓ ବନ ବୀଥିକାର ମର୍ମରରେ ତାଙ୍କର ଦୀର୍ଘଶ୍ୱାସକୁ ଅନୁଭବ କରନ୍ତି କବି । ଅତୀତ ବର୍ତ୍ତମାନ ଭବିଷ୍ୟତର ରୂପରେଖ ଭିତରେ ଈଶ୍ୱର ଲୀଳାଖେଳା କରନ୍ତି । କବିଙ୍କୁ ଶେଷରେ ତାଙ୍କ ଭିତରେ ଲୀନ କରନ୍ତି । ଚିରକାଳ ଅବୋଧ ପାଲଟି ଯାଆନ୍ତି । କବି ସୌରୀନ୍ଦ୍ର ଅନ୍ୱେଷଣ କବିତାରେ ପ୍ରକାଶ କରିଛନ୍ତି:-

ପଦ୍ମ ପତ୍ରର ଶିଶିର ହୋଇଯାଏ ତୁମ ଆଖି
ଆଉ ବନମର୍ମର ପାଲଟି ଯାଏ ତୁମ ଦୀର୍ଘଶ୍ୱାସ
କିନ୍ତୁ ତୁମେ ମୋର ନହୋଇ

ମୋତେ ସଂପୂର୍ଣ୍ଣ ରୂପେ ଲୀନକର ତୁମରି ଭିତରେ
ପୁଣି ତୁମେ ନିଜେ ପାଲଟି ଯାଅ
ଏକ ଅପୂର୍ବ, ଅବୋଧ୍ୟ ମୁଁ ।୮ ୧।

ସୌରୀନ୍ଦ୍ରଙ୍କୁ ପ୍ରେମର କବି ଅପେକ୍ଷା ସଂପର୍କର କବି କହିବା ଅଧିକ ସମୀଚୀନ ହେବ । ଅର୍ଥହୀନ ନିଃସଂଗ ଜୀବନଟି ଏଠାରୁ କାଳର ଶତ ହେଣ୍ଟାଳ ଡେଇଁ ବ୍ୟାକୁଳ ପ୍ରତୀକ୍ଷା ଓ ପ୍ରାପ୍ତି ଭିତରେ, ଯାବତୀୟ ଅଶ୍ଳୀଳ ସ୍ମୃତି ଓ ଦୈନନ୍ଦିନ ଦାମ୍ପତ୍ୟ ଜୀବନର ଆବେଗ ପୂର୍ଣ୍ଣ ଅନୁଭୂତି ଭିତରେ, ସ୍ୱପ୍ନ ଓ ସମାଧାନ ଭିତରେ ତାଙ୍କ କବିତାଗୁଡ଼ିକରେ ସ୍ନେହ ସଜଳ ସଂପର୍କର ନିବିଡ଼ ସ୍ପର୍ଶ ଉପଲବ୍‌ଧ । ଏକ ଅବିଚ୍ଛେଦ୍ୟ ଆତ୍ମୀୟତାର ପୃଷ୍ଠଭୂମିରେ ଜୀବନ ଯେମିତି ସଦାକାଳ ସଦ୍ୟସ୍ନାତ । ସବୁଠି ସକାଳର ଶୁଭ ଗୁଞ୍ଜରଣ । ସବୁଠି ଗଛ ପାହାଡ଼, ନଈ, ଜନ୍. ସମୁଦ୍ର, ଆକାଶ । ସବୁଠି ଚଢ଼େଇ, ସବୁଠି ସ୍ୱପ୍ନ । ଯାବତୀୟ ଜଞ୍ଜାଳ, ସମୟର ନିଷ୍ଠୁ[illegible]ାସ ଓ ପ୍ରତାରଣା ଭିତରେ ଜୀବନର ମଧୁର ମୁହୂର୍ତ୍ତ ମରିବାର ନୁହେଁ । ଅତୀତକୁ ଝୁରିହେବା ଅଛି ହେଲେ ଭବିଷ୍ୟତକୁ ଜାଳିଦେବା ନାହିଁ । ସ୍ୱପ୍ନରେ କ୍ଲାନ୍ତି ଅଛି, ହେଲେ ମୃତ୍ୟୁ ନାହିଁ । ପ୍ରତୀକ୍ଷା ଓ ପ୍ରାପ୍ତି ସ୍ମୃତି ସ୍ୱପ୍ନ ସବୁ ହାତ ଧରାଧରି । ସବୁଠି ସମୟର ସ୍ୱର, ସବୁଠି ଅନ୍ଧାରି ଶୂନ୍ୟତା; ହେଲେ ଯୋଡ଼ି ଦେଉଛି ସଂପର୍କ । ଏହି ସଂପର୍କର ନିବିଡ଼ତାରେ ହିଁ ସୌରୀନ୍ଦ୍ରଙ୍କ ମୁହୂର୍ତ୍ତମୟ କବିତା ଗୁଡ଼ିକର ଯଥାର୍ଥ ପ୍ରାଣ ପ୍ରାଚୁର୍ଯ୍ୟ ।୮ ୨।

ସବୁ କାଳେ, ସବୁ ସମୟରେ କବି ତା'ର ଈପ୍‌ସିତ ମାନସୀ ପାଇଁ ପାଗଳ । ମାନସୀ ପାଇଁ କବିର ଅନନ୍ତ ପ୍ରତୀକ୍ଷା । ପ୍ରାଣପ୍ରିୟାର ଆଡ-ଚାହାଁଣୀରେ କବି ହୃଦୟରେ ଚମକ ସୃଷ୍ଟି ହୁଏ । ହା ହୁତାଶମୟ ଜୀବନ ଭିତରେ ମାନସୀର ଉପସ୍ଥିତି କବି ଜୀବନରେ ଇନ୍ଦ୍ରଧନୁର ରଙ୍ଗ ସୃଷ୍ଟିକରେ । କ୍ଷଣିକ ଉପସ୍ଥିତିରେ କବି ଭଙ୍ଗା ବୀଣାରେ ସୁରତୋଳେ, ସବୁ କିଛି ସଂସାରର ତା' ଆଖିରେ ସୁନ୍ଦର ଦିଶେ । କ୍ଷଣିକ ମିଳନରେ କବିକୁଜୀବନର ମହାର୍ଘ ବସ୍ତୁ ପାଇଗଲା ପରିଲାଗେ । ମାନସୀର ଅଧରାମୃତ ଅମୃତ ଠାରୁ ସୁମିଷ୍ଟ । ପ୍ରିୟତମାର ଛାତି ଉପରେମୁହଁ ଗୁଞ୍ଜି ଦେଲେ ସଂସାରର ଯାବତୀୟ ଦୁଃଖ କଷ୍ଟ ଭୁଲି ହୋଇଯାଏ ଓ ଅତୀତ ଭବିଷ୍ୟତ ସବୁ ବର୍ତ୍ତମାନରେ ପରିଣତ ହୋଇଯାଏ । ପୁଲକେ ପୁଲକେ ଆନନ୍ଦ, ବାହୁ ବେଷ୍ଟନୀରେ ସମଗ୍ର ସଂସାର ଉଦ୍‌ଭାସିତ ହୁଏ । କବି ସୌରୀନ୍ଦ୍ର 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ତୁମେ' କବିତାରେ ପ୍ରକାଶ କରିଛନ୍ତି:-

ମୁଁ ଯେବେ ତୁମ ହାତ ଧରେ
ଓଠ ପରେ ଓଠ ରଖେ ଏବଂ
ତୁମ ଛାତିରେ ମୁହଁ ଗୁଞ୍ଜେ, ଭୁଲିଯାଏ
ମୋର ଏକ ଅତୀତ ଥିଲା ପୁଣି
ଏକ ଭବିଷ୍ୟତ ଅଛି ।

ତୁମ ଛାତିର କମ୍ପନରେ
ଅତୀତ, ଭବିଷ୍ୟତ ସବୁ ବର୍ତ୍ତମାନ ହୁଏ
ସବୁ ଜମାଟ ବାନ୍ଧି ହୁଏ ଗୋଟିଏ ମୁହୂର୍ତ୍ତ
ଆଉ ସେଇ ମୁହୂର୍ତ୍ତରେ କଥା କହେ
ପୁଞ୍ଜୀଭୂତ ମୋର ଅଜ୍ଞାତ ସ୍ୱରୂପ । ୮୩।

ପ୍ରିୟତମାର ପ୍ରଶ୍ୱାସରେ ପୃଥିବୀର ଅସ୍ତିତ୍ୱକୁ ଭୁଲି ହୋଇଯାଏ । ଈଶ୍ୱରଙ୍କ ଅନନ୍ତ ସୃଷ୍ଟିର ସତ୍ତାକୁ କବି ପ୍ରିୟତମା ପାଖରେ ଅନୁଭବ କରିପାରନ୍ତି ନାହିଁ । ସଚରାଚର ବ୍ରହ୍ମାଣ୍ଡକୁ ପାଶୋରି ଦିଅନ୍ତି କବି ପ୍ରିୟତମାକୁ ପାଖରେପାଇ । କବିଙ୍କ ଭାଷାରେ:-

ମୁଁ ଯେବେ ତୁମ ହାତ ଧରେ
ଓଠ ପରେ ଓଠ ରଖେ ଏବଂ
ତୁମ ଛାତିରେ ମୁହଁ ଗୁଞ୍ଜେ, ଭୁଲିଯାଏ
ମୋର ଏକ ଅତୀତ ଥିଲା ପୁଣି
ଏକ ଭବିଷ୍ୟତ ଅଛି ।
ତୁମ ଛାତିର କମ୍ପନରେ
ଅତୀତ, ଭବିଷ୍ୟତ ସବୁ ବର୍ତ୍ତମାନ ହୁଏ
ସବୁ ଜମାଟ୍ ବାନ୍ଧି ହୁଏ ଗୋଟିଏ ମୁହୂର୍ତ୍ତ
ଆଉ ସେହି ମୁହୂର୍ତ୍ତରେ କଥାକହେ
ପୁଞ୍ଜୀଭୂତ ମୋର ଅଜ୍ଞାତ ସ୍ୱରୂପ । ୮୩।

ଜୀବନର ଅନ୍ୟନାମ ପ୍ରେମ । ପ୍ରେମର ପରିଭାଷା ପ୍ରତୀକ୍ଷା । ପ୍ରତୀକ୍ଷା ଦୁଃଖର କାରଣ । ଏକା ଏକା ପ୍ରତୀକ୍ଷା ଯନ୍ତ୍ରଣା ଦାୟକ । ଆଖି ଆଗେ ନାଚି ଯାଉଥିବ ପ୍ରିୟତମା ଆସୁଥିବାର ଦୃଶ୍ୟ ନା ପ୍ରିୟତମା ଆସୁଥିବ କବିର ପ୍ରତୀକ୍ଷା ମେଣ୍ଟୁଥିବ ? ପାଇ ନ ପାଇବା, ନପାଇ ପାଇବା ଭିତରେ ଜୀବନ ବଞ୍ଚୁଥାଏ କବି । ଅନନ୍ତ ଅସହାୟତା ଓ ଅବଶୋଷ ଭିତରେ କବି ମୁହୂର୍ତ୍ତ ଗଣିବା ଛଡା କ'ଣ ଅଛି ତା'ର ଭାଗ୍ୟରେ ? ଗମ୍ଭୀର ରାତି ରତି ବ୍ୟାକୁଳ, କେବଳ ଚତୁଦ୍ଦିଗରେ ମୋର ଚିତ୍କାର । କୌଣସି ଏକ ଅଗନା ଅଗନି ବନସ୍ତର ଶୈଳ ଦେହରେ ବାଜି ମୋର ସ୍ୱର ଭାସି ଆସୁଛି ପବନରେ । ନିଜେ ନିଜର ଡାକ ଶୁଣି ଶୁଣି ବଧିର ହୋଇଯିବାଟା ସାରକଥା । ସବୁ ଅଭାବନୀୟ ପରିବେଶ ଭିତରେ କବି ଭାଙ୍ଗି ପଡିନାହାନ୍ତି । ଆଶା ରଖିଛନ୍ତି ମୋର ପ୍ରତୀକ୍ଷା ଦିନେ ଶେଷ ହେବ, ଶୂନ୍ୟତା ଅଚାନକ ପୂର୍ଣ୍ଣତାର ରୂପନେବ । ନୀରବତା ଦିନେ କଥା କହିବ ନିଃସଂଗତା ବାନ୍ଧବୀ ହୋଇ ଆଲିଙ୍ଗନ କରିବ । ଦୁଃଖ ଦୁର୍ଦ୍ଦିନ ଭିତରେ କାବ୍ୟପୁରୁଷର ଆଶା ମରିନାହିଁ ସ୍ୱପ୍ନ ଅଛି ଆକାଂକ୍ଷା ଅଛି । ବହ୍ନିର ବଳୟ ଭିତରେ କାବ୍ୟପୁରୁଷ ଜୀବନକୁ ଉପଭୋଗ କରିଛି । କବି ସୌରୀନ୍ଦ୍ର ବାରିକ 'ସାମାନ୍ୟ କଥନ' କବିତା ସଂକଳନରେ ସ୍ଥାନିତ 'ପ୍ରତୀକ୍ଷା' କବିତାରେ ପ୍ରକାଶ କରିଛନ୍ତି:-

'ତଥାପି ତହଲ ବିକଳ ମୁଁ ଶେଷହୀନ ପ୍ରତୀକ୍ଷା କରିଥିଲି । କାରଣ ମୁଁ ଜାଣିଥିଲି ଶୂନ୍ୟତା ଦିନେ ରୂପମୟୀ ହେବ । ନୀରବତା ଦିନେ କଥା କହିବ ଆଉ ନିଃସଂଗତା ବାନ୍ଧବୀ ହୋଇ ମୋତେ ଦିନେ ନା ଦିନେ ଆଲିଙ୍ଗନ କରିବ ।୮୫।

'ସାମାନ୍ୟ କଥନ' ଅନ୍ତର୍ଭୁକ୍ତ ଅଧିକାଂଶ କବିତାର ପ୍ରାଣକେନ୍ଦ୍ରରେ ଏହି ବ୍ୟାକୁଳ ପ୍ରତୀକ୍ଷାକୁ ଉପଲବ୍ଧ କରିହୁଏ । ଜୀବନର ସମଗ୍ର ଦୁଃସ୍ଥିତି ଭିତରୁ ମୁକ୍ତି ପ୍ରୟାସ ଓ ଏକ ଶାନ୍ତସବୁଜ ଜୀବନର ସ୍ୱପ୍ନାଭିଳାଷକୁ ସ୍ୱୀକାର କରିବାକୁ ହୁଏ । ସେ ସଂପର୍କର କବି । ନିଜସ୍ୱ ଭାବ ଭୂମିରେ ତାଙ୍କୁ ପହଁଞ୍ଚିବାକୁ ହେବ । 'ଆକଶ ପରି ନିବିଡ଼' କବିତ ସଂକଳନରେ ସ୍ଥାନିତ କବିତା 'ପ୍ରତୀକ୍ଷା', 'ଅନ୍ୱେଷଣ', 'କାଉଣ୍ଟର' ଆଦି କବିତାରେ ଜୀବନ ଅନ୍ୱେଷାର ଅଭୀପ୍ସାଟି ଦାର୍ଶନିକତା ଭିତରେ ଆପଣାକୁ ଆଦୃତ କରି ରଖିଥିଲେ ହେଁ 'ସାମାନ୍ୟ କଥନ'ର ପ୍ରତୀକ୍ଷା ଠାରୁ ଏହା ବିଶେଷ ଭିନ୍ନ ଧରଣର ନୁହେଁ ।୮୬।

ଆଧୁନିକ ଓଡ଼ିଆ କବିତାରେ ପବିତ୍ର ଦାମ୍ପତ୍ୟ ପ୍ରେମର ପ୍ରବର୍ତ୍ତନରେ ସୌରୀନ୍ଦ୍ର ବାରିକଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । କବିହୃଦୟ ସିଂହାସନରେ ପତ୍ନୀଙ୍କୁ ପ୍ରିୟତମା ମାନସୀ ରୂପେ ଅଭିଷିକ୍ତ କରିଛନ୍ତି ଓ ଦାମ୍ପତ୍ୟ ଜୀବନର ମାଧୁର୍ଯ୍ୟରୁ ପ୍ରେମ କବିତାର ପ୍ରେରଣା ଖୋଜିଛନ୍ତି । ଜୀବନରେ ଦାମ୍ପତ୍ୟ ପ୍ରେମର କଲ୍ୟାଣକର ଭୂମିକାଟି ଆଦୌ ଅବହେଳାର କଥା ନୁହେଁ ବରଂ ଏହାର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ଏହାର ଶାନ୍ତ ସହିଷ୍ଣୁ ସ୍ୱଭାବ, ଅକପଟ କ୍ଷମାଶୀଳ ଆଚରଣ, ଏକନିଷ୍ଠ ଆନ୍ତରିକ ଆବେଗ ଓ ସ୍ପୃହାଯୁକ୍ତ ପ୍ରସନ୍ନ ଚେତନା ଜୀବନକୁ ପବିତ୍ର ଭାବରେ ଦୀକ୍ଷିତ କରେ, ସାର୍ଥକ ଦୃଷ୍ଟି ଦିଏ, ସ୍ୱପ୍ନ ଓ ସୌନ୍ଦର୍ଯ୍ୟ ଦିଏ; କଲ୍ୟାଣ ଯୁକ୍ତ ଏକ ମାଧୁର୍ଯ୍ୟରେ ଜୀବନ ସହଜ ଓ ସାର୍ଥକ ମନେ ହୁଏ । ବିଚ୍ଛେଦ ଏଠି ବିଷାଦ କି ବିକ୍ଷୋଭ ଆଣିପାରେ ନାହିଁ । ବରଂ ସଂପର୍କର ନିବିଡ଼ତାକୁ ଅନୁଭବିବାର ଅବସର ଆଣେ । ସ୍ଥୁଳ ଜୈବିକ କାମନାର ପରିପୂର୍ତ୍ତି ଏହାର ଏକମାତ୍ର ଉଦ୍ଦେଶ୍ୟ ହୋଇ ନଥିବାରୁ ବୟସ ଏଥିରେ ପ୍ରତିବନ୍ଧକ ହୋଇପାରେ ନାହିଁ । ସ୍ମୃତି ଆଉ ସ୍ୱପ୍ନର ଉଷ୍ଣତା ଭିତରେ ଜୀବନ ସବୁଜିମା ଚିରକାଳ ଅକ୍ଷୁର୍ଣ୍ଣ ରହେ ।୮୭।

ସମୟ ଭିତରେ ଥାଇ ମଧ୍ୟ ଚିରନ୍ତନତାକୁ ଧରି ରଖି ହୁଏ । ବିଶିଷ୍ଟ ଦାର୍ଶନିକ କିଅର କେଗାଡ଼୍‌ଙ୍କ 'Either or' ଗ୍ରନ୍ଥରେ ପ୍ରସଙ୍ଗଟି ଅଛି 'The Aesthetic Validity of Marriage' ସେଥିରେ ଦାମ୍ପତ୍ୟ ପ୍ରେମର ଉଭୟ ସପକ୍ଷ ଓ ବିପକ୍ଷ ଯୁକ୍ତି ଉପସ୍ଥାପିତ ହୋଇଥିଲେ ହେଁ ବିଶ୍ୱସନୀୟତା ଚିରନ୍ତନତା ଓ ଦାୟିତ୍ୱବୋଧର ଭିତ୍ତିରେ ଅନେକାଂଶରେ ଏହାର ମହତ୍ତ୍ୱ ପ୍ରତିପାଦିତ ହୋଇଛି । ଦାମ୍ପତ୍ୟ ଜୀବନର ପ୍ରଶାନ୍ତ ପରିମିତ ସ୍ୱଭାବ ଓ କପଟ ଶୂନ୍ୟ ନିରୀହତାର ବର୍ଣ୍ଣନାଟି ସ୍ମରଣ କରିପାରିବା - Often I have sat by a bit of purling water. It is always the same, the same soft melody, the same green plants on its floor, swaying beneath its quiet waves,the same

little creatures running about the bottom, a little fish which glides under the protection of the over hanging flowers spreading out its fins against the current, hiding under a stone. How monotonous,and yet howrich in change ! Such is the homelife of marriage, quite modest purling - ithas not many changement, and yet like that water it purls, yet like that water it has melody, dear to the man who knows it, dear to him above all other sounds because he knows it.।୮୮। ସୌରୀନ୍ଦ୍ର ବାରିକ ଦାମ୍ପତ୍ୟ ପ୍ରେମର ନିଃଶବ୍ଦ ସଂଗୀତକୁ ଶୁଣି ପାରିଛନ୍ତି । ନିବିଡ଼ ଅନୁଭବ ଓ ସଞ୍ଚିତ ଆବେଗ ନେଇ କବିତା ରଚନା କରିଛନ୍ତି । କବିତାରେ ପାରମ୍ପରିକ ପ୍ରେମ କବିତାର ଯୌବନଦୀପ୍ତ ଉଦ୍ଦାମ ଆବେଗ କି ବିରହ ବ୍ୟାକୁଳ ବେଦନାର ଅଭିସାର ପାଇବା ନାହିଁ । ସ୍ନେହସ୍ନାତ କୋମଳ ଆବେଗର ନିରୀହ ନିବିଡ଼ତାର ଦାମ୍ପତ୍ୟ ଜୀବନର ପବିତ୍ର ମଧୁର ଆନନ୍ଦ ବିସ୍ମୟ ଲକ୍ଷ୍ୟ କରିପାରିବା ।

ସୌରୀନ୍ଦ୍ରଙ୍କ ପାରିବାରିକ ସଂପ୍ରୀତି ଅପରିସୀମ । ପତ୍ନୀପ୍ରେମରେ ପ୍ରତ୍ୟୟ ବେଶ୍ ସମୁଜ୍ଜ୍ୱଳ । ଦୈନନ୍ଦିନ ଦାମ୍ପତ୍ୟ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତକୁ ଆପଣା ଆବେଗରେ ଧରି ରଖି ଅସାଧାରଣ ଭାବ ମାଧୁର୍ଯ୍ୟରେ ମଣ୍ଡି ଦେବା ତାଙ୍କର ବିଶେଷତ୍ୱ । ଜୀବନର ଯାବତୀୟ ଅପୂର୍ଣ୍ଣତା ଓ ନିର୍ଜନତା ସତ୍ତ୍ୱେ ଭଲ ପାଇବାରୁ ଆବେଗ ନିବିଡ଼ ସରଳ ହୃଦୟ ନେଇ ମୁହୂର୍ତ୍ତକର ସାନ୍ନିଧ୍ୟରେ ଜୀବନର ସମଗ୍ର ସୌନ୍ଦର୍ଯ୍ୟକୁ ଉପଲବ୍ଧି କରିବାର ବ୍ୟାକୁଳତା ତାଙ୍କ କବିତାରେ ଲକ୍ଷ୍ୟ କରାଯାଏ । ପ୍ରତିଟି ମୁହୂର୍ତ୍ତ ବେଶ୍ ଆବେଗ ପ୍ରବଣ । ମୁହୂର୍ତ୍ତକରେ ହଜି ଯିବାର ନିରୀହ ବ୍ୟାକୁଳତା । କବି ସୌରୀନ୍ଦ୍ର ବାରିକ 'ଆକାଶ ପରିନିବିଡ଼' କବିତା ସଂକଳନରେସ୍ଥାନିତ 'ଆଜି କୁଆଡ଼େ ଯିବାନି' କବିତାରେ ପ୍ରକାଶ କରିଛନ୍ତି:-

ତୁମ ଚୌକିକୁ
ଆଉ ଟିକେ ପାଖକୁ ଟାଣି ଆଣନା
ପ୍ଲିଜ୍
ରାତିର ବସାରେ ଦୁଇଟି ଚଢ଼େଇ ପରି
ଆମେ ବି ପାଲଟି ଯା'ନ୍ତେ
ଦୁକୁ ଦୁକୁ ଦୁଇଟି ଛାଇ ।୮୯।

ଏହି ବ୍ୟାକୁଳତା ଭିତରେ ହିଁ ଫୁଟି ଉଠେ ଦାମ୍ପତ୍ୟ ଜୀବନର ଗୋପନୀୟ ସତ୍ୟ ଓ ଲାବଣ୍ୟ । ପତ୍ନୀଙ୍କ ସାନ୍ନିଧ୍ୟ ମାତ୍ରେ ଜୀବନ ଅର୍ଥାନ୍ୱିତ ହୁଏ । ଅନାବିଳ ଆତ୍ମାର କମନୀୟ ଭାବାବେଗଟି ଦାମ୍ପତ୍ୟ ପ୍ରେମର କଲ୍ୟାଣ ମଧୁର ସ୍ୱରୂପକୁ ଉନ୍ମୋଚିତ କରିଦିଏ । କବି ସୌରୀନ୍ଦ୍ର ବାରିକ୍ 'ଲୁହ ଠୁ ବି ଅନ୍ତରଂଗ' କବିତା ସଂକଳନରେ ସ୍ଥାନିତ 'ଗୋଟେ ଗୀତ ଗାଆନ୍ତନି' କବିତାରେ ପ୍ରକାଶ କରିଛନ୍ତି:-

'ଗାଅନା ଫ୍ଲିକ୍
ତୁମ ଗୀତରେ ଆଉ ଥରେ
ଉଛୁଳି ପଡୁ ମୋ ପୃଥିବୀ
ମୋ ଆକାଶ
ତା' ନୀରବତାରେ ପାଚିଲା ପତ୍ରଟି ପରି
ଥରି ଉଠେ ନୂଆ ଶିହରଣରେ ।୯୦।

ଜୀବନ ସକଳ ଆନନ୍ଦ ଭିତରେ ସୌରୀନ୍ଦ୍ର ବେଶ୍ ସମୟ ସଚେତନ । ଏ ସଚେତନତା ତାଙ୍କୁ ପ୍ରତି ମୁହୂର୍ତ୍ତରେ ଅତୀତକୁ ଝୁରି ହେବାର ଦୁଃଖ ଦେଇଛି । କେବଳ ଅଶ୍ରୁସଂପାତ ପାଇଁ ନୁହେଁ, ସ୍ମୃତିକୁ ଭଲ ପାଆନ୍ତି ବୋଲି ତାଙ୍କର ଅତୀତଚାରିତା । ସେ ଜାଣନ୍ତି ଓ ଅନୁଭବ କରନ୍ତି ସମୟର ସର୍ବଗ୍ରାସୀ ସ୍ରୋତରେ ସ୍ମୃତି ହିଁ ସଂପ୍ରତିକୁ ବଞ୍ଚିବାରେ ଯଥାର୍ଥ ପ୍ରେରଣା । ସମୟ ସମ୍ମୁଖରେ ଜୀବନ କେତେକାଂଶରେ ଅସହାୟ ମାତ୍ର କିନ୍ତୁ ଅର୍ଥହୀନ ନୁହେଁ । 'ଆକାଶ ପରି ନିବିଡ଼' କବିତା ସଂକଳନରେ ସ୍ଥାନିତ 'ବିବାହ ବାର୍ଷିକୀ' କବିତାରେକବି ପ୍ରକାଶ କରିଛନ୍ତି – ବିବାହର ବିସ୍ମୟ ନଆସିପାରେ, ପରିପକ୍ୱ ଉଷ୍ଣତାର ଉପଲବ୍ଧି ଅବଶ୍ୟ ଆସିବ, ଅଶ୍ରୁଭରା ଆନନ୍ଦଟିଏ ଅବଶ୍ୟ ଛୁଇଁବ । କବିଙ୍କ ଭାଷାରେ:-

ଆମ ଦୁହିଁଙ୍କ ପାଇଁ ଏ ଦିନଟି କିନ୍ତୁ
ସବୁଦିନର ସେଇ ଫୁଲ ଫୁଟା ବେଳ, ଯହିଁରେ ଛପିଥାଏ
ଶିଶିର ଖରା ଆଉ ଅଳି ପାଇଁ ଏକ ସଂକ୍ଷୁଭୀତ ସ୍ୱପ୍ନ
ଆଉ ସନ୍ଧ୍ୟାର ରଙ୍ଗୀନ ନୀରବତା ପାଇଁ ଏକ ନିର୍ଲିପ୍ତ ବ୍ୟାକୁଳତା ।୯୧।

The healthy individual lives at once both in hope and in recollection and only thereby does his life acquire true and substantial continuity.।୯୨।

ଅତୀତ ପାଇଁ ଯେତେ ସବୁ ଦୀର୍ଘଶ୍ୱାସ ସତ୍ତ୍ୱେ ସୌରୀନ୍ଦ୍ର ଏହି ସତ୍ୟରେ ପ୍ରତ୍ୟୟ ରଖନ୍ତି; ତାଙ୍କ ପାଇଁ ସ୍ମୃତି ଆଉ ସ୍ୱପ୍ନ ଏକ ଧାରାରେ ଆସେ । ସ୍ମୃତିର ସାନ୍ନିଧ୍ୟରେ ବର୍ତ୍ତମାନକୁ ସ୍ୱପ୍ନମୟ କରି ପାରିବାର ସାମର୍ଥ ତାଙ୍କର ଅଛି । ଅତୀତକୁ ଝୁରି ହୋଇ ଅଶ୍ରୁ ବିସର୍ଜନ କରିଛନ୍ତି । କବି ସୌରୀନ୍ଦ୍ର ବାରିକ 'ଲୁହଠୁ ବି ଅନ୍ତରଙ୍ଗ' କବିତା ସଂକଳନରେ ପ୍ରକାଶ କରିଛନ୍ତି:-

'ଚୁମ୍ବନେ ମାୟାରେ
ସବୁ ସତ୍ୟ ସବୁକାଳ ହଜିଯିବ
କାଳର କପଟ ଭିତରୁ
ହସି ଉଠିବ କଅଁଳ ପତ୍ର ପରି
ସେଦିନର ମୁହଁ ।୯୩।

ପ୍ରଖର ସମୟ ସଚେତନତା ସୌରୀନ୍ଦ୍ରଙ୍କୁ ଜୀବନ ବିମୁଖ କରିନାହିଁ, ବରଂ ଜୀବନକୁ ନିବିଡ଼ ଭାବେ ଭଲପାଇବାର ପ୍ରେରଣା ଦେଇଛି । ପତ୍ନୀପ୍ରେମର ଅନାବିଳ ଆବେଗ ଜୀବନକୁ ସଜୀବ ଓ ସ୍ୱପ୍ନିଳ କରି ରଖିଛି । ଆଧୁନିକ ପ୍ରେମ ଚେତନାରେ ଦୈହିକ ଆବେଗର ପ୍ରାଧାନ୍ୟ ସୂତ୍ରେ ବିବାହ ଜୀବନର ବ୍ୟର୍ଥତା ରୂପ ପାଇଥିବା ବେଳେ ସୌରୀନ୍ଦ୍ର ଦାମ୍ପତ୍ୟ ପ୍ରେମର ପ୍ରବର୍ତ୍ତନ କରି ଏହାକୁ ଯେ ପବିତ୍ର ଓ ଶୁଭବୋଧରେ ଦୀକ୍ଷିତ କରିଛନ୍ତି, ଏହା ଶ୍ରଦ୍ଧାର ସହ ସ୍ୱୀକାର କରିବାକୁ ହୁଏ ।୯୪।

ପ୍ରେମ ଏକ ସମ୍ମୋହନ ନୁହେଁ ମାତ୍ର ଏକ ଆହ୍ୱାନ, ଯାହା ଆମକୁ ଆରୋହଣର ଅନୁଭୂତି ଦିଏ, ଆପଣା ଭିତରର ଦିବ୍ୟତାକୁ ଉନ୍ମୋଚିତ କରିବାର ଅବସର ଦିଏ । ଦାର୍ଶନିକ ଇମର୍ସନ ଉତ୍ତୀର୍ଣ୍ଣ ପ୍ରେମରେ ଏହି ଦିବ୍ୟ ଆସ୍ପୃହାଟିକୁ ଲକ୍ଷ୍ୟ କରନ୍ତି । ସେ ପ୍ରେମକୁ ଜୈବିକ ଆବେଗ ଭିତରେ ସୀମାବଦ୍ଧ କରି ରଖନ୍ତି ନାହିଁ, ବରଂ ଏହି ଆନନ୍ଦ ଉପଲବ୍ଧିଟିକୁ ଦିବ୍ୟଚେତନାର ସ୍ଫୁରଣ ଭାବେ ବିଚାର କରନ୍ତି । ଜାଗତିକ ସୌନ୍ଦର୍ଯ୍ୟ ଓ ସମ୍ମୋହନକୁ ସେ ଶ୍ରଦ୍ଧା କରନ୍ତି, କିନ୍ତୁ ପରମ ଦିବ୍ୟତାର ଉପଲବ୍ଧିରେ ପ୍ରେମ ଯେ ପରିପୂର୍ଣ୍ଣ ହୁଏ ଓ ଶାଶ୍ୱତ ସୌନ୍ଦର୍ଯ୍ୟରେ ସୁଶୋଭିତ ହୋଇଉଠେ, ଏଥିରେ ସେ ବିଶ୍ୱାସ କରୁଥିଲେ ମଧ୍ୟ ଏହାର ଚିରନ୍ତନ ସୌନ୍ଦର୍ଯ୍ୟ ଓ ସଂଭାବନାଟି ସଂପର୍କରେ ଅନୁରାଗୀ ହେବା ଆବଶ୍ୟକ । ଆଧୁନିକ କାଳର ଦାର୍ଶନିକ ଜର୍ଜ ସାନ୍ତାୟନ ପ୍ରେମକୁ ମୂଳତଃ ଜୀବନ ସହଜାତ ପ୍ରବୃତ୍ତି ଭାବରେ ବର୍ଣ୍ଣନା କରିଛନ୍ତି, ଏହାର ଜୈବିକ ଭିତ୍ତିକୁ ଗ୍ରହଣ କରିଛନ୍ତି କିନ୍ତୁ ଆଧ୍ୟାତ୍ମିକ ପରିଶୋଧକୁ ଅସ୍ୱୀକାର କରିନାହାଁନ୍ତି ।୯୫।

ପ୍ରେମର ସହଜାତ ଜୈବିକ ରହସ୍ୟଟି ଯେ ବିଶୋଧିତ ଭାବେ ପରମ କଲ୍ୟାଣ ପ୍ରତି ଉନ୍ମୁଖ ରହିପାରେ, ସେ ଏହି କଥାଟିକୁ ସୂଚାଇ ଦେଇଛନ୍ତି George Santayana ଯଥାର୍ଥରେ ପ୍ରକାଶ କରିଛନ୍ତି:- Love is a true natural religion; it has a visible cult, it is kindled by natural beauties and bows to the best symbol it may find for its hope; it sanctifies a natural mystery and finally, when understood, it recognises that what it worshipped under a figure was truly the principle of all good.।୯୬।

ପ୍ରେମର ଦେହୋତ୍ତର ପ୍ଲାଟୋନିକ୍ ବିଚାରଟି ସୋପେନ ହାଓରଙ୍କ ଦୈହିକ ବ୍ୟବସାୟିକତା ଦ୍ୱାରା ପ୍ରତ୍ୟାଖ୍ୟାତ ହେଲା ବେଳେ ସାନ୍ତାୟନ ସେଥିରେ ସାନ୍ତ୍ୱନା ଆଣିଛନ୍ତି । ସ୍ୱପ୍ନର ଅବକାଶଟିକୁ ଉନ୍ମୁକ୍ତ ରଖିଛନ୍ତି । ବସ୍ତୁତଃ ପ୍ରେମ ଏକ ଉପଲବ୍ଧି ନୁହେଁ ଏକ ବିଚାର, ଜୀବନ ଓ ଜଗତ ପ୍ରତି ପ୍ରତ୍ୟୟ ପୂର୍ଣ୍ଣ ଏକ ପ୍ରତିଶ୍ରୁତି । ପ୍ରେମ ବିଚ୍ଛିନ୍ନତାବୋଧରୁ ମଣିଷକୁ ମୁକ୍ତ କରି ସଂପର୍କର ନିବିଡ଼ତା ଭିତରେ ବାନ୍ଧିଦେଇପାରେ । ଜୀବନ ଓ ଜଗତ ପ୍ରତି ବିଶ୍ୱସ୍ତ ଭାବ ଉପୁଜାଇବାରେ ପ୍ରେମ ଏକ ଆବାହନୀ । ପ୍ରେମ ହିଁ ଶାଶ୍ୱତ, ପ୍ରେମ ହିଁ ଅନନ୍ତ ।

## (ଛ) ବିଚ୍ଛିନ୍ନତା ବୋଧ :

ଦର୍ଶନ, ମନସ୍ତତ୍ତ୍ୱ ଓ ଅର୍ଥନୀତି ଦୃଷ୍ଟିରୁ ଆଧୁନିକ ମଣିଷ ନିଃସଂଗ, ନିର୍ଜନ ଓ ବିଚ୍ଛିନ୍ନ ନିଃସହାୟ ଏକାକିତ୍ୱ ଘେନି ନିଜ ଅସ୍ତିତ୍ୱର ସମ୍ମୁଖୀନ । ଏରିକଫ୍ରମ୍ ତା'ର ନାମ ରଖିଛନ୍ତି the alienated man । ବ୍ୟକ୍ତିସତ୍ତା ତାହାର ବିଭକ୍ତ ଓ ବିବର୍ତ୍ତମାନ । ନିଜସତ୍ତା ପାଖରେ ସେ ତେଣୁ ଅପରିଚିତ । ନିଜକୁ ନିଜେ ସେ ଭଲ କରି ଚିହ୍ନେ ନାହିଁ । ନିଜ ଚିନ୍ତା ଓ ମନନ ତା'ର ଆୟତ୍ତାଧୀନ ନୁହେଁ । ଅଧିକନ୍ତୁ ସେ ନିଜର ପାରିପାର୍ଶ୍ୱିକ ଜଗତ ଠାରୁ ମଧ୍ୟ ବିଚ୍ଛିନ୍ନ । ପରିବାର ଓ ସମାଜର ଯେଉଁମାନଙ୍କ ସହ ସେ ବାସ କରେ, ଏକତ୍ର ଭାବରେ ଜୀବନ ଯାପନ କରେ, ସେମାନଙ୍କ ସହିତ ସେ ହୃଦ୍ୟତା ଓ ଆତ୍ମୀୟତା ରକ୍ଷାକରି ପାରେ ନାହିଁ । ଯେଉଁ ପ୍ରାକୃତିକ ପରିବେଶରେ ସେ ମୁଗ୍ଧ ହୁଏ ତାହା ସହିତ ସେ କୌଣସି ପ୍ରକାର ଆତ୍ମିକ ସଂପର୍କ ସ୍ଥାପନ କରିପାରେ ନାହିଁ । ସାମାଜିକ ପ୍ରାଣୀ ସମାଜରୁ ଏକାନ୍ତ ଭାବରେ ବିଚ୍ଛିନ୍ନ - ଏଣୁ ଆଜିର ଜୀବନ ଏକ ଅଦ୍ଭୁତ ବିରୋଧାଭାସର ଜୀବନ । ଦାର୍ଶନିକ ଆରିଷ୍ଟଟଲଙ୍କ ମଣିଷ ଥିଲା social animal ଆଧୁନିକ ଦର୍ଶନ ଓ ସାହିତ୍ୟର ମଣିଷ ପ୍ରକୃତି ବଶତଃ ଅସାମାଜିକ ଓ ନିଃସଂଗ । ସେ କାହା ସହିତ କୌଣସି ସଂପର୍କ ସ୍ଥାପନ କରିପାରେ ନାହିଁ ।୯୭।

ପାଶ୍ଚାତ୍ୟ ଦାର୍ଶନିକ ବିଚ୍ଛିନ୍ନତା ସଂପର୍କରେ ଅବଗତ କରିବାକୁ ଯାଇ "Thomas wolf" ପ୍ରକାଶ କରିଛନ୍ତି :- 'My view of the world is based on the firm convition that solitaryness is by no mens a rare condition, something peculiar to my self or to a few specially solitary human beings, but the inescapable, central fact of human existence.।୯୮। ମଣିଷ ଏହି ନିଃସଙ୍ଗ ବିଚ୍ଛିନ୍ନ ଅସ୍ତିତ୍ୱକୁ ହେଡେଗାର thrownness. into being ବୋଲି କହନ୍ତି । ଅର୍ଥନୀତି କହେ ପ୍ରଚଳିତ ଉତ୍ପାଦନ ବ୍ୟବସ୍ଥା ମଣିଷର ବିଚ୍ଛିନ୍ନତାବୋଧ ବଢ଼ାଇଛି । ଶ୍ରମିକର ନିଜ ଶ୍ରମୋତ୍ପନ୍ନ ସମୃଦ୍ଧି ଉପରେ କୌଣସି ପ୍ରକାର ଅଧିକାର ରହେ ନାହିଁ । ସେ ଫସଲ ଫଳାଏ ଅଥଚ ସେ ଖାଇବାକୁ ପାଏ ନାହିଁ । ସେ କୋଠାଗଢ଼େ ଅଥଚ ରହେ ଖୋଲା ଆକାଶ ତଳେ । ଏହି ଶ୍ରମିକ ପରି ସମାଜର ସବୁ ସ୍ତରର ମଣିଷ ଯେତେବେଳେ ନିଜ ଶ୍ରମ ଲବ୍ଧ ଫସଲ ଉପରେ କର୍ତ୍ତୃତ୍ୱ ହରାନ୍ତି । ସେତେବେଳେ ସେମାନେ ସମାଜରାଷ୍ଟ୍ର ଓ ପରିବେଶଠାରୁ ନିଜକୁ ବିଚ୍ଛିନ୍ନ ଓ ସଙ୍କୁଚିତ କରି ରଖନ୍ତି । ସାମାଜିକ ସତ୍ତାରୂପେ ନିଜକୁ ବିକଶିତ କରିବାକୁ ଚାହାଁନ୍ତି ନାହିଁ ! ଅଧିକନ୍ତୁ ଯେଉଁଠି ଉତ୍ପାଦନ ଓ ଉତ୍ପାଦକର ବ୍ୟକ୍ତିବୋଧ ଅପେକ୍ଷା ଅଧିକତର ସମ୍ମାନ ପାଏ ସେଠାରେ ମଣିଷର ଆତ୍ମବିକାଶ ସମ୍ଭବ ନୁହେଁ । ହୃତ ସର୍ବସ୍ୱ ଶ୍ରମିକ ପରି ଅନ୍ୟର ଶ୍ରମଫଳ ଭୋକ୍ତା ମଧ୍ୟ ସମାଜ ସହିତ ସଂପର୍କ ରକ୍ଷାକରି ପାରେ ନାହିଁ । ସାପର ବେଙ୍ଗ ସହିତ ବିକୃତ ସଂପର୍କ ଠିକ୍ ସେହି ଥିଲାବାଲାଙ୍କର ନଥିଲାବାଲାଙ୍କ ସହ ସଂପର୍କ । ବିଚ୍ଛିନ୍ନତା ମଣିଷ ଅସ୍ତିତ୍ୱର ଅବିଚ୍ଛେଦ୍ୟ ସତ୍ୟ । ବିକୃତ ସମାଜ ସଂପର୍କ ଓ ଉତ୍ପାଦନ ବ୍ୟବସ୍ଥା

ତାହାକୁ ଉତ୍ତେଜିତ କରି ଚାଲିଛନ୍ତି । ଆଦିମ ମଣିଷ ପ୍ରକୃତି ପାଖରେ ଅସହାୟ ଥିଲା ମଣିଷ ନିଜର ହାତଗଢ଼ା ସାମାଜିକ ଓ ଆର୍ଥର ନୈତିକ ଶକ୍ତି ସମୂହର ସମ୍ମୁଖୀନ ହୋଇ ଅସହାୟବୋଧ କରୁଛି । ନିଜକୁ ସବୁଠି ସେ ବିଚ୍ଛିନ୍ନ ଓ ଅନନ୍ୱିତ ଦେଖୁଛି । ଆତ୍ମଦ୍ୱନ୍ଦ୍ୱ, ଆତ୍ମଦନ୍ଦ୍ର ଯନ୍ତ୍ରଣା ଅପେକ୍ଷା ତା'ର ବିଚ୍ଛିନ୍ନତାବୋଧର ଏକ ଟ୍ରାଜିକ୍ ବେଦନା ଅଛି, ଏ ବେଦନା କିଛି କମ୍ ତୀବ୍ରତର ନୁହେଁ । ଆଧୁନିକ କବିତାର କାବ୍ୟନାୟକ ହେଉଛି ସେହି ବିପନ୍ନ ବିଚ୍ଛିନ୍ନ ଆଧୁନିକ ମଣିଷ । ମାତୃଗର୍ଭରୁ ଭୂମିଷ୍ଠ ହେବାକୁ ସେଇ ଯେ ସେଦିନ ସେ ବିଚ୍ଛିନ୍ନ ହୋଇ ପଡିଥିଲା । ସେମିତି ବିଚ୍ଛିନ୍ନ ହୋଇ ଆମରଣ ରହିଯିବ - ସମାଜ, ସଂସାର ଓ୍ ପ୍ରକୃତି ତା'ର ଆତ୍ମୀୟ ହୋଉ ଉଠିବେ ନାହିଁ । ନିତ୍ୟ ନିୟତ ଏକାକୀ ସେ ବଡ଼ ବିପନ୍ନ ଓ ପୃଥକ ହୋଇ ନିଜ ନିର୍ଜନ ନିଃସଂଗ ଅସ୍ତିତ୍ୱର ସମ୍ମୁଖୀନ ହେଉଛି ।୯୯।

ଆଧୁନିକ କବିତାରେ ବିଚ୍ଛିନ୍ନତାର ସ୍ୱର ପ୍ରାୟତଃ ପାଠକେ ଉପଲବ୍ଧ କରନ୍ତି । ସ୍ରଷ୍ଟା ପୁରୁଷ ଏପରି ଏକ ଅବବୋଧର ଅନ୍ଧମୁହାଁଣୀରେ ଗତି କରିଥା'ନ୍ତି ଯେ ପାଠକ ତାଙ୍କର ବ୍ୟକ୍ତିଗତ ଅନୁଭୂତିକୁ ବୁଝି ନ ପାରିବାର କାରଣରୁ ହିଁ କାବ୍ୟାନୁଭୂତିର ଉତ୍ତାଳତା ସ୍ପର୍ଶ କରିପାରନ୍ତି ନାହିଁ । ପାଠକର ଚିତ୍ତକୁ ସ୍ରଷ୍ଟାର ଅନୁଭବ ଏକ ରହସ୍ୟାଚ୍ଛାଦିତ କାବ୍ୟ ବେଳାଭୂମିକୁ ନେଇଯାଏ । ସ୍ୱଚ୍ଛଳ ଧାରଣାର ଅଭାବନେଇ ପାଠକ କାବ୍ୟ ସମ୍ବାଦଠାରୁ ଦୂରେଇ ଯିବାକୁ ବାଧ୍ୟ ହୁଏ । କବିତାରେ ବିଚ୍ଛିନ୍ନତା ବୋଲି ଏହି ଶିରୋନାମାରେ ଯାହା ଆଲୋଚ୍ୟ ବିଷୟ ତାହାକୁ ଆମ ସାହିତ୍ୟ ସାଧକ ମାନେ ନିଃସଙ୍ଗତା ନାମରେ ଉପସ୍ଥାପନ କରିଛନ୍ତି । ଏହାର ଅତି ପରିଚିତ ଓ ବିଶ୍ୱବ୍ୟାପି ଚର୍ଚ୍ଚିତ ଇଂରାଜୀ ଶବ୍ଦଟି ହେଉଛି 'ଏଲିଏସନ୍' । ଏଲିଏସନର ତତ୍ତ୍ୱବିତ୍‌ମାନେ ନିଃସଙ୍ଗତାକୁ ଏଲିଏସନର ଅନ୍ୟତମ ଦିଗ ବୋଲି ଗ୍ରହଣ କରିଛନ୍ତି । ଏହି ହେତୁ ଏହାର ଓଡ଼ିଆ ରୂପାନ୍ତର ନିଃସଙ୍ଗତା ହେବା ପରିବର୍ତ୍ତେ ବିଚ୍ଛିନ୍ନତା ହେବା ଅଧିକ ସମୀଚୀନ । ବିଚ୍ଛିନ୍ନତାର ଅର୍ଥ କୋଳାହଳରୁ ଦୂରେଇ ଯିବା ଓ କାହାରି ସହିତ ମନ ନ ମିଶିବା, ଏକା ଏକାଜୀବନ ବଞ୍ଚିବା । ସମସ୍ତେ ଥାଇ ମଧ୍ୟ କେହି ନ ଥିବା ପରି ମନେ ହେବା ।୧୦୦।

ସମାଜ ବିଜ୍ଞାନୀ ସିମାନ୍ (Seeman) ବିଚ୍ଛିନ୍ନତାର ପାଞ୍ଚଟି ଦିଗ ବିଷୟରେ ଆଲୋକପାତ କରିଛନ୍ତି । ସେ ଗୁଡ଼ିକ ହେଲା ବ୍ୟକ୍ତିର ଅକ୍ଷମତା, ନିରର୍ଥକତା, ମୂଲ୍ୟହିନତା, ନିଃସଙ୍ଗତା ଓ ଆତ୍ମବିଚ୍ଛିନ୍ନତା । ପ୍ରତ୍ୟେକ ଦିଗର ବ୍ୟାଖ୍ୟା ଓ ବିଶ୍ଳେଷଣ ମଧ୍ୟ କରାଯାଇଛି । ବ୍ୟକ୍ତିଗତ ଜୀବନରେ କେହି କୌଣସି ପ୍ରକାର ଅଭାବ ପୂରଣରେ ଅସମର୍ଥ ହେଲେ କିମ୍ବା ସୃଜନ ସାମର୍ଥ୍ୟ ହରାଇ ବସିଲେ ନିଜକୁ ଅକାଙ୍‌କ୍ତେୟ ମନେକରେ । ଅପାଙ୍‌କ୍ତେୟତା ଜନିତ ଗ୍ଲାନିବୋଧ ନୈରାଶ୍ୟ ଓ ଜୀବନ ପ୍ରତି ବିତସ୍ପୃହା ଆଣେ । ଜୀବନ ସଂସାର ସମର୍ଥ ପୁରୁଷ ମାନଙ୍କର ଖେଳ ପଡ଼ିଆ, ଅକ୍ଷମ ଲୋକଟି କେବଳ ମୂକଦ୍ରଷ୍ଟା, ଏହା ସତ୍ୟ ହୋଇପାରେ କିନ୍ତୁ ବ୍ୟକ୍ତିର କର୍ମ ଓ ସଂଗ୍ରାମକୁ ତାହା ପ୍ରଭାବିତ କରି ନିକୃଷ୍ଟ କରାଇଦେବା

ମନେହୁଏ । ଏହା ଅତି ବିପଦ୍‌ଜନକ କଥା । ନିରର୍ଥକତାର ଲକ୍ଷଣ ଦାର୍ଶନିକ ପ୍ରଶ୍ନଠାରୁ ଆରମ୍ଭ କରି ସମାଜ, ରାଜନୀତି, ଅର୍ଥନୀତି ବ୍ୟବସ୍ଥା ଯାଏ ଲମ୍ବା । ଏଥିରେ ଅଗଣିତ ପ୍ରଶ୍ନ ମନକୁ ଛୁଏଁ । ମୁଁ କିଏ, ଜୀବନ କ'ଣ ? ବଞ୍ଚିବାର ଅର୍ଥ କ'ଣ ? ରାଜାନତି ମଣିଷର ମୌଳିକ ଆବଶ୍ୟକତା ପୂରଣ କରି ପାରିବ କି ? ଏପରି ଅସୁମାରି ପ୍ରଶ୍ନର ଉତ୍ତର ଖୋଜି ନ ପାଇବାର କ୍ଷୋଭରୁ ନିରର୍ଥକତାର ଜନ୍ମ । ମୂଲ୍ୟହୀନତା ହେଉଛି ଆଦର୍ଶ, ମୂଲ୍ୟବୋଧ, ନୀତିନିୟମ ଅଭାବର ଅନୁଭବ; ସବୁ ଅସାର, ଅସ୍ଥିର ଅଳିକ । ସବୁକୁ ଅର୍ଥହୀନ ଦୃଷ୍ଟିରେ ଦେଖିବାର ଅଭିପ୍ରାୟ । ନିଃସଂଗତା ଏକ ଦୁରାରୋଗ୍ୟ ବ୍ୟାଧି ପରି ଭୟଙ୍କର । ସମସ୍ତ କୋଳାହଳ ଓ ଲୋକାରଣ୍ୟରେ ଥାଇ ମଧ୍ୟ ଏକୁଟିଆ ଲାଗେ । ଏକ ଦୁର୍ଲଘଂ୍ୟ ବ୍ୟାପାର । ଶେଷରେ ଆତ୍ମ ବିଚ୍ଛିନ୍ନତା – ମଣିଷଟି ଯେମିତିକି ଗୋଟାଏ ଯନ୍ତ୍ର । ଯନ୍ତ୍ରବତ୍ ଆଚରଣ କ୍ରିୟା ପ୍ରତିକ୍ରିୟାର ଦଉଡ଼ିରେ ବନ୍ଧା, ଆତ୍ମା ବା ହୃଦୟର ଆହ୍ୱାନ ସେଥିରେ ଅନୁପସ୍ଥିତ ।୧୦୧।

ନିଃସଂଗତା ଓ ବିଚ୍ଛିନ୍ନତାବୋଧ କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଅନ୍ୟତମ ଦିଗ । ନିଃସଂଗତା ଶୂନ୍ୟତା ନୁହେଁ ପୂର୍ଣ୍ଣତା ଭିତରେ ଅପୂର୍ଣ୍ଣତା । ଶୂନ୍ୟତା କହିଲେ ଆମେ ସାଧାରଣତଃ ଖାଁ ଖାଁ ଭାବ । କିଛି ନଥିବାର ଭାବ । ମାତ୍ର ନିଃସଂଗତା କହିଲେ ଆମେ ବୁଝୁ ପ୍ରାୟତଃ ସବୁ ଥିବା ଭିତରେ ମଣିଷ ନିଃସଂଗ । ଏହି ଚେତନାଟି ଆଧୁନିକ ଓଡ଼ିଆ କବିତାର ଆତ୍ମିକ ରୂପେ ପରିଚିତ । ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା, ନାତି, ଅଣନାତି, ଧନ ସମ୍ପତ୍ତି ସବୁ ଥାଇବି ମଣିଷ ନିଜକୁ ଖୁବ ଏକାନ୍ତ ଓ ଅସହାୟ ଭାବେ । ଏହି ଭାବଟି ମଣିଷ ଭିତରେ ନିଃସଂଗତାର ଚେତନାଟିଏ ଆଣିଦିଏ । ସମୟର ଦଂଶନରେ ଏହି ଚେତନାଟି ଆଧୁନିକ ଓଡ଼ିଆ କବିତାର କାବ୍ୟଚେତନା ଭାବେ ପ୍ରିଚିତ । ସୌରୀନ୍ଦ୍ରଙ୍କ ପୂର୍ବ ଓ ପରବର୍ତ୍ତୀ କବି ମାନଙ୍କର କାବ୍ୟ ଚେତନାରେ, ଚେତନାଟି ବିଶେଷ ଭାବରେ ପ୍ରତିଫଳିତ । ଆଧୁନିକ ମଣିଷ କେତେବେଳେ ଶୋକାବହ ଆତଙ୍କ ପ୍ରଦ ତ ଆଉ କେତେବେଳେ ଉତ୍‌ପୀଡକ । ବିଶ୍ୱାସ ଓ ଅବିଶ୍ୱାସର ପଶାଖେଳ ଭିତରେ ଆଧୁନିକ ମଣିଷ ଜୀବନ ବଞ୍ଚୁଛି । ଆଧୁନିକ ମଣିଷର ନିଃସଂଗତା ବୋଧ ଓ ତହିଁର ଉଦ୍ଭୂତ ବିଚ୍ଛିନ୍ନତାବୋଧ ସମୟର ଦଂଶନରେ ଜର୍ଜରିତ । ତା' କବଳରୁ ଆଜିର ମଣିଷର ନିସ୍ତାର ନାହିଁ ।

ବୁଢ଼ାକାଳ ମଣିଷ ପାଇଁ ଦୟନୀୟ ଓ ଅସହାୟ । ବୁଢ଼ାକାଳରେ ବୁଢ଼ାର ଆଖି ଦୁଇଟି ରାତି ଶେଷରେ ନୁଖୁରା, ମଳିଚିଆ ଲଣ୍ଠନଟେ ପରି ମିଞ୍ଜି ମିଞ୍ଜି ହୋଇ ଘରର କେଉଁ ଏକ ଅଳନ୍ଧୁ ସନ୍ଧିରେ ଜଳୁଥାଏ, ଯେଉଁଠିକି କାହାର ନଜର ନଥାଏ । ପରିବାରର ସମସ୍ତେ ଥାଇ ମଧ୍ୟ ବୁଢ଼ାଟି ନିଃସଂଗ ଭାବରେ ଜୀବନ ଅତିବାହିତ କରୁଥାଏ । ଏକ ଅଦରକାରୀ ଜୀବ ଭାବରେ ବୁଢ଼ାଟି ଅତୀତକୁ ବଉଳ ଗଛ ମୂଳେ ଉଖାରୁଥାଏ । କବି ସୌରୀନ୍ଦ୍ର ବାରିକ୍ ସୁନ୍ଦର ଭାବରେ 'ଗୁଣୁ ଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ବୁଢ଼ା କାଳ' କବିତାରେ ପ୍ରକାଶ କରିଛନ୍ତି:-

'ବାଡ଼ି ପଟ ବଉଳ ମୂଳେ
ଚୁପଚାପ ସେ ।
ଦିନର ଜହ୍ନ ପରି ନିଃସଂଗ
ନିହାତି ନିଷ୍ପ୍ରଭ ।୧୦୨।

ସାରା ଜୀବନ ଖଟି ଖଟି ନୟାନ୍ତ ହୋଇଥିବା ବୁଢ଼ା ଲୋକଟି ବୁଢ଼ା କାଳରେ ବିଚରା କିଂକର୍ତ୍ତବ୍ୟ-ବିମୁଢ଼ । ଯେଉଁ ଘରେ ଆନନ୍ଦର ଲହରୀ ଖେଳୁଥିଲା, ଶୁଭଶଙ୍ଖ ବାଜୁଥିଲା, ବାରଜାତିର ଲୋକ ପୁନିଅଁ ପରବରେ ଆସୁଥିଲେ ଯାଉଥିଲେ ଆଜି ସେ ଘର ଜନଶୂନ୍ୟ ହୋଇଛି, ଭଙ୍ଗାଘର ଅଗଣାରେ ଅନାବନା ଗଛ ସବୁ ଅତୀତର ମନ୍ତ୍ର ଉଚ୍ଚାରଣ କରୁଛନ୍ତି । ସାଙ୍ଗସାଥୀ ସବୁ ଅଦୃଶ୍ୟର ଇଲାକାରେ ହଜିଗଲେଣି କେବେଠୁ ? ପିଲାଦିନ କାଲିପରି ଲାଗୁଛି । ଅତୀତର ଛବି ଆଖି ଆଗରେ ଭାସି ଯାଉଛି । 'ବୁଢ଼ାକାଳ' କବିତାରେ କବି ନିଃସଂଗ ଜୀବନର ଚିତ୍ର ଅଙ୍କନ କରିବା ସଙ୍ଗେସଙ୍ଗେ ସାମାଜିକ ସଂପର୍କ କିପରି ବିଚ୍ଛିନ୍ନ ହୋଇଯାଇଛି ତା'ର ଏକ ମର୍ମିଳ ମାନଚିତ୍ର ଉପସ୍ଥାପନ କରିଛନ୍ତି । କବିଙ୍କ ଭାଷାରେ:-

ଏ ସ୍ମୃତି ପୂର୍ଣ୍ଣତା ଏକ
ଶୂନ୍ୟତାରେ ମନଭରି ଦିଏ
ଏ ସ୍ମୃତି ମହାଶୂନ୍ୟତା
ପୂର୍ଣ୍ଣତାରେ ମନ ଖାଁ ଖାଁ କରିଉଠେ
ଏହା ହିଁ ତ ଏକା ଏକା ହେବା
ଅତୀତର ହାଉ ହାଉ ଆଉ ବର୍ତ୍ତମାନର ଚୁପ୍‌ଚାପ୍ ଭିତରେ
ଧଇଁ ସଇଁ ହେବା । ଡ୍ରୟାରରେ ପଡିଥିବା ପୁରୁଣା ଚିଠିଟିଏ ପରି
ଅଖୋଜା ଅଲୋଡା ହୋଇ ପଡି ରହିଥିବା ।୧୦୩।

ସବୁ ସବୁଜସଂପର୍କ ବିଚ୍ଛିନ୍ନ ତା'ର ମୂଳମନ୍ତ୍ର । କେତେ ସାଂଗ ଜୀବନ ପରିଧିକୁ ଆସନ୍ତି ପୁଣି କେତେ ସ୍ୱାର୍ଥ ହାସଲ କରି ବିଦାୟ ନିଅନ୍ତି । ଋତୁବଦଳିଲା ପରି ସଂପର୍କ ବଦଳେ ମଣିଷର ଆଚରଣ ବଦଳେ । ଜୀବନ ଜୁଆଖେଳରେ କିଏ ଜିତିଯାଏ ପୁଣି କିଏ ହାରିଯାଏ । ହାରିବା ଜିତିବା ଭିତରେ ଅନେକ ପର କରି ଛାଡ଼ିଚାଲିଯାଆନ୍ତି । କବିଙ୍କ ନିରାପଦ ଆଶ୍ରୟ ଠାକୁର ମା (ଜେଜେ ମା) ଛାଡ଼ି ଚାଲିଯାଇଚି ଆରପାରିକୁ । ଶୈଶବର ସବୁ ସ୍ମୃତି କବିଙ୍କର ଗୋଟି ଗୋଟି ହୋଇ ମନେ ପଡିଚି । କବିଙ୍କ ମୁଣ୍ଡ ଉପରେଯିଏ ଆଶୀର୍ବାଦ ବର୍ଷା କରିଦିଏ, ବାପା ମାଆଙ୍କ ମାଡ଼ ଗାଳିରୁ ରକ୍ଷା କରେ, ଅଝଟରେ ବୋଧ ଦେଇ ମନ ପବନ ଘୋଡାରେ ପରୀରାଇଜକୁ ନେଇଯାଏ, ସେ ଆକାଶର ଅଗଣାରେ ତାରା ହୋଇ ଯାଇଛି କେବେଠୁ । କବି ସୌରୀନ୍ଦ୍ର ବାରିକ୍ 'ଗୁଣୁଗୁଣୁ ଚିତ୍ରପଟ' କବିତା ସଂକଳନରେ ସ୍ଥାନିତ 'ଠାକୁର ମା' କବିତାରେ ପ୍ରକାଶ କରିଛନ୍ତି:-

ଆମକୁ ଦେଖିଲେ ହଠାତ୍ ତା' ଆଖି ଜଳିଉଠେ
ତା' ପାକୁଆ ପାଟିରେ ଉଡ଼ିଗଲା ଚଢ଼େଇର ରାବ ପରି
ଧାରେ ହସ ଚହଟି ଯାଏ । ସେତେବେଳେ ସେ ଯେମିତି
ଥୁରୁଥୁରୁ ନିକଟତା, ଶିରାଳ ଉଷ୍ମତା । କିନ୍ତୁ ତା'ର କ୍ଷଣରେ
ଭସା ବଉଦ ପରି ଆଖିତାର ଭାସିଯାଏ ଆକାଶ ସେପାରି
କେଉଁ ଆକାଶ ଆଡକୁ । କାହିଁ ଲକ୍ଷେ ଯୋଜନକୁ
ସେ ପାଲଟି ଯାଏ ଆସକ୍ତ ବୈରାଗୀଟିଏ ।୧୦୪।

କେତେ ଜୀବନ ବିଦ୍ୟାଳୟକୁ ଆସିବେ କେତେ ଯିବେ । ଆସନ ନଥିବ ଶାସନ ନଥିବ । ଖାଲି ଚଉକି ପଡିରହିଥିବ । ଯିବା ଆସିବାର ହିସାବ ରଖି ନଥିବ ଚଉକି । ଚଉକି ଉପରେ କେତେ ଅଚିହ୍ନା ଲୋକ ଥଟ୍ଟା ମଜାଗପ କରିଥିବେ, ଚା ପିଇ ଚାଲିଥିବେ । କାହାର ଆସିବାରେ ତା'ର ଆନନ୍ଦ ନାହିଁ କି ଚାଲିବାରେ ତା'ର ଦୁଃଖ ନାହିଁ, ଅବସାଦ ନାହିଁ । ଶୂନ୍ୟତାକୁ ପୂର୍ଣ୍ଣତା ଭାବି ଜୀବନ ବଂଚେ ଚଉକି । ଅନନ୍ତ ଅପୂର୍ଣ୍ଣତା ଭିତରେ କ୍ଷଣିକ ପୂର୍ଣ୍ଣତା ପାଇଁ ଆତ୍ମବିଭୋର ହୁଏ ନାହିଁ । କବି ସୌରୀନ୍ଦ୍ର ବାରିକ 'ଗୁଣୁଗୁଣୁ ଚିତ୍ରପଟ୍ଟ' କବିତା ସଙ୍କଳନରେ ସ୍ଥାନିତ 'ଖାଲି ଚଉକି' କବିତାରେ ପ୍ରକାଶ କରିଛନ୍ତି;-

ଖାଲି ଚଉକିଟେ
ସେଇମିତି ପଡି ରହିଥିବ
ନା' କାହାରି ଆସିବାକୁ
ନା' କାହାରି ଯିବାକୁ ପୁଞ୍ଜିକରି
ଖାଲି ପଡିଥିବ ।୧୦୫।

ସମୟ ପ୍ରତି ଥିବା ମଣିଷର ପାରମ୍ପରିକ ପ୍ରତ୍ୟୟଟି ତୁଟି ଯାଇଛି । ସମୟକୁ ଖଣ୍ଡିଆଭୂତ ଭାବରେ କବି କଳ୍ପନା କରିଛନ୍ତି । ଯେଉଁ ସମୟ ନାଗଫେଣୀ କଣ୍ଟାରେ ଫୁଲଫୁଟାଇ ପାରେ ସେହି ସମୟ ଜୀବନକୁ ସରସ ସୁନ୍ଦର କରେ । 'ଆକାଶ ପରି ନିବିଡ଼' କବିତା ସଙ୍କଳନରେ ସ୍ଥାନିତ 'ସେଦିନ' ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି:-

'ସମୟର ଏ ଖଣ୍ଡିଆ ଭୂତରେ
ନାଗଫେଣୀ ବର୍ତ୍ତମାନ କୁସୁମିତ ହୁଏ ।୧୦୬।

ସୌରୀନ୍ଦ୍ର ଅତୀତ କି ଭବିଷ୍ୟତ ନେଇ ଚିନ୍ତିତ ନୁହଁନ୍ତି ବରଂ ବର୍ତ୍ତମାନ ହିଁ ସବୁକିଛି । କାବ୍ୟନାୟକ ଏପରି ଜୀବନ ଉପଭୋଗ କରିବ, ଯେଉଁଠି ଜୀବନରେ ଛକାପଂଝା ନଥିବ, ପ୍ରତିଯୋଗିତା ନଥିବ । କବି ସୌରୀନ୍ଦ୍ର ଜୀବନବାଦୀ । ଜୀବନକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ଅନନ୍ତ ଅନ୍ୱେଷଣ ଭିତରେ ଜୀବନ ସଂଗୀତ ଗାନ କରିଛନ୍ତି ସୌରୀନ୍ଦ୍ର । ବିଚ୍ଛିନ୍ନତା ଭିତରେ କାବ୍ୟପୁରୁଷ ଜୀବନ ଯୁଦ୍ଧରେ ହାରିଯାଇ ନାହିଁ ବରଂ ଆଗକୁ ଯିବାକୁ ସାହସ ସଞ୍ଚୟ କରିଛି ।

## ସଙ୍କେତ ସୂଚୀ:-

୧: ସାମାନ୍ୟ କଥନ : ପୃଷ୍ଠା :୧
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୨: ରାଧାନାଥ ଗ୍ରନ୍ଥାବଳୀ : ପୃଷ୍ଠା : ୮୦
ପ୍ରଥମ ପ୍ରକାଶ : ୧୯୯୪, ରାଧାନାଥ ରାୟ

୩: ସାମାନ୍ୟ କଥନ : ପୃଷ୍ଠା : ୨
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୪: ତତ୍ରୈବ : ପୃଷ୍ଠା : ୨

୫: ତତ୍ରୈବ : ପୃଷ୍ଠା : ୧୦

୬: ତତ୍ରୈବ : ପୃଷ୍ଠା : ୧୧

୭: ତତ୍ରୈବ ଲୁହ ଠୁ ବି ଅନ୍ତରଂଗ : ପୃଷ୍ଠା : ୫
ପ୍ରଥମ ପ୍ରକାଶ : ୧୯୮୯, ସୌରୀନ୍ଦ୍ର ବାରିକ୍

୮: ସାମାନ୍ୟ କଥନ : ପୃଷ୍ଠା : ୧୧୨
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୯: ତତ୍ରୈବ : ପୃଷ୍ଠା : ୧୮

୧୦: ତତ୍ରୈବ : ପୃଷ୍ଠା : ୨୨

୧୧: ତତ୍ରୈବ : ପୃଷ୍ଠା : ୨୩

୧୨: ଆମର ବିମର୍ଶ ଭାଗ୍ୟ : ପୃଷ୍ଠା : ୧
ପ୍ରଥମ ପ୍ରକାଶ : ୧୯୯୭, ଡ. ଅଭୟ ବାରିକ୍

୧୩: Four Quartets : Page : 13
Published : 1963, T.S. Eliot

୧୪: ସାମାନ୍ୟ କଥନ : ପୃଷ୍ଠା : ୧୪
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୧୫: ତତ୍ରୈବ : ପୃଷ୍ଠା : ୧୪

୧୬: ତତ୍ରୈବ

୧୭: ତତ୍ରୈବ : ପୃଷ୍ଠା : ୨୭

୧୮: ତତ୍ରୈବ : ପୃଷ୍ଠା : ୨୭

୧୯: ସ୍ୱପ୍ନ ସଂପର୍କ ସ୍ୱୀକାରୋକ୍ତି : ପୃଷ୍ଠା : ୫୩
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୨୦: ଦୀପକ ମିଶ୍ରଙ୍କ କାବ୍ୟ ଚେତନା : ପୃଷ୍ଠା : ୧୨୦
ପ୍ରଥମ ପ୍ରକାଶ : ୧୯୯୨ : ସଂପାଦନା : ରବି ସ୍ୱାଇଁ
ଦୀପକ ମିଶ୍ରଙ୍କ କବିତାରେ ମୃତ୍ୟୁ ଚେତନା : ଯୋଗେନ୍ଦ୍ର ଜେନା

୨୧: ତତ୍ରୈବ : ପୃଷ୍ଠା : ୧୨୧

୨୨: ତତ୍ରୈବ

୨୩: ଆଧୁନିକ ଓଡ଼ିଆ କବିତାର ଦୃଷ୍ଟି ଓ ଦିଗନ୍ତ : ପୃଷ୍ଠା : ୭୪
ପ୍ରଥମ ପ୍ରକାଶ : ୧୯୯୧, ଡ. ଇନ୍ଦୁ ମିଶ୍ର

୨୪: ତତ୍ରୈବ

୨୫: ତତ୍ରୈବ : ପୃଷ୍ଠା : ୭୫

୨୬: ତତ୍ରୈବ : ପୃଷ୍ଠା : ୭୬

୨୭: ତତ୍ରୈବ

୨୮: ତତ୍ରୈବ

୨୯: ତତ୍ରୈବ

୩୦: ସାମାନ୍ୟ କଥନ : ପୃଷ୍ଠା : ୮
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୩୧: ତତ୍ରୈବ : ପୃଷ୍ଠା : ୯

୩୨: ତତ୍ରୈବ : ପୃଷ୍ଠା : ୨୯

୩୩: ତତ୍ରୈବ : ପୃଷ୍ଠା : ୩୦

୩୪: ତତ୍ରୈବ : ପୃଷ୍ଠା : ୩୧

୩୫: ତତ୍ରୈବ : ପୃଷ୍ଠା : ୩୧

୩୬: ତତ୍ରୈବ : ପୃଷ୍ଠା : ୯୮

୩୭: ଗୁଣୁ ଗୁଣୁ ଚିତ୍ରପଟ : ପୃଷ୍ଠା : ୩୦
ପ୍ରଥମ ପ୍ରକାଶ : ୧୯୮୬, ସୌରୀନ୍ଦ୍ର ବାରିକ୍

୩୮: ଆମେ ଦୁହେଁ : ପୃଷ୍ଠା : ୬୦
ପ୍ରଥମ ପ୍ରକାଶ : ୧୯୯୧, ସୌରୀନ୍ଦ୍ର ବାରିକ୍

୩୯: ଆମ ଦୁହିଁଙ୍କ କଥା : ପୃଷ୍ଠା : ୯୨
ପ୍ରଥମ ପ୍ରକାଶ : ୨୦୦୧, ସୌରୀନ୍ଦ୍ର ବାରିକ୍

୪୦: ଚହଲା ଛାଇରେ ଘଡ଼ିଏ : ପୃଷ୍ଠା : ୨୦
ପ୍ରଥମ ପ୍ରକାଶ : ୧୯୯୫, ସୌରୀନ୍ଦ୍ର ବାରିକ୍
୪୧: ତତ୍ରୈବ : ପୃଷ୍ଠା : ୨୧
୪୨: ତତ୍ରୈବ : ପୃଷ୍ଠା : ୨୯
୪୩: ଆକାଶ ପରି ନିବିଡ଼ : ପୃଷ୍ଠା : ୧୦
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ୍
୪୪: ତତ୍ରୈବ : ପୃଷ୍ଠା : ୧୧
୪୫: Poetry and Politics : Page : 63
Published : 1963, C.M. Bowra
୪୬: ସ୍ୱପ୍ନ ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୩୬
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର
୪୭: ତତ୍ରୈବ : ପୃଷ୍ଠା : ୩୭
୪୮: Collected Poems : Page : 194,
Published : 1959, T.S. Eliot
୪୯: ସ୍ୱପ୍ନ ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୩୭
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର
୫୦: ଗୁଣୁ ଗୁଣୁ ଚିତ୍ରପଟ : ପୃଷ୍ଠା : ୧
ପ୍ରଥମ ପ୍ରକାଶ : ୧୯୮୬, ସୌରୀନ୍ଦ୍ର ବାରିକ୍
୫୧: ତତ୍ରୈବ : ପୃଷ୍ଠା : ୩
୫୨: ତତ୍ରୈବ : ପୃଷ୍ଠା : ୫
୫୩: ତତ୍ରୈବ : ପୃଷ୍ଠା : ୧୦
୫୪: ତତ୍ରୈବ : ପୃଷ୍ଠା : ୧୧
୫୫: ତତ୍ରୈବ : ପୃଷ୍ଠା : ୧୩
୫୬: ତତ୍ରୈବ : ପୃଷ୍ଠା : ୧୪
୫୭: ସ୍ୱପ୍ନ ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୩୮
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର
୫୮: ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ ସୌନ୍ଦର୍ଯ୍ୟ ଚେତନା : ପୃଷ୍ଠା :୧
ପ୍ରଥମ ପ୍ରକାଶ : ୧୯୯୨, ଡ. ବୈରାଗୀ ଚରଣ ଜେନା
୫୯: ତତ୍ରୈବ : ପୃଷ୍ଠା : ୧
୬୦: ତତ୍ରୈବ : ପୃଷ୍ଠା : ୨

୬୧: ତତ୍ରୈବ : ପୃଷ୍ଠା : ୨

୬୨: The Dance of Shiv : Page : 96
Published : 1969, Ananda Coomarswamy

୬୩: ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ ସୌନ୍ଦର୍ଯ୍ୟ ଚେତନା : ପୃଷ୍ଠା : ୩
ପ୍ରଥମ ପ୍ରକାଶ : ୧୯୯୩, ଡ. ବୈରାଗୀ ଚରଣ ଜେନା ।

୬୪: ତତ୍ରୈବ : ପୃଷ୍ଠା : ୪

୬୫: ନତ୍ରୈବ : ପୃଷ୍ଠା : ୫

୬୬: Problem of Art : Page : 6
Published : 1969, Peter Green

୬୭: ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ ସୌନ୍ଦର୍ଯ୍ୟ ଚେତନା : ପୃଷ୍ଠା : ୬
ପ୍ରଥମ ପ୍ରକାଶ : ୧୯୯୩, ଡ. ବୈରାଗୀ ଚରଣ ଜେନା ।

୬୮: ତତ୍ରୈବ : ପୃଷ୍ଠା : ୭

୬୯: History of Aesthetics : Page : 53
Published : 1951, Bosanquet.

୭୦: Philosophy of Art and Beauty : Page : 96
Published : 1971, Butcher

୭୧: ହଳଦୀ ବସନ୍ତ : ପୃଷ୍ଠା : ୧୦
ପ୍ରଥମ ପ୍ରକାଶ : ୧୯୯୯, ସୌରୀନ୍ଦ୍ର ବାରିକ୍

୭୨: ତତ୍ରୈବ : ପୃଷ୍ଠା : ୨୬

୭୩: ଯେତେ ସବୁ ବୀଥିକୁ ନେଇ : ପୃଷ୍ଠା : ୬
ପ୍ରଥମ ପ୍ରକାଶ : ୨୦୦୩, ସୌରୀନ୍ଦ୍ର ବାରିକ୍

୭୪: ତତ୍ରୈବ : ପୃଷ୍ଠା : ୧୪

୭୫: ସମୀକ୍ଷା ଓ ସିଦ୍ଧାନ୍ତ : ପୃଷ୍ଠା : ୧୩୦
ପ୍ରଥମ ପ୍ରକାଶ : ୧୯୭୫, ବିନୋଦ ରାଉତରାୟ

୭୬: ନିବନ୍ଧ ବିଭୁଦତ୍ତ : ପୃଷ୍ଠା : ୧୦୯
ପ୍ରଥମ ପ୍ରକାଶ : ୨୦୦୧, ବିଭୁଦତ୍ତ ମିଶ୍ର

୭୭: ତତ୍ରୈବ : ପୃଷ୍ଠା : ୧୧୦

୭୮: ତତ୍ରୈବ : ପୃଷ୍ଠା : ୧୧୧

୭୯: ସାମାନ୍ୟ କଥନ : ପୃଷ୍ଠା : ୧୨
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୮୦: ତତ୍ରୈବ : ପୃଷ୍ଠା : ୧୨

୮୧: ତତ୍ରୈବ : ପୃଷ୍ଠା : ୧୩

୮୨: ସ୍ୱପ୍ନ ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୨୨
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୮୩: ସାମାନ୍ୟ କଥନ : ପୃଷ୍ଠା : ୧୯
ପ୍ରଥମ ପ୍ରକାଶ : ୧୯୭୫, ସୌରୀନ୍ଦ୍ର ବାରିକ୍

୮୪: ତତ୍ରୈବ : ପୃଷ୍ଠା : ୧୯

୮୫: ତତ୍ରୈବ : ପୃଷ୍ଠା : ୨୫

୮୬: ସ୍ୱପ୍ନ ସଂପର୍କ ଓ ସ୍ୱୀକାରୋକ୍ତି : ପୃଷ୍ଠା : ୨୩
ପ୍ରଥମ ପ୍ରକାଶ : ୧୯୯୩, ଡ. ପ୍ରମୋଦ ସର

୮୭: ସୀମାବଦ୍ଧ ସମୟ ଓ ସ୍ୱପ୍ନର ଅଭିସାର : ପୃଷ୍ଠା : ୮୭
ପ୍ରଥମ ପ୍ରକାଶ : ୧୯୯୯, ଡ. ପ୍ରମୋଦ ସର

୮୮: Either or : Page : 93,
Published : 1959, Kierkegaard Soren

୮୯: ଆକାଶ ପରି ନିବିଡ଼ : ପୃଷ୍ଠା : ୨୫
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ୍

୯୦: ଲୁହ ଠୁ ବି ଅନ୍ତରଂଗ : ପୃଷ୍ଠା : ୨୦
ପ୍ରଥମ ପ୍ରକାଶ : ୧୯୮୯, ସୌରୀନ୍ଦ୍ର ବାରିକ୍

୯୧: ଆକାଶ ପରି ନିବିଡ଼ : ପୃଷ୍ଠା : ୬୩
ପ୍ରଥମ ପ୍ରକାଶ : ୧୯୮୫, ସୌରୀନ୍ଦ୍ର ବାରିକ୍

୯୨: A Kierkegaard Anthology, Page : 91
Published : 1959, Kierkegaard Soren

୯୩: ଲୁହ ଠୁ ବି ଅନ୍ତରଂଗ : ପୃଷ୍ଠା : ୨୭
ପ୍ରଥମ ପ୍ରକାଶ : ୧୯୮୯, ସୌରୀନ୍ଦ୍ର ବାରିକ୍

୯୪: ସୀମାବଦ୍ଧ ସମୟ ଓ ସ୍ୱପ୍ନର ଅଭିସାର : ପୃଷ୍ଠା : ୯୧
ପ୍ରଥମ ପ୍ରକାଶ : ୧୯୯୯, ଡ. ପ୍ରମୋଦ ସର

୯୫: ତତ୍ରୈବ : ପୃଷ୍ଠା : ୯୨

୯୬: The Life of Reason : Page : 101
Published : 1979, Santayana George

୯୭: ଆଧୁନିକ କାବ୍ୟ ଜିଜ୍ଞାସା ଓ ଚିତ୍ରକଳ୍ପ : ପୃଷ୍ଠା : ୩୭୮
ପ୍ରଥମ ପ୍ରକାଶ : ୧୯୭୪, ଡ. ଦାଶରଥି ଦାଶ

୯୮: The meaning of the contemporary Realism : Page : 21
Published : 1969, Thomas Wolfe
୯୯: ଆଧୁନିକ କାବ୍ୟ ଜିଜ୍ଞାସା ଓ ଚିତ୍ରକଳ୍ପ : ପୃଷ୍ଠା : ୩୭୯
ପ୍ରଥମ ପ୍ରକାଶ : ୧୯୭୪, ଡ. ଦାଶରଥି ଦାଶ
୧୦୦: ଅସମାପ୍ତ ଆଲୋଚନା : ପୃଷ୍ଠା : ୨୧୬
ପ୍ରଥମ ପ୍ରକାଶ : ୧୯୯୭, ଡ. ନଟବର ଶତପଥୀ
୧୦୧: ତତ୍ରୈବ : ପୃଷ୍ଠା : ୨୧୭
୧୦୨: ଗୁଣୁଗୁଣୁ ଚିତ୍ରପଟ : ପୃଷ୍ଠା : ୭
ପ୍ରଥମ ପ୍ରକାଶ : ୧୯୮୬, ସୌରୀନ୍ଦ୍ର ବାରିକ୍
୧୦୩: ତତ୍ରୈବ : ପୃଷ୍ଠା : ୯
୧୦୪: ତତ୍ରୈବ : ପୃଷ୍ଠା : ୧୬
୧୦୫: ତତ୍ରୈବ : ପୃଷ୍ଠା : ୨୧

# ଉପସଂହାର

ବୃତ୍ତିରେ ଅଧ୍ୟାପକ, ପ୍ରବୃତ୍ତିରେ କବି ସୌରୀନ୍ଦ୍ର ବାରିକ୍ । କବିତା ରଚନା ତାଙ୍କ ଜୀବନ ବଞ୍ଚିବାର ଧାରା । ଯେତେବେଳେ ଯେଉଁ ପରିସ୍ଥିତିରେ କି କାଳାତିପାତ କରିଛନ୍ତି ସେହି କାଳକୁ ପାଥେୟ କରି କବିତା ରଚନା କରିଛନ୍ତି । ସମସାମୟିକ କବିମାନଙ୍କ ସାରସ୍ୱତ ସୃଷ୍ଟିଦ୍ୱାରା ପ୍ରଭାବିତ ହୋଇ କବିତାଙ୍କ କବିତାରେ ନିଜସ୍ୱ ପରମ୍ପରାଟିଏ ସୃଷ୍ଟି କରିଛନ୍ତି । ଦୁଃଖ, ଯନ୍ତ୍ରଣା, ସମୟ, ମୃତ୍ୟୁ, ନିଃସଙ୍ଗତା, ବିଚ୍ଛିନ୍ନତା, ସରଳତା ସୌରୀନ୍ଦ୍ରଙ୍କ କାବ୍ୟିକ ଆବେଗର ବଳିଷ୍ଠ ବିଭବ । ପାଶ୍ଚାତ୍ୟ କାବ୍ୟଧାରା ସହ କବି ନିବିଡ଼ ଭାବରେ ପରିଚିତ ଏବଂ ପ୍ରଭାବିତ । କବି ମନିଷୀ T.S. Eliotଙ୍କ ପ୍ରଭାବ ତାଙ୍କ କବିତା ସୃଷ୍ଟିର ଆଦ୍ୟ ଉପପାଦ୍ୟ । 'ସାମାନ୍ୟ କଥନ' କବିତା ସଂକଳନ କବିଙ୍କ ଆହରଣ ଓ ସମୀକରଣର ଉଜ୍ଜ୍ୱଳ ଉଦାହରଣ । ସ୍ପେଣ୍ଡର ଅଡେନ୍ ଇୟେଟସ୍, ପାଉଣ୍ଡ, ଲରେନ୍‌ସ କବିଙ୍କୁ ଯେପରି ପ୍ରଭାବିତ କରିଛନ୍ତି ସେହିପରି ଆମେରୀକୀୟ ମାର୍କିନ୍ କନ ଫ୍ୟାସମଲ କବି ଗୋଷ୍ଠି ରବର୍ଟ ଲୋଏଲ୍, ବ୍ୟାରିମେନ, ଜିନସ୍ ବାର୍ଗ ସଲଭିଆ ପାଥ୍ ଆଦିଙ୍କ ସୃଷ୍ଟି କବିଙ୍କ ପ୍ରତିଭାକୁ ବିକଶିତ କରିଛି । 'Life studies' ୧୯୫୯ ଗ୍ରନ୍ଥର ପ୍ରକାଶପରେ ବିଶ୍ୱ କବିତା କ୍ଷେତ୍ରରେ ଯେଉଁ Confessional ବା ସ୍ୱୀକାରୋକ୍ତି ଧାରାର ପରିଚୟ ମିଳିଲା ତାଦ୍ୱାରା ସୌରୀନ୍ଦ୍ର ବିଶେଷ ଭାବେ ପ୍ରଭାବିତ ହୋଇ ନୈର୍ବ୍ୟକ୍ତିକ ଦୃଷ୍ଟିଭଙ୍ଗୀଠୁ ବିଦାୟ ନେଇ ନିଜ କବିତାରେ ବ୍ୟକ୍ତିକ ଅନ୍ତର୍ଲୀନତାକୁ ଗୁରୁତ୍ୱ ଦେଲେ । ବୌଦ୍ଧିକ ଜଟିଳତା ନୁହେଁ, ମୁକ୍ତ ଆବେଗମୟତା ଓ ପରୋକ୍ଷ ଅଭିବ୍ୟକ୍ତି ନୁହେଁ, ପ୍ରତକ୍ଷ ଅଭିବ୍ୟକ୍ତି ତାଙ୍କ କବିତାର ଅନ୍ୟତମ ଲକ୍ଷଣ । କବି ସୌରୀନ୍ଦ୍ର ବାରିକ ଆହରଣରେ ନୂତନତା ସୃଷ୍ଟି କଲେ ।

ସାରଳା ଦାସ ସୌରୀନ୍ଦ୍ର ବାରିକ୍‌ଙ୍କର ପ୍ରିୟକବି । ଉକ୍ତ କବି ବନମାଳୀ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଏବଂ ଆଧୁନିକ ଯୁଗର କବି ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋରଙ୍କ ଦ୍ୱାରା ବିଶେଷ ଭାବରେ କବି ପ୍ରଭାବିତ । ପ୍ରତ୍ୟକ୍ଷ ଭାବେ ସାରଳା ଦାସଙ୍କ ଠାରୁ ଆରମ୍ଭ କରି ଗୋଦାବରୀଶ ମହାପାତ୍ର, ସଚ୍ଚି ରାଉତରାୟ, ବିନୋଦ ନାୟକ, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଚିନ୍ତାମଣୀ ବେହେରା, ବେଣୁଧର ରାଉତ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ରଙ୍କ ପର୍ଯ୍ୟନ୍ତ ଦ୍ୱାରା କବି ପ୍ରଭାବିତ । ଅଡେନ୍‌ଙ୍କଠାରୁ ବୌଦ୍ଧିକତା, ଏଲିୟଟଙ୍କଠାରୁ ଅନୁକରଣ କରି ଲେଖିବା, ଲରେସନ୍‌ଙ୍କ ଠାରୁ ପ୍ରକାଶ ଭଙ୍ଗୀର ସ୍ୱଚ୍ଛନ୍ଦତା, ଟେଡହ୍ୟୁଜଙ୍କଠାରୁ ପ୍ରଭାବିତ ହୋଇ ପ୍ରାଣୀ ବା ଜୀବଜଗତ ଉପରେ କବିତା ଲେଖିବା ସୌରୀନ୍ଦ୍ରଙ୍କ ବିଶେଷ ଲକ୍ଷଣ । ବଙ୍ଗଳାର ସୁଭାଷ ମୁଖୋପାଧ୍ୟାୟ ଜୀବନାନନ୍ଦ ଦାସ ଏବଂ ରବୀନ୍ଦ୍ରନାଥ ଠାକୁରଙ୍କ ଦ୍ୱାରା ସେ ବିଶେଷ ଭାବରେ ପରିଚିତ ଓ ପ୍ରଭାବିତ । ଗୋଦାବରୀଶ ମହାପାତ୍ରଙ୍କ ଦ୍ୱାରା ତାଙ୍କର ପ୍ରତ୍ୟକ୍ଷ ପ୍ରଭାବ ହେଲା କବିତାରେ 'Irony' ବା ତୀର୍ଯ୍ୟକ

ଦୃଷ୍ଟିଭଙ୍ଗୀ, କବିଙ୍କ 'ଗୁଣୁଗୁଣୁ ଚିତ୍ରପଟ୍ଟ'ର ଅଧିକାଂଶ କବିତା ବ୍ୟଙ୍ଗ ଓ ତୀର୍ଯକ ଦୃଷ୍ଟିଭଙ୍ଗୀ ଉପରେ ଆଧାରିତ । ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ କବି ପ୍ରଭାବିତ ହୋଇ ନିଜସ୍ୱ ସୃଷ୍ଟିର ବିବିଧତା, ପ୍ରାଞ୍ଜଳତା, ଆବେଦନଶୀଳତା ଓ ବୋଧଗମ୍ୟତା ଉପରେ ବିଶେଷ ଦୃଷ୍ଟି ଦେଇଛନ୍ତି ।

**(ଖ) କବିଙ୍କ ବୈଶିଷ୍ଟ୍ୟ :-**

ଜୀବନ ଓ ସମାଜର ଏକନିଷ୍ଠ ସାର୍ଥକ ଶିଳ୍ପୀ ସୌରୀନ୍ଦ୍ର । ଜୀବନ ଓ ଜଗତକୁ କବି ଯେପରି ଭାବରେ ହୃଦୟଙ୍ଗମ କରିଛନ୍ତି ସେପରି ଭାବରେ କବିତା ରଚନା କରିଛନ୍ତି । ବସ୍ତୁ ଭିତରେ ଜୀବନର କଥା କହିବା, ସ୍ଥାଣୁ ଅଥର୍ବକୁ ବାକ୍‌ଶକ୍ତି ପ୍ରଦାନ କରି ତା'ର ବକ୍ତବ୍ୟକୁ କବିତାରେ ପ୍ରକାଶ କରିବା କବି ସୌରୀନ୍ଦ୍ର ବାରିକ୍‌ଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ଜୀବନକୁ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଧ୍ୟାନ କରି ତାକୁ ପ୍ରାଣେ ପ୍ରାଣେ ଅନୁଭବ କରି ପାଠକ ଚିତ୍ତରେ ରୋମାଞ୍ଚ ସୃଷ୍ଟିକରିବା ସୌରୀନ୍ଦ୍ରଙ୍କ କବିତାର ବିଶେଷତ୍ୱ । ସ୍ୱରୂପକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରି, ତା'ର ସୂକ୍ଷ୍ମତା କବିତାରେ ଉପସ୍ଥାପନ କରିବାରେ କବି ସିଦ୍ଧହସ୍ତ । ପ୍ରତ୍ୟୟ ପ୍ରତାରଣା, ଆଲୋକ ଅନ୍ଧକାରର ଲୁଚକାଳି ଖେଳଭିତରେ ଜୀବନ କିପରି ମରୁ ମରୁ ବଞ୍ଚିଛି ତା'ର ଏକଚିତ୍ର କବି କବିତାରେ ଉପସ୍ଥାପନ କରିଛନ୍ତି । ପଙ୍କରୁ ପଙ୍କଜ ଜାତ ହେଲା ପରି, ଜୀବନ ସରସୀରୁ ତାଙ୍କ କବିତାର ଅରବିନ୍ଦ ପ୍ରସ୍ଫୁଟିତ ହୋଇଛି । ତାଙ୍କ କବିତା ଜୀବନ ପୁଷ୍ପର ସୌରଭ, ଦୈନନ୍ଦିନ ଜୀବନର ଅନନ୍ୟ ଉପପାଦ୍ୟ । ଯନ୍ତ୍ରଣାର ଜ୍ୟାମିତି ଓ ଭୋକର ଭୂଗୋଳ ସୌରୀନ୍ଦ୍ରଙ୍କ କାବ୍ୟ କବିତା । ସରଳତା କବିଙ୍କ କବିତାର ଅନ୍ୟତମ ଗୁଣ । ସରଳତା ବୁଝାଇ ଦିଏ ଜୀବନର ଜଟିଳତାକୁ । ସରଳତା କବିତାର ଭାଷା କି ଛନ୍ଦ ନୁହେଁ ଏହା ହେଉଛି ପ୍ରକାଶ ଭଙ୍ଗୀର ସ୍ୱଚ୍ଛନ୍ଦତା, ଯାହାକୁ ଆମେ କହୁ (Freedom of Expression) । ସୁତରାଂ ସରଳତା ଦେଇ ସତ୍ୟଶୀଳ ସ୍ୱକୀୟ ହେବା ତାଙ୍କ କବିତାର ମୁଖ୍ୟ ଆବେଦନ । ମୁକ୍ତି କବିଙ୍କ ସାଧନାର ମୂଳମନ୍ତ୍ର । ମୁକ୍ତି ଜୀବନରୁ ପଳାୟନ ନୁହେଁ, ଜୀବନ ସହ ଆତ୍ମୀୟ ଭାବେ ପରିଚିତ ହୋଇ ଜୀବନକୁ ଅଧିକ ଅନ୍ତରଂଗ ଓ ନିବିଡ଼ କରିବା ଆଶାରେ ବୌଦ୍ଧିକ ପ୍ରକରଣ ଗତ ପ୍ରହେଳିକାରୁ ମୁକ୍ତି । ଦୁର୍ବୋଧ୍ୟତା ନୁହେଁ ସରଳତା ଆଡକୁ ତାଙ୍କର ଗତି ଓ ପ୍ରକୃତି । ସୌରୀନ୍ଦ୍ରଙ୍କ ଏହି ମୁକ୍ତ ଧାରାଟି ବହୁ ପ୍ରବୀଣ ଓ ତରୁଣ ମାନଙ୍କୁ ଆକୃଷ୍ଟ କରିଛି ଏହା ନିଃସନ୍ଦେହ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏହା ଏକ ପ୍ରସ୍ତୁତି ପର୍ବ, ଯାହାର ଅୟମାରମ୍ଭ ଘଟିଛି ସୌରୀନ୍ଦ୍ରଙ୍କ ଲେଖନୀରେ । ଏହା ତାଙ୍କର ଅନ୍ୟତମ ବିଶେଷତ୍ୱ ।

କୃତ୍ରିମ କାରିଗରୀରୁ ସ୍ୱଚ୍ଛନ୍ଦ ସରଳ ଓ ଭାବାବେଗକୁ ଆପଣେଇ ନେବାର ବ୍ୟାକୁଳତା ଭିତରେ ଉପସ୍ଥାପନ କରିଛନ୍ତି ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତିର ଧାରା । ସ୍ୱପ୍ନ-ସଂପର୍କ ସ୍ୱୀକାରୋକ୍ତି, ସତମିଛ ଜୀବନ ବଞ୍ଚିବାର ଅଶ୍ଳୀଳ ଆନନ୍ଦ ତାଙ୍କ କବିତାର ଅନ୍ୟତମ କାବ୍ୟିକ

ବୈଶିଷ୍ଟ୍ୟ । ଜୀବନକୁ ବାଦ୍ ଦେଇ କବିତାର ମାନେ କିଛି ନାହିଁ ? କବିତାରେ କେବଳ ଜୀବନର ଫୁଲ ଫୁଟେ । ଜୀବନର ବୀଜମନ୍ତ୍ର କବିତା ।

ବସ୍ତୁସହ ନିବିଡ଼ ସଂପର୍କରୁ ସୌରୀନ୍ଦ୍ରଙ୍କ କବିତାର ସୃଷ୍ଟି । ମାନବ ଓ ମାନବେତର ପ୍ରାଣୀମାନଙ୍କ ସହ ନିବିଡ଼ ହୋଇ ଜୀବନର ବିଡ଼ମ୍ବନା, ବିରୋଧାଭାସର ଚିତ୍ର ଦେବାରେ ତାଙ୍କ ବିଶେଷତ୍ୱ ଓ ତାଙ୍କ ବୈଶିଷ୍ଟ୍ୟର ଅନ୍ୟତମ ଲକ୍ଷଣ । ମଣିଷ ସହ ଦୁଃଖ ସୁଖ ହେଲାପରି, ସେ ବସ୍ତୁସହ ସଂପର୍କ ସ୍ଥାପନ କରିଛନ୍ତି ଓ ସମବେଦନା ପ୍ରକାଶ କରିଛନ୍ତି, ତାହାସହ ଅନ୍ତରଂଗ ଆଳାପ ଆଲୋଚନାରେ ମଗ୍ନ ରହିଛନ୍ତି ଏହାହିଁ କବିଙ୍କର ଅନନ୍ୟ ବୈଶିଷ୍ଟ୍ୟ ।

ମହାଭାରତର କାହାଣୀ, ଚରିତ୍ର ଓ ଘଟଣାବଳୀକୁ ନେଇ କବି ସୌରୀନ୍ଦ୍ର ବାରିକ୍ ଦୁଇଟି କବିତା ସଂକଳନ ରଚନା କରିଛନ୍ତି । ପୁରାଣର ପୁରୁଣା ଚରିତ୍ର ଓ କାହାଣୀକୁ ଭିତ୍ତି କରି ଆଜିର ମନ ନେଇ ସେମାନଙ୍କୁ ଚିତ୍ରଣ କରିବାରେ କବି ସିଦ୍ଧହସ୍ତ । ଚରିତ୍ର ମାନଙ୍କୁ ଅନୁଶୀଳନ କରି କବିତାରେ ପ୍ରକାଶ କରିବାରେ କବିଙ୍କ ବୈଶିଷ୍ଟ୍ୟ ପ୍ରତିଫଳିତ । ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ଅନ୍ୟକବିମାନଙ୍କ ଠାରୁ କବିଙ୍କୁ ସ୍ୱତନ୍ତ୍ର କରି ଚିହ୍ନାଇ ଦିଏ । ସୌରୀନ୍ଦ୍ରଙ୍କ ସମଗ୍ର କାବ୍ୟକୃତି ସବୁଜ ସଂପର୍କର ସତ୍ୟପାଠ । ସଂପର୍କର ଅନନ୍ତ ଅନ୍ୱେଷଣରୁ ତାଙ୍କ କବିତାର ସୃଷ୍ଟି । ଖୋଜିବା ଭିତରେ ହଜିବା, ହଜିବା ଭିତରେ ଖୋଜିବା ତାଙ୍କ କାବ୍ୟ ପୁରୁଷର ନିୟତି । ପଶୁପକ୍ଷୀ ସାଇକେଲ ଭିତରେ ଜୀବନ ସତ୍ତାର ଅନ୍ୱେଷଣ, ସୌନ୍ଦର୍ଯ୍ୟ, ପ୍ରେମ, ପ୍ରତ୍ୟୟ ଭିତରେ ସ୍ୱପ୍ନର ଅଭିସାର କବିଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ସଚେତନତା, ବସ୍ତୁର ଉପଲବ୍ଧିରେ ଅପୂର୍ବ ମାନସିକତା ତାଙ୍କ କବିତାର ସୁବର୍ଣ୍ଣ ଗୁଣ ।

ସୌରୀନ୍ଦ୍ରଙ୍କ କବିତା ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ସମସ୍ତଙ୍କୁ ଆପଣେଇ ନେବାର ବ୍ୟାକୁଳତା ଓ ତାହାକୁ ସରଳ ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ କରିବାର ସ୍ୱଚ୍ଛନ୍ଦତା ତାଙ୍କୁ ସାହିତ୍ୟ ଇତିହାସରେ ଚିରଦିନ ଯଶସ୍ୱୀ କରି ରଖିବ ଏହା ନିଃସନ୍ଦେହ । ସୌରୀନ୍ଦ୍ରଙ୍କ କବିତାର ଆତ୍ମିକ ସୌନ୍ଦର୍ଯ୍ୟ ଓ ଆଙ୍ଗିକ ସୌଷ୍ଠବ ନିଜ ଅନୁଭୂତି ପ୍ରତି ସତ୍ୟଶୀଳ । ସୌରୀନ୍ଦ୍ରଙ୍କ ସମ୍ପର୍କରେ ଯାହା କୁହାଗଲା ହୁଏତ ତାହା ତାଙ୍କ କବିତା ନୁହେଁ, ଯାହା ଅକୁହା ରହିଗଲା ତାହା ତାଙ୍କ କବିତା । ନକହି ପାରିବାର ଅସାମର୍ଥ୍ୟତା ହିଁ ତାଙ୍କର କବିତାର ପ୍ରାଣକେନ୍ଦ୍ର । ଏହାହିଁ ତାଙ୍କ କବିତାର ବୈଶିଷ୍ଟ୍ୟ ।

## ସହାୟକ ଗ୍ରନ୍ଥସୂଚୀ

୧. ଅଷ୍ଟପଦୀ : ମହାପାତ୍ର ସୀତାକାନ୍ତ
୨. ଅଷ୍ଟପଦୀ : ଭୂମିକା ମହାନ୍ତି ଯତୀନ୍ଦ୍ର ମୋହନ
୩. ଅନୁଭାରତ : ବାରିକ୍ ସୌରୀନ୍ଦ୍ର
୪. ଅନୁବାଦତତ୍ତ୍ୱ ଓ ପ୍ରୟୋଗ : ପ୍ରଧାନ ଡ. ମନୋରଞ୍ଜନ
୫. ଅନ୍ୱେଷାର ସ୍ୱର : ବାରିକ୍ ସୌରୀନ୍ଦ୍ର

୬. ଅସମାପ୍ତ ଆଲୋଚନା : ଶତପଥୀ ଡ ନଟବର
୭. ଆକାଶ ପରିନିବିଡ଼ : ବାରିକ୍ ସୌରୀନ୍ଦ୍ର
୮. ଆଧୁନିକ ଓଡ଼ିଆ କବିତାର ରୂପରେଖ : ପଣ୍ଡା ନାରାୟଣ
୯. ଆଧୁନିକ ଓଡ଼ିଆ କବିତାର ଦୃଷ୍ଟି ଓ ଦିଗନ୍ତ : ମିଶ୍ର ଡ. ଇନ୍ଦୁ
୧୦. ଆଧୁନିକତାର ରୂପରେଖ : ପୂଜାରୀ ଉମାଚରଣ
୧୧. ଆଧୁନିକ ସାହିତ୍ୟର କେତୋଟି ଦିଗ : ରାଉତରାୟ ସଚ୍ଚିଦାନନ୍ଦ
୧୨. ଆଧୁନିକତା ଓ ଆଧୁନିକ ସାହିତ୍ୟ : ମିଶ୍ର ଡ. ନରେନ୍ଦ୍ର ନାଥ
୧୩. ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ : ଦାଶ ଡ. ଦାଶରଥି
୧୪. ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ : ନାୟକ ଡ କ୍ଷେତ୍ରବାସୀ
୧୫. ଆଧୁନିକ ଓଡ଼ିଆ କବିତା ଓ ମିଥ୍ ପ୍ରସଙ୍ଗ : ମିଶ୍ର ଡ. ଗିରୀଶ ଚନ୍ଦ୍ର
୧୬. ଆଧୁନିକ ଓଡ଼ିଆ କବିତାର ପରିଚୟ : ପଣ୍ଡା ନାରାୟଣ
୧୭. ଆମ ଦୁହିଁଙ୍କ କଥା : ବାରିକ ସୌରୀନ୍ଦ୍ର
୧୮. ଆମର ବିମର୍ଶ ଭାଗ୍ୟ : ବାରିକ ଡ. ଅଭୟ
୧୯. ଆମେ ଦୁହେଁ : ବାରିକ୍ ସୌରୀନ୍ଦ୍ର
୨୦. ଆର ଦୃଶ୍ୟ : ମହାପାତ୍ର ସୀତାକାନ୍ତ
୨୧. ଉପଭାରତ : ବାରିକ୍ ସୌରୀନ୍ଦ୍ର
୨୨. ଉଦାର ନରସିଂହ : ବାରିକ୍ ସୌରୀନ୍ଦ୍ର
୨୩. ଓଡ଼ିଆ ସାହିତ୍ୟର ଇତିହାସ : କର ଡ. ବାଉରୀବନ୍ଧୁ
୨୪. ଓଡ଼ିଆ ସାହିତ୍ୟର ଇତିହାସ : ମହାରଣା ଡ. ସୁରେନ୍ଦ୍ର କୁମାର
୨୫. ଓଡ଼ିଆ ସାହିତ୍ୟର ଇତିହାସ : ଚଇନି ଡ. ରତ୍ନାକର, ମିଶ୍ର ଡ. ଅଜୟ କୁମାର
୨୬. ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : ଆଚାର୍ଯ୍ୟ ଡ. ବୃନ୍ଦାବନ ଚନ୍ଦ୍ର
୨୭. କବିତା ବାକ୍ଷା : ରାୟ ଅପୂର୍ବ ରଞ୍ଜନ
୨୮. କବିର ଡାଏରୀ : ଲେଙ୍କା କମଳାକାନ୍ତ
୨୯. କବିତାର କଥା : ମହାନ୍ତି ଗିରୀବାଳା
୩୦. କବି ମାନସ ଅତୀତ ଓ ସାଂପ୍ରତିକ : ଷଡଙ୍ଗୀ ଡ ନୃସିଂହଚରଣ
୩୧. କବି ସଚ୍ଚିଦାନନ୍ଦ ଗୁରୁପ୍ରସାଦ : ରଥ ଡ. ପ୍ରଫୁଲ୍ଲ କୁମାର
୩୨. କାବ୍ୟ ପ୍ରକରଣ : ଶତପଥୀ ଡ ନିତ୍ୟାନନ୍ଦ
୩୩. ଗୁଣୁଗୁଣୁ ଚିତ୍ରପଟ : ବାରିକ୍ ସୌରୀନ୍ଦ୍ର
୩୪. ଗୁରୁ ପ୍ରସାଦଙ୍କ କାବ୍ୟକୃତି : ପଣ୍ଡା ବିନୋଦ ବିହାରୀ
୩୫. ଚହଲା ଛାଇରେ ଘଡ଼ିଏ : ବାରିକ୍ ସୌରୀନ୍ଦ୍ର
୩୬. ଚିତ୍ର ଓ ଚରିତ୍ର : ବେହେରା ଅଧ୍ୟାପକ ଚିନ୍ତାମଣି
୩୭. ଚିହ୍ନାମାଟି ଅଚିହ୍ନା ଆକାଶ : ଦାସ ଡ ଦାଶରଥି
୩୮. ଚେତନାର ଚୌହଦୀ : ବାରିକ୍ ସୌରୀନ୍ଦ୍ର

୩୯. ଦରବାର : ରାୟ ରାଧାନାଥ
୪୦. ଦୀପ୍ତି ଓ ଦ୍ୟୁତି : (ମୁଖଶାଳା) ମହାପାତ୍ର ସୀତାକାନ୍ତ
୪୧. ନନ୍ଦ କିଶୋର ଗ୍ରନ୍ଥାବଳୀ
୪୨. ନୀଳକଣ୍ଠ ଗ୍ରନ୍ଥାବଳୀ
୪୩. ନିବନ୍ଧ ବିଭୂଦତ୍ତ : ମିଶ୍ର ବିଭୂଦତ୍ତ
୪୪. ପଢ଼ ବା ନପଢ଼ : ବାରିକ୍ ସୌରୀନ୍ଦ୍ର
୪୫. ପାଠକୀୟ ମନ୍ତବ୍ୟ : ପାଣିଗ୍ରାହୀ କୁମୁଦରଞ୍ଜନ
୪୬. ପାଣ୍ଡୁଲିପି : ରାଉତରାୟ ସଚ୍ଚିଦାନନ୍ଦ
୪୭. ପିଙ୍ଗଳାର ସୂର୍ଯ୍ୟ : ରାଉତ ବେଣୁଧର
୪୮. ବାମନର ପାଦ : ବାରିକ୍ ସୌରୀନ୍ଦ୍ର
୪୯. ବିଚାର ମୂଳରଚନା : ଓଡ଼ିଶା ସାହିତ୍ୟ ଏକାଡେମୀ
୫୦. ଭଗ୍ନାଂଶର ସଂହିତା : ବାରିକ୍ ସୌରୀନ୍ଦ୍ର
୫୧. ମଧୁସୂଦନ ଗ୍ରନ୍ଥାବଳୀ
୫୨. ମସୀର ମନୀଷା : ପଣ୍ଡା ନାରାୟଣ
୫୩. ମହାନ ଓ ସୁନ୍ଦର ଧାରଣାର ଉତ୍ସ : ଏକ ତାତ୍ତ୍ୱିକ ଜିଜ୍ଞାସା : ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା
୫୪. ମହାଯାତ୍ରା : ରାୟ ରାଧାନାଥ
୫୫. ଯେତେ ସବୁ ବୀଥିକୁ ନେଇ : ବାରିକ୍ ସୌରୀନ୍ଦ୍ର
୫୬ ରାଧାନାଥ ଗ୍ରନ୍ଥାବଳୀ
୫୭. ସତ୍ୟର କୁହୁକ : ବାରିକ୍ ସୌରୀନ୍ଦ୍ର
୫୮. ସମୁଦ୍ର ସ୍ନାନ : ମହାନ୍ତି ଗୁରୁ ପ୍ରସାଦ
୫୯. ସମୁଦ୍ର ସ୍ନାନ : କାଳପୁରୁଷ : ମହାନ୍ତି ଗୁରୁ ପ୍ରସାଦ
୬୦. ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ
୬୧. ସମୀକ୍ଷା ଓ ସିଦ୍ଧାନ୍ତ : ରାଉତରାୟ ବିନୋଦ
୬୨. ସମୀକ୍ଷା ଓ ସମ୍ଭାର : ପଣ୍ଡା ନାରାୟଣ
୬୩. ସବୁଜରୁ ସାଂପ୍ରତିକ : ଶତପଥୀ ଡ. ନିତ୍ୟାନନ୍ଦ
୬୪. ସତୁରୀରୁ ସହସ୍ରାବ୍ଦି : ଶତପଥୀ ଡ. ନିତ୍ୟାନନ୍ଦ
୬୫. ସାମାନ୍ୟ କଥନ : ବାରିକ୍ ସୌରୀନ୍ଦ୍ର
୬୬. ସାହିତ୍ୟ ଚିନ୍ତା : ବେହେରା ଅଧ୍ୟାପକ ଚିନ୍ତାମଣି
୬୭. ସାହିତ୍ୟ – ସଂସ୍କୃତି – ସିଦ୍ଧାନ୍ତ : ପୃଷ୍ଟି ଡ ଦୁର୍ଗାମାଧବ
୬୮. ସୀମାବଦ୍ଧ ସମୟ ଓ ସ୍ୱପ୍ନର ଅଭିସାର : ସର ଡ ପ୍ରମୋଦ
୬୯. ସୂର୍ଯ୍ୟସ୍ନାତ : ମହାନ୍ତି ଯତୀନ୍ଦ୍ର ମୋହନ
୭୦. ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ ସୌନ୍ଦର୍ଯ୍ୟ ଚେତନା : ଜେନା ଡ ବୈରାଗୀ ଚରଣ

୭୧.    ସ୍ୱପ୍ନ, ସଂପର୍କ ଓ ସ୍ୱୀକାରୋକ୍ତି : ସର ଡ ପ୍ରମୋଦ
୭୨.    ସଂଯୋଗ : ଶତ୍‌ପଥୀ ନଟବର
୭୩.    ସାଂପ୍ରତିକ ସାହିତ୍ୟ : ପଟ୍ଟନାୟକ ଡ ବିଭୂତି
୭୪.    ସାଂପ୍ରତିକ ଓଡ଼ିଆ କବିତା : ଶତପଥୀ ଡ ନିତ୍ୟାନନ୍ଦ
୭୫.    ସାଂପ୍ରତିକ କାଳ ଓ ଚିରନ୍ତନ କବି : ବାରିକ୍ ସୌରୀନ୍ଦ୍ର
୭୬.    ସାଂପ୍ରତିକ କବିତା ସମୀକ୍ଷା : ମୁଖାର୍ଜୀ ରୋହିଣୀକାନ୍ତ
୭୭.    ଶଂବ୍ଦ ସବୁ ସରିଗଲେ : ବାରିକ୍ ସୌରୀନ୍ଦ୍ର
୭୮.    ଶବ୍ଦ, ସ୍ମୃତି ଓ ସଂପର୍କ : ଦାଶ ଡ ଦାଶରଥି
ସିଂହ ଡ ବିଜୟାନନ୍ଦ
୭୯.    ହଳଦୀ ବସନ୍ତ : ବାରିକ୍ ସୌରୀନ୍ଦ୍ର

**ପତ୍ରପତ୍ରିକା**

୮୦.    ଅନୁରୂପା
୮୧.    ଇସ୍ତାହାର
୮୨.    ଉତ୍କଳ ସାହିତ୍ୟ
୮୩.    ଏଷଣା
୮୪.    କ୍ରାନ୍ତିଧାରା
୮୫.    ଜନସୁଧା
୮୬.    ଝଙ୍କାର
୮୭.    ମୂଲ୍ୟାୟନ
୮୮.    ସହକାର
୮୯.    A critical History of English Literature : David Daiches.
୯୦.    A Kierkegaard Anthology : Soren Kierkegaard.
୯୧.    Baikunthanath Pattanaik : Sahitya Academi, New Delhi
୯୨.    Beyond all this fiddle : Alvarew
୯୩.    Collected Poems : T.S. Eliot
୯୪.    Collected Works : Arthur Friedman
୯୫.    Either Or : Soren Kierkegaard
୯୬.    Essays and Introduction : W.B. Yeats
୯୭.    Four Quartets : T.S. Eliot
୯୮.    Gerontion : T.S. Eliot
୯୯.    Hostory of Aesthetics : Bosanquet
୧୦୦.   In Introduction to the Idea of the Modern : Irving Howe

୧୦୧. Intimacy of Emptiness : Bidhubhusan Das
୧୦୨. Lecture on Elements of Literature : Arnold Mathew
୧୦୩. Letter to Young Painter : Herbert Read
୧୦୪. Major Barbara : George Bernad Shaw
୧୦୫. Metamorphoses : Ovid (Selectd Works)
୧୦୬. Mouernism : University of Chicago
୧୦୭. Philosophy of Art & Beauty : Butcher
୧୦୮. Poems of Tennyson : Alfred Lord Tennyson
୧୦୯. Poetry and Politics : C.M. Bowra
୧୧୦. Poetical Works : John Milton
୧୧୧. Problems of Art : Peter Green
୧୧୨. Second Coming : W.B. Yeats
୧୧୩. Selected Poems : A Game of Chess : T.S. Eliot
୧୧୪. Selected Poems : William Wordsworth
୧୧୫. Selected Poems : P.B. Shelly
୧୧୬. Shakespeare Complete Works : Craig W.J.
୧୧୭. Sirt and Clinth Brooks : K. William Wim
୧୧୮. Struggle of the Modern : Spender Stephen
୧୧୯. The Art of Poetry : Valery Paul
୧୨୦. The Art of Translation : T.H. Savory
୧୨୧. The Brook : Alfred Lord Tennyson
୧୨୨. The Dance of Shiv : Ananda Coomarswamy
୧୨୩. The Idea of Great Poetry : Lascelles Abercrombie
୧୨୪. The Life of Reason : George Santayan
୧୨୫. The Literary Modernism : Irving Howe
୧୨୬. The Meaning of the Contemporay Realism : Thomas Wolfe
୧୨୭. The Painter of Modern Life : Charless Bodlewar
୧୨୮. The Pelican Guide to English Literature Modern Age (Boils Ford) : Cyril Connolly.
୧୨୯. The Tradition of the New : Harlex Rojenburg
୧୩୦. Twentieth Centurey English Leterature : A.C. Ward

ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ସଂପ୍ରସାରିତ ସ୍ୱରକାର - କବି ଶ୍ରୀ ସୌରୀନ୍ଦ୍ର ବାରିକ ।

ଦୀର୍ଘ ଚାରିଦଶନ୍ଧିର ଚିତ୍ରିତ ଚେତନାକୁ ଚିହ୍ନଟ କରେ ସୌରୀନ୍ଦ୍ର କାବ୍ୟଚେତନା । 'ସାମାନ୍ୟ କଥନ' 'ଉପଭାରତ', 'ଆକାଶ ପରି ନିବିଡ଼', 'ଗୁଣୁଗୁଣୁ ଚିତ୍ରପଟ', 'ଲୁହଠୁ ବି ଅନ୍ତରଙ୍ଗ', 'ଅନୁଭାରତ', 'ଆମେଦୁହେଁ', 'ଚହଲା ଛାଇରେ ଘଡ଼ିଏ', 'ପଢ଼ ବା ନପଢ଼', 'ହଳଦୀବସନ୍ତ', 'ଆମଦୁହିଁଙ୍କ କଥା' ଓ 'ଯେତେସବୁ ବୀଥିକୁ ନେଇ' କାବ୍ୟକୃତିଗୁଡ଼ିକର ପର୍ଯ୍ୟାୟପ୍ରାଂତରେ ଆମେ ଭେଟିଚୁ 'ଭାରି ମନେପଡ଼' ଶୀର୍ଷକ ଗାନ୍ଧିଦର୍ଶନାଶ୍ରିତ ତାଙ୍କର ଆଉଏକ ଗୈରିକ କାବ୍ୟିକ କାୟାକଳ୍ପ । ଏ ସବୁ ଆକ୍ଷରିକ ଆଲେଖ୍ୟ କବି ଶ୍ରୀ ବାରିକଙ୍କ ଅତୀତ-ବର୍ତ୍ତମାନ-ଭବିଷ୍ୟତର ଭାବୋଦ୍ଦୀପକ ଭିତ୍ତିଚିତ୍ର । କେଉଁଠି ସେ ବିଚ୍ଛିନ୍ନ ବ୍ୟକ୍ତିତ୍ୱର ବକ୍ତା ତ ଆଉକେଉଁଠି ଭିନ୍ନଭାରତର ଭାଷ୍ୟକାର - ନିଜ ମାନସିକତାର ମାନଚିତ୍ରଠୁ ଆରମ୍ଭକରି ନିଜସ୍ୱ ସମୟର ସିଲହଟ୍‌କୁ ସେ ଦାଖଲ କରିଛନ୍ତି ଶବ୍ଦରେ, ପ୍ରତୀକରେ, ଚିତ୍ରକଳ୍ପରେ, ବ୍ୟଂଜନାତ୍ମକ ବର୍ଣ୍ଣନାରେ ।

ନିଜ କାବ୍ୟଚେତନାର ଚିହ୍ନିତ ଚୌହଦିରେ ସମକାଳୀନ ଚରିତ୍ର ଓ ଚିରକାଳୀନ ଚରିତ୍ରମାନଙ୍କ ମଝିରେ କବି ଶ୍ରୀ ସୌରୀନ୍ଦ୍ରଙ୍କ ବ୍ୟକ୍ତିସତ୍ତା ସ୍ୱୟଂ ଏକ ସ୍ୱତଃ ସ୍ୱଗତଭାଷୀ ସୂତ୍ରଧର ।

ଡଃ ନାରାୟଣ ପଣ୍ଡା ଆମ ସମୟର ସ୍ପଷ୍ଟଭାଷୀ ବିଦଗ୍ଧ ସମାଲୋଚକ ନୁହନ୍ତି କେବଳ, ଖୋଦ୍ ଜଣେ ସ୍ୱତନ୍ତ୍ର ଶୈଳୀର କବି ମଧ୍ୟ । ତାଙ୍କ ବିହ୍ୱଳ ବିଭୋର ଅବବୋଧରେ ସେ ଆଙ୍କିଛନ୍ତି ନିଜ ପୂର୍ବପିଢ଼ିର କବି ଶ୍ରୀ ସୌରୀନ୍ଦ୍ର ବାରିକଙ୍କ କାରୁଣିକ କାବ୍ୟପୁରୁଷର ଭାବମୂର୍ତ୍ତି । 'ସୌରୀନ୍ଦ୍ର ସୌରଭ' ତାଙ୍କର ଏହି ସାରସ୍ୱତ ସରାଗର ସାରସଂଦର୍ଭ ।

